# ଭୂମିକା ।

ମେଟ୍ରିକ୍ୟୁଲେଶନ୍ କ୍ଲାସରେ ଛାତ୍ର ଥିଲାବେଳେ ମୁଁ ଖବର କାଗଜ ସାତମତ ପଢ଼ିବା ଏବଂ ତହିଁରେ ଲେଖିବା ଆରମ୍ଭ କଲି । ଖ୍ରୀଷ୍ଟ ୧୮୯୦ ଠାରୁ ମୋହର ଖବର କାଗଜ ଲେଖା ଆରମ୍ଭ ବୋଲିବାକୁ ହେବ । ସେବେ ଠାରୁ ଆଜକି ପ୍ରାୟ ୬୦ ବର୍ଷ ହେଲ ପର୍ଯ୍ୟନ୍ତ ମୁଁ ଯାହା ଲେଖି ଥିଲି ତହିଁରୁ ଅନେକ ଲେଖା ଏଣେ ତେଣେ ପଡ଼ି ଚିରି ହଜି ଯାଇଛି । ବାକି ଯେତକ ଥିଲା ସେ ସବୁ ଏକାଠି କରି ପୁସ୍ତକାକାରରେ ଛପାଇବା ନିମନ୍ତେ ମୋହର ଅନେକ ବନ୍ଧୁ, ବିଶେଷରେ ପ୍ରିୟ ବନ୍ଧୁ ସ୍ୱର୍ଗୀୟ ନୀଳମଣି ବିଦ୍ୟାରତ୍ନ ବହୁ ଅନୁରୋଧ କରିଥିଲେ । ମୋହର ମନେ ଅଛି, ମୁଁ ସମ୍ବଲପୁର ହିତୈଷିଣୀରେ ମୋହର ଲେଖା ଆରମ୍ଭ କରିଥିଲି । ସେତେବେଳେ ବିଦ୍ୟାରତ୍ନ ଥିଲେ ତାହାର ସମ୍ପାଦକ । ମୋହର ଲେଖା କେତେକ ପଢ଼ି ଉତ୍କଳର ବ୍ୟାସ କବି ସ୍ୱର୍ଗୀୟ ଫକୀର ମୋହନ ସେନାପତି ମୋତେ ଲେଖିଥିଲେ—ଆପଣଙ୍କ ଲେଖା ସବୁ ମୁଁ ପଢ଼ୁଛି । ଆପଣଙ୍କୁ ଅନେକ ଗାଳି ହୋଇଥାଏ, ସେଥିଲାଗି ବିଚଳିତ ହେବେ ନାହିଁ । ଲେଖାରେ ସାର ନଥିଲେ କେହି ପାଠକ ଚମକି ଉଠି ଗାଳି ଦିଅନ୍ତି ନାହିଁ । ବୁଝିବେ, ଆପଣଙ୍କ ଲେଖାରେ କିଛି ସାର ଅଛି, ଗାଳିପ୍ରତି ଭ୍ରୂକ୍ଷେପ ନକରି ଲେଖି ଯାଆନ୍ତୁ । କବିବର ରାଧାନାଥ ରାୟ ଉଃ ସାହିତ୍ୟରେ ମୋହର ପାଟଣାପୁର ପ୍ରବନ୍ଧ ପଢ଼ି ମୋତେ କହିଥିଲେ, ଆପଣ ଜାତୀୟ ଜୀବନ ବିଷୟରେ ଲେଖନ୍ତୁ । ମୁଁ କହିଲି, ଆଜ୍ଞା, ମୁଁ ପାରିବି ନାହିଁ । ସେତେବେଳେ ସେ କହିଥିଲେ, ନିଶ୍ଚୟ ପାରିବେ । କବିବର ଗଙ୍ଗାଧର ମେହେର ସମ୍ବଲପୁର ସମ୍ମିଳନୀ ବେଳେ ମୋତେ କହିଥିଲେ, ଅପଣଙ୍କ ଲେଖାରେ ମୁଁ ଦୁଇଟା କଥା ସ୍ପଷ୍ଟ ଦେଖେ—ସତ୍ୟବାଦିତା ଓ ନିର୍ଭୀକତା । ମୁଁ ସେତେବେଳେ କହିଲି, ମୋର ବଳ ବେଦନ ଶୁଣୁଛନ୍ତି କି ? ସେ ଉତ୍ତର ଦେଲେ, ନା, ତାହାନୁହେଁ, ସେ ଲେଖାର ମୂଲ୍ୟ ଅଛି, ଆମ ସମ୍ବଲପୁରରେ ଅନେକ ରାଜା ଜମିଦାର ତହିଁରୁ ଶିକ୍ଷା ପାଇ କିଛି ସୁଧୁରି ହୋଇ ଛନ୍ତି, ଲେଖା ଗୁଡ଼ିକ ବିଫଳ ହୋଇ ନାହିଁ । କବିବର ଚନ୍ଦ୍ରମଣି ମହାନ୍ତି, ପଣ୍ଡିତ ଗୋପୀନାଥ ନନ୍ଦ ଲେଖିଥିଲେ, ଆପଣ ସରକାରଙ୍କ କାର୍ଯ୍ୟରେ ରହି ସୁଦ୍ଧା ଏତେ ଲେଖିବାକୁ ଯେ ଅବସର ପାଉଛନ୍ତି, ଆପଣଙ୍କୁ ଧନ୍ୟବାଦ, ଗଞ୍ଜାମର ଅନ୍ୟ ଗ୍ରାଜୁଏଟ୍ ମାନଙ୍କର ସେ ଦିଗରେ ଲକ୍ଷ ବା ଚିନ୍ତା ନାହିଁ । ଭକ୍ତ କବି ମଧୁସୂଦନ ରାଓ ମୋତେ ଦିନେ ବଡ଼ ଖେମଣ୍ଡି ଗଡ଼ ଠାରେ କହିଲେ, ଆପଣ ଆମ ଉତ୍କଳର ଈଶ୍ୱରଚନ୍ଦ୍ର, ଅଥବା ବିବାହ ସଂସ୍କାର କରି ଯଦି ପାରି ନଥିଲେହେଁ ଏକମାତ୍ର ଆପଣ ସେଦିଗରେ ବିଶେଷ ଲେଖା ଲେଖି କରି ବହୁ ଚେଷ୍ଟା କରୁଛନ୍ତି । ଏହି ମନୀଷି ମାନଙ୍କ ମନ୍ତବ୍ୟରେ ମୁଁ ଅବଶ୍ୟ ଉତ୍ସାହିତ ହୋଇଥିଲି । ସ୍ୱର୍ଗୀୟ ସ୍ୱଦେଶ ହିତୈଷୀ ହରି ହର ସଦସ୍ୟ ମୋହର କେତେ ଗୁଡ଼ିଏ ପ୍ରବନ୍ଧ ସଂଗ୍ରହ କରି ଦେଇ ଏହି ପୁସ୍ତକ ପ୍ରକାଶରେ ମଧ୍ୟ ସାହାଯ୍ୟ କରିଛନ୍ତି । ମୋହର ଜନୈକ ବନ୍ଧୁ ଶ୍ରୀମାନ୍ ଗୋବିନ୍ଦ ରଥେ ମଧ୍ୟ ସମ୍ବାଦ ପତ୍ରରୁ ମୋହର କେତେଟା ପ୍ରବନ୍ଧ ଏହି ପୁସ୍ତକ ପ୍ରକାଶ ସକାଶେ

ସଙ୍ଗ ଉତାର ଦେଇଥିଲେ । ଏହି ସବୁ ଅନୁରୋଧ, ଉତ୍ସାହ ବାଣୀ ଓ ସାହାଯ୍ୟ ଘେନି ମୁଁ ଏହି ପୁସ୍ତକ ପ୍ରକାଶରେ ପ୍ରବୃତ୍ତ ହେଲି ।

ଏଣୁ ତେଣୁ ଶାଗର ମୂଗରୁ ଶ୍ରେଷ୍ଠ ବା ବଡ଼ କଥା ହେଉ, ସାମାଜିକ, ରାଜନୈତିକ ବୈଷୟିକ ବା ଆଧ୍ୟାତ୍ମିକ ଇତ୍ୟାଦି ବିଷୟରେ ମୋ ଅନୁଭବରୁ ବା ପଢ଼ା ଶୁଣାରୁ ଯେତେବେଳେ ଯାହା ଲେଖିଯାଇ ଥାଏ ତାହା ସବୁ ଏକତ୍ର କରି ଏହି ପୁସ୍ତକରେ ପ୍ରକାଶ କରୁଅଛି । ସେତେବେଳେ ଭାଷା ଓ ଭାବ ଅନେକ ସ୍ଥାନରେ ବୋଧହୁଏ ସଂଯତ ନଥିଲା । ଯାହାକି ସୁବୋଧ୍ୟ, ସରଳ ଏବଂ ସ୍ୱଳ୍ପ କଥାରେ ବ୍ୟକ୍ତ କରି ଯାଇ ପାରିଥାନ୍ତା, ସ୍ଥାନେ ସ୍ଥାନେ ସେ ସବୁ କ୍ଲିଷ୍ଟ ଭାଷାରେ ଆଡ଼ମ୍ବର ଦେଖାଇବା ଉଦ୍ଦେଶ୍ୟରେ ବଡ଼ ବଡ଼ ପଦ ପ୍ରୟୋଗ ପୂର୍ବକ ଲେଖା ଯାଇଅଛି, ହୁଏତ, ଭାଷାରେ ଭୁଲ ଏବଂ ମନ୍ତ୍ନୋଗତ ଭାବ ଅସ୍ପଷ୍ଟ ରହି ଯାଇଅଛି । ଯାହାହେଉ ତାହାସବୁ ଏବେ ଅବିକଳ ପ୍ରକାଶ କରି ଯାଇଅଛି, ପାଠକ ମାନେ ତହିଁରୁ ଯାହା ବୁଝି ପାରିବେ ।

ଦୁଃଖର ବିଷୟ ମୋହର ସେହି ଲେଖା ଗୁଡ଼ାକ ଖବର କାଗଜ ହେବାରୁ ଖଣ୍ଡ ଖଣ୍ଡ ହୋଇ କଟା ଯାଇଥିଲା । ତହିଁରୁ ସମ୍ବାଦ ପତ୍ରର ନାମ ଓ ଲେଖାର ସମୟ ଧରିପାରି ପାରିଲି ନାହିଁ । ହୁଏତ, ୧୯୧୫ ସାଲର ଲେଖା ଆଗ ବାହାରିଲା ଏବଂ ୧୮୯୫ ସାଲର ଲେଖା ପଛେ ହୋଇଗଲା । ଏହି ସଂଗ୍ରହରେ ଭାଷା ଓ ଭାବର କ୍ରମ ବିକାଶ ଧରିଯାଇ ପାରିବ ନାହିଁ । ପ୍ରଶସ୍ତ ଅଛି ଏକ ଅଭାବ ଏହିଯେ ସାମାଜିକ, ରାଜନୀତିକ ଇତ୍ୟାଦି ବିଷୟ ନେଇ ପ୍ରବନ୍ଧଗୁଡ଼ାକ ଭିନ ଭିନ ବିଭାଗରେ ସଂପୂର୍ଣ୍ଣ ରୂପ ପୃଥକ ପୃଥକ କରିଯାଇ ପାରିଲି ନାହିଁ । କେବଳ ବିସ୍ତୃତ ସୂଚୀ ବିବରଣ ସାହାଯ୍ୟରେ ପାଠକ ମାନେ ସମସ୍ତ ଗ୍ରନ୍ଥର ପ୍ରବନ୍ଧର ବିଷୟ ଧରିପାରିବେ ।

ସଂଗୃହୀତ ଥିବା ପୁରାତନ ଲେଖା ଗୁଡ଼ିକ ଏହିପରି ୫।୬ ଖଣ୍ଡ ପୁସ୍ତକରେ ପ୍ରକାଶିତ ହୋଇ ପାରିବ । ଏଣୁ କରି ଏହାକୁ ପ୍ରଥମ ଖଣ୍ଡ ବୋଲି କୁହାଯାଇଅଛି । ଅନ୍ୟାନ୍ୟ ଖଣ୍ଡ ମାନ ପ୍ରକାଶ କରିବା ବାସନା ରହିଲା ।

ଆମ ସାମାଜିକ କୁସଂସ୍କାର ଦେଖି ଗ୍ଲାନି ବିସ୍ଥାରୁ ମୁଁ ବଡ଼ ବ୍ୟଥିତ ଥାଏ ଏବଂ ସମାଜ ସଂସ୍କାର କାର୍ଯ୍ୟରେ ସର୍ବଦା ସର୍ବତ୍ର କୁହା ପୁଛା ଏବଂ ଲେଖା ଲେଖି କରୁଥାଏ । ମୋହର ଏହି ସମାଜ ସଂସ୍କାର ପ୍ରୟାସ ଦେଖି ସଂଗୀତ ସଂଗ୍ରାହକ ସ୍ୱର୍ଗୀୟ ଦାମୋଦର ପଟ୍ଟନାୟକ, ସାହିତ୍ୟ ସେବକ ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରଭୃତି ଅନେକ ଅଭିଜ୍ଞ ବ୍ୟକ୍ତିମାନେ ମଧ୍ୟ ମୋତେ ସଂସ୍କାରକ ଆଖ୍ୟା ଦେଇ ଥାନ୍ତି । ଏଣୁକରି ମୋହର ଏହି ଗ୍ରନ୍ଥାବଳୀର ନାମ ରଖାଯାଇଛି ସଂସ୍କାରକ । ଏହି ପୁସ୍ତକ ପଢ଼ିଯଦି କେହି ସଂସ୍କାର ଚେଷ୍ଟା କରନ୍ତି ତେବେ ନାମଟା ସାର୍ଥ ହେଲା ବୋଲିବାକୁ ହେବ ।

ଗୋରକ୍ଷାଶ୍ରମ
ଖ୍ରୀଃ ୫ । ୮ । ୧୯୨୯

ଲେଖକ
ଶ୍ରୀବିଷ୍ଣୁ ପଣ୍ଡା



ଓମ୍

ସଚ୍ଚିଦାନନ୍ଦେଶ୍ୱରାୟ ନମୋ ନମଃ



# ସଂସ୍କାରକା ।



## ଅଗ୍ର ପୂଜ୍ୟୋ ଗଣାଧିପଃ

ପ୍ରତ୍ୟେକ କାର୍ଯ୍ୟ ବିଭାଗରେ ଗୋଟିଏ ଲେଖାରେ ଦେବତା ଅଧିନାୟକ ରୂପେ ସ୍ୱୀକୃତ ହୁଅନ୍ତି । ଯଥା ଧନର ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀ ଏବଂ ଜ୍ଞାନର ଅଧିଷ୍ଠାତା ଗଣେଶ ଇତ୍ୟାଦି । ଗଣେଶ କହିଲେ ଗଣମାନଙ୍କର ଈଶ ବୁଝାଏ । ଗଣ ଅର୍ଥାତ୍ ଇନ୍ଦ୍ରିୟ ଗଣ । ଇନ୍ଦ୍ରିୟମାନଙ୍କ ଦ୍ୱାରା ଜ୍ଞାନ ଲାଭ ହୁଏ । ଗଣାଧିପ ଏହି ଜ୍ଞାନର ଅଧିପ ଅଟନ୍ତି । ସୁତରାଂ ସକଳ ବିଧାନରେ ସର୍ବ ପ୍ରଥମେ ଗଣାଧିପଙ୍କୁ ଆରାଧନା କରାଯାଏ । ଏହାର ମର୍ମ ଏହି ଯେ, ସର୍ବାଦୌ ସମସ୍ତ ବିଷୟ ଜ୍ଞାନ କରିବାକୁ ହେବ । ବ୍ରତ ବିବାହ, ଶୁଦ୍ଧି ଶ୍ରାଦ୍ଧ ଇତ୍ୟାଦି ଶୁଭାଶୁଭ କାର୍ଯ୍ୟରେ ସର୍ବାଗ୍ରେ ଗଣାଧିପଙ୍କୁ ପୂଜା କରାଯାଏ । ଅର୍ଥାତ୍ ପ୍ରତ୍ୟେକ ବିଧାନର ପ୍ରାରମ୍ଭରେ ତଦ୍ ବିଷୟକ ସକଳ ଜ୍ଞାନ ଲାଭ କରିବା ଉଚିତ । କୌଣସି କାର୍ଯ୍ୟ କରିବାକୁ ହେଲେ କିଅଣ କରିବାକୁ ହେବ, କାହିଁପାଇଁ କରିବାକୁ ହେବ, କି ପ୍ରକାର କରିବାକୁ ପଡ଼ିବ, କେଉଁ ବେଳେ ପୁଣି କେଉଁ ସ୍ଥାନରେ କରିବାକୁ ହେବ, କି କି ଉପକରଣ ଆବଶ୍ୟକ, ଦେଶ କାଳ ପାତ୍ର ଉପଯୁକ୍ତ ଅଛି କି ନା ଇତ୍ୟାଦି ବିଷୟମାନ ସର୍ବାଦୌ ଜ୍ଞାନ କରିବାକୁ ହେବ । ଏହାକୁହିଁ କହନ୍ତି ଗଣାଧିପଙ୍କର ଅଗ୍ରପୂଜା । ଜ୍ଞାନ ବିହୀନ କର୍ମକାଣ୍ଡ ହସ୍ତିର ସ୍ନାନ ସଦୃଶ । ଜ୍ଞାନ ବିହୀନ କର୍ମରେ ସୁଫଳ ପ୍ରାପ୍ତିର ସମ୍ଭାବନା ନଥାଏ, ବରଂ ବିପଦ ଘଟିବାର ସମ୍ଭାବନା । ଅନୁଷ୍ଠିତ ବିଷୟର ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା ନକରି ବିଘ୍ନରାଜ ବିନାୟକଙ୍କ ମୂର୍ତ୍ତି ସ୍ଥାପନ କରି ଧୂପ ଦୀପ ନୈବେଦ୍ୟ ଦ୍ୱାରା ଉକ୍ତ ପ୍ରତିମାର ଆରାଧନା କଲେ କାର୍ଯ୍ୟ ସଫଳ ହୁଏ ଏବଂ ବିଘ୍ନ ବିଦୂରିତ ହୁଏ, ଏହି ବିଶ୍ୱାସ ବିଡ଼ମ୍ବନା ମାତ୍ର । ଅନ୍ଧ ବିଶ୍ୱାସର ବଶୀଭୂତ ହୋଇ ବ୍ୟବସ୍ଥାର ମର୍ମ ନଜାଣି କର୍ମ କରିବା ହେତୁ ହିନ୍ଦୁ ସମାଜ ଆଜି ଅଧୋଗତି ପ୍ରବଣ ହୋଇ ଉଠିଅଛି । ଏହି କୁସଂସ୍କାର ନଚେତ୍ ଦୂରୀଭୂତ ନହେଲେ ହିନ୍ଦୁ ସମାଜର ଉନ୍ନତି ସାଧିତ ହୋଇପାରିବ ନାହିଁ ।

—:*:—

## ପ୍ରତିମା ପୂଜା

ବିଶ୍ୱସ୍ରଷ୍ଟା ପରମେଶ୍ୱରଙ୍କୁ ସମସ୍ତେ ଆରାଧନା କରନ୍ତି । କାୟମନୋବାକ୍ୟ ବିବିଧ ଆରାଧନା କରବାକୁ ହୁଏ । ପ୍ରତିମା ପୂଜା ଏକ ପ୍ରକାର ଆରାଧନା । ଏହା ହିନ୍ଦୁମାନଙ୍କର ଏକ ପ୍ରଧାନ ପୂଜା ପ୍ରଣାଳୀ । ଏଥି ନିମନ୍ତେ ଧନାଢ୍ୟ ଲୋକମାନେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟକରି ମନ୍ଦିର ସ୍ଥାପନ କରନ୍ତି । ତଥାପି ହିନ୍ଦୁମାନଙ୍କର ଧର୍ମଶାସ୍ତ୍ର ବାକ୍ୟ ଅନୁସାରେ ସ୍ୱଳ୍ପ ବୁଦ୍ଧି ଲୋକମାନେ ପ୍ରତିମା ପୂଜା କରନ୍ତି । ସାଧାରଣତଃ ଦେଖାଯାଏଯେ, ବ୍ରାହ୍ମଣେତର ଜାତି ଲୋକେ ବେଶି ମନ୍ଦିର ପ୍ରିୟ । ଉତ୍କଳରେ ନାନାବିଧ ବ୍ରାହ୍ମଣ ଅଛନ୍ତି, ଏମାନଙ୍କ ମଧ୍ୟରେ ଶାସନୀ ବ୍ରାହ୍ମଣମାନେ ସର୍ବୋତ୍କୃଷ୍ଟ ବିବେଚିତ ହୁଅନ୍ତି । ଏହି ଶ୍ରେଣୀର ଧନଶାଳୀ ବ୍ରାହ୍ମଣମାନଙ୍କର ମନ୍ଦିର ନିର୍ମାଣ ଅତ୍ୟନ୍ତ ବିରଳ । ପୁଣି ନିକୃଷ୍ଟ ଶ୍ରେଣୀର ବ୍ରାହ୍ମଣମାନେ ଦେବ ପୂଜକ ହୁଅନ୍ତି ଏବଂ ଠାକୁରମାନଙ୍କର ପୂଜାଦ୍ରବ୍ୟ-ଅନ୍ନ, ତରକାରି ଅନେକ ଶାସନୀ ବ୍ରାହ୍ମଣେ ଗ୍ରହଣ କରନ୍ତି ନାହିଁ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ପ୍ରତିମାପୂଜା କେବଳ ସ୍ୱଳ୍ପ ବୁଦ୍ଧି ଲୋକପାଇଁ ନିୟମିତ ହୋଇଅଛି ।

ଲୋକ ସାଧାରଣ ପରଂବ୍ରହ୍ମଙ୍କୁ ମନରେ ଧରି ପାରୁନଥିଲେ । ତାଶ୍ମ ବୁଦ୍ଧିମାନ ପ୍ରତିଭାଶାଳୀ ବ୍ୟକ୍ତିମାନେ, ଯେଉଁମାନେ ଆପଣାଙ୍କୁ ବ୍ରାହ୍ମଣ ବୋଲି ପରିଚୟ ଦେଲେ, ସ୍ୱଳ୍ପ-ବୁଦ୍ଧି ଲୋକମାନଙ୍କ ପାଇଁ ମନ୍ଦିର ଓ ପ୍ରତିମାର ସୃଷ୍ଟି କଲେ ଏବଂ ମନ୍ଦିରସ୍ଥ ପ୍ରତିମା ଦ୍ୱାରା ସର୍ବବ୍ୟାପୀ ଭଗବାନଙ୍କୁ ସେମାନେ ବୁଝି ପାରିବେ ବୋଲି ଆଶା କରିଥିଲେ । କିନ୍ତୁ ଆଜି ଏହି ଆରାଧନା ପ୍ରଣାଳୀରୁ ବିପରୀତ ଫଳ ଫଳିବାର ଦେଖା ଯାଉଅଛି । ଇତର ଜାତିପ୍ର ଲୋକେ ବର୍ଣ୍ଣନାତୀତ ଭଗବାନଙ୍କୁ ଖଡ଼ି କାଠ ପଥରକୁ ମୂଲକଲେ, ଅନାଦି ଅନନ୍ତ ବିଶ୍ୱସ୍ରଷ୍ଟାଙ୍କ ନିକଟକୁ ଯିବା ଦୂରେ ଥାଉ ସର୍ବ ପ୍ରଥମରୁ କାଠ ବା ପଥର ଖଣ୍ଡିକରେ ଲାଗି ରହିଲେ । ଏବେ ବ୍ରାହ୍ମଣମାନେ ମଧ୍ୟ ଆପଣା ସ୍ୱରକ ଉପୁଜାଇଲେ, ନିଜକୃତ ପ୍ରତିମାରେ ଈଶ୍ୱରତ୍ୱ ଆରୋପ କଲେ । ଅର୍ଥାତ୍ ଏହି ବ୍ରାହ୍ମଣନାମା ମାନେ ଆଜି ଶୂଦ୍ରତ୍ୱ ପ୍ରାପ୍ତହୋଇ ଅଛନ୍ତି, କିନ୍ତୁ ବ୍ରାହ୍ମଣ ବୋଲି ନାମରେ ମାତ୍ର ପରିଚିତ ହୁଅନ୍ତି ।

—*ଠଃ*—

## ସୂର୍ଯ୍ୟ ଦେବତା

ପରମାତ୍ମା ବୋଲ, ପରମେଶ୍ୱର, ଭଗବାନ, ନାରାୟଣ, ରାମନାଥ ବା ଗୋପୀନାଥ, ଯାହା ବୋଲ, ଏମାନେ କେଉଁଠାରେ ଅଛନ୍ତି, ଦେଉଳ ଭିତରେ, ଆକାଶରେ କିବା ସର୍ବତ୍ର ଅଛନ୍ତି କେହି ଜାଣେନାହିଁ । ଲୋକ ବ୍ୟବହାରରେ ଏମାନେ ସବୁ ନିର୍ଜୀବ ଦେବତା ବା ମହାପ୍ରଭୁ, ପ୍ରତ୍ୟକ୍ଷ ଦେବତା—ଜୀବନ୍ତ ପ୍ରତିମା କେବଳ ଯେହି ସୂର୍ଯ୍ୟ ଦେବତା । ଏହି ସୂର୍ଯ୍ୟ ଦେବତାଙ୍କୁ ନ ଦେଖିବା ଦିନ ଅନେକ ଲୋକ ଭୋଜନ କରନ୍ତି ନାହିଁ । ଯେଉଁ ଦିନ

ମେଘାଚ୍ଛନ୍ନ, ସୂର୍ଯ୍ୟ ଦେଖା ଯାଏନାହିଁ, ସେଦିନ ମାରୁଫି ଲୋକେ ଉପାସେ ରହନ୍ତି । ସେମାନେ ସେଦିନ କୁହନ୍ତି ସେ ମହାପ୍ରଭୁ ହୁଗୁ ନାହାନ୍ତି ।

ସୂର୍ଯ୍ୟ ମଣ୍ଡଳକୁ ଲୋକେ ଧର୍ମଦେବତା କହନ୍ତି । ଧର୍ମ କର୍ମ ବେଳକୁ ସୂର୍ଯ୍ୟମଣ୍ଡଳକୁ ଦେଖାଇ ଦିଅନ୍ତି, ବିପଦରେ ସେହି ଧର୍ମଦେବତାଙ୍କୁ ଡାକନ୍ତି, ଅତ୍ୟାଚାର ବିରୋଧରେ ସେହି ଧର୍ମଦେବତାଙ୍କୁ ସାକ୍ଷୀ କରନ୍ତି । ଏହିପରି ଲୋକଙ୍କର ଧର୍ମ ରହିଲା ସୂର୍ଯ୍ୟମଣ୍ଡଳରେ ଯେପରି କର୍ମ ରହିଲା କପାଳ ଭିତରେ । ଧର୍ମ ହେଉ ବା କର୍ମ ହେଉ ମନରେ ନଯେନଲେ ବା ହାତରେ ନ ଧରିଲେ ଫଳ ଫଳେ ନାହିଁ । ଖାଲି ସୂର୍ଯ୍ୟଦେବତାଙ୍କୁ ବା ଅଦୃଷ୍ଟ କପାଳକୁ ଚାହିଁ ରହିଲେ ଚଳିବ ନାହିଁ । ତଥାପି ଲୋକେ ଉପରକୁ ଯୁହାର କରି କପାଳକୁ ଠୁଙ୍କି ଭୁଲି ହୋଇ ରହନ୍ତି କିବା ଅଧର୍ମ ବା ଅକାର୍ଯ୍ୟ କରନ୍ତି ।

ସୂର୍ଯ୍ୟ ଅବଶ୍ୟ ଲୋକଙ୍କର ପ୍ରଧାନ ଦେବତା । ଯେଉଁମାନେ ଲୋକର ଉପକାର କରନ୍ତି ସେମାନେ ଦେବତା । ସୂର୍ଯ୍ୟଦ୍ୱାରା ଜଗତରେ ବହୁ ମହୋପକାର ହୁଏ, ତେବେ ସୂର୍ଯ୍ୟଙ୍କୁହିଁ ପ୍ରଧାନ ପ୍ରତ୍ୟକ୍ଷ ଦେବତା ବୋଲିବା ସ୍ୱାଭାବିକ ପୁଣି ସେ ଚଳନ୍ତି ବିଷ୍ଣୁ, ଯେହେତୁ ତାହାଙ୍କର ନିତ୍ୟ ଯିବାଆସିବା ଲୋକେ ଦେଖନ୍ତି । ସେ ଧର୍ମଦେବତା ହେବା ବିଚିତ୍ରକଣ? ଯାହାଙ୍କ ଦର୍ଶନରେ ଲୋକେ ପ୍ରୀତ ହୋଇ ପୂଜାଆରାଧନା କରନ୍ତି ତାହାଙ୍କୁ ନଦେଖି ଲୋକେ ଦୁଃଖିତ ପୀଡିତ ହୋଇ ଆହାର ତ୍ୟାଗ କରିବା ଉଚିତ ।

ଲୋକେ ସୂର୍ଯ୍ୟଦେବଙ୍କୁ ଧର୍ମ ନାମରେ ଏତେ ସେବା ପୂଜା କରନ୍ତି, କିନ୍ତୁ ଘରେ ଝରକା ନ ରଖି ସୂର୍ଯ୍ୟ ତେଜରୁ ବଞ୍ଚିତ ହୁଅନ୍ତି, ଅନ୍ଧାର ଘରେ ରହନ୍ତି, ଆଲୁଅ ପଡେ ନାହିଁ । ମର୍ମ ନ ଜାଣି କର୍ମକଲେ ଏପରି ଭ୍ରମରେ ପଡିବାକୁ ହୁଏ ।

—ଃ*ଃ—

## ଦିଅଁ ଦର୍ଶନ

ଏ ଅଞ୍ଚଳରେ ଶୁଣା ଯାଉଅଛି ଯେ କୌଣସି ଧନାଢ୍ୟ ମାରବାଡି ଦଶହଜାର ଟଙ୍କା ଖରଚ କରି ପୁରୀ ଜଗନ୍ନାଥ ଠାକୁରଙ୍କୁ ବେଶ କରାଇ ଅଛନ୍ତି । ଠାକୁରଙ୍କର ସେହି ଅପୂର୍ବ ସ୍ୱର୍ଣ୍ଣର ବେଶ ଦେଖିବା ପାଇଁ ଆଜିକାଲି ଅସଂଖ୍ୟ ଲୋକ ପୁରୀ ଯାତ୍ରା କରୁଛନ୍ତି । ଅଶେଷ ବ୍ରହ୍ମାଣ୍ଡ ଠାକୁରଙ୍କୁ ଚିତ୍ର ବିଚିତ୍ର କରିବା ସହଜ କଥା ନୁହେ । ଯେ କି ଅନନ୍ତ, ଯାହାର ମହିମାର ଅନ୍ତନାହିଁ, ଯେ କି ସକଳ ସୃଷ୍ଟିକର୍ତ୍ତା, ଯେଉଁ ଜୀବ ଓ ପ୍ରକୃତିର ନିୟାମକ, ତାହାଙ୍କୁ ଗଢିବା, ଚିତ୍ର ବିଚିତ୍ର କରି ଦେଖାଇବା କି ମନୁଷ୍ୟର ସାଧ୍ୟ ? ଏହା କି ପରମାତ୍ମା ପରମେଶ୍ୱରଙ୍କର ବିଦ୍ରୂପକରଣ ନୁହେ ? ଏହାକୁହିଁ କହି ଦିଅଁକୁ ମାଙ୍କଡ ରୂପରେ ଗଢିବା । ଜଗନ୍ନାଥ ଠାକୁର ପ୍ରତିମାର ଏହି ବେଶଭୂଷା ଦର୍ଶନରେ ବା କିଛି ଲାଭଅଛି ? ଏଥିରେ ବା ପରମେଶ୍ୱରଙ୍କ ପ୍ରତି ଅଧିକ ଭକ୍ତି ଭାବର ଉଦ୍ରେକ ହୁଏ ? ଏପରି କିଛି ନାହିଁ । କେବଳ

ନେତ୍ରେନ୍ଦ୍ରିୟ ଲାଲସା ବଢିବାକୁ ଲାଗେ । ବୃଥା ଶ୍ରମ, ବୃଥା ବ୍ୟୟ, ଅତିରକ୍ତ ଜନତା ଏବଂ ବସୂଚିକାଦି ସଂକ୍ରାମକ ରୋଗ ମାତ୍ର ସାର ହୁଏ ।

ଜଗନ୍ନାଥଙ୍କ ବେଶ ଦର୍ଶନ ବଦଳରେ ମହାତ୍ମା ଗାନ୍ଧି ବା ଲୋକମାନ୍ୟ ତିଲକଂକୁ ଥରେ ଦେଖିଥିଲେ ଜୀବନର ବହୁତ ଉପକାର ହୁଅନ୍ତା । ସେମାନଙ୍କର ଆଦର୍ଶ, ଶିକ୍ଷା ଓ ସଙ୍କଳ୍ପ ଲଭ କଲେ ଯେ କେହି ଲୋକ ଅବଶ୍ୟ ନିଜର, ଦେଶର, ରଜାର, ପ୍ରଜାର ଉପକାର ସାଧନରେ ସହଯୋଗିତା କରି ପାରନ୍ତା । ଜୀବନ୍ତ ଦେବତାଙ୍କୁ ଛାଡି ଅଜ୍ଞ ସାଧାରଣ ନିର୍ଜୀବ ଠାକୁର ଦର୍ଶନ ପାଇଁ ଦଉଡ଼ୁଛନ୍ତି ।

ଲୋକଙ୍କର ଏହି ରୀତି ଏକପ୍ରକାର ଦେଖିଲେ ନ୍ୟାୟ ସଙ୍ଗତ ବୋଲିବାକୁ ହେବ । ତିଲକ, ଗାନ୍ଧି ପ୍ରଭୃତି ମହାତ୍ମାମାନେ ଜଗନ୍ନାଥ ଠାକୁର ପରି ଭୋଗରାଗ ପାଇଁ ବସି ନାହାନ୍ତି । ସେମାନଙ୍କୁ କ୍ଷଣେ ତର ନାହିଁ, ଲୋକୋପକାର ସକାଶେ ସେମାନେ ଦିନରାତି ପ୍ରାଣପଣେ ଲାଗିଛନ୍ତି । ପୁରୀ ଜିଲାରେ ଦୁର୍ଭିକ୍ଷ ହେଲା, ବନ୍ୟା ବଜ୍ରପାତ ହେଲା, ଅସଂଖ୍ୟ ଲୋକ ଖାଇବାକୁ ନପାଇ ମଲେ, ଜଗନ୍ନାଥଙ୍କ ସିଂହଦ୍ୱାର ଆଗରେ ଲୋକେ ମାରି ପଡିଲେ, ଅଥଚ ଠାକୁରଙ୍କର ରତ୍ନ ସିଂହାସନ ତିଳେ ଟଳିଲା ନାହିଁ, ତାହାଙ୍କର ଅତିରିକ୍ତ ବିପୁଳ ଲକ୍ଷ୍ମୀ ଭଣ୍ଡାରରୁ କିଛି ଖରଚ ହେଲା ନାହିଁ । କେହି ପାଖରେ ମଲେ ଥରେ ମହାସ୍ନାନ କରଦେଲେ ଜଗନ୍ନାଥଂକର କର୍ତ୍ତବ୍ୟ ଶେଷ । କାହିଁ ଗୁଜରାଟ କାହିଁ ଗାନ୍ଧି; କାହିଁ ଭାରତ ସେବାସଦନ କାହିଁ ଓଡିଶାର ଦୁର୍ଭିକ୍ଷ ପୀଡିତ ବନ୍ୟା ଉଚ୍ଛନ୍ନ ପଲ୍ଲିଗ୍ରାମ । ତଥାପି ବୋମ୍ବାଇ ଅଞ୍ଚଳରୁ ଜୀବନ୍ତ ଠାକୁର ଆସି ଓଡିଶାର ଦୁର୍ଭିକ୍ଷ ପୀଡିତ ଲୋକଂକ ଖବର ବୁଝିଲେ, ଆମ ଜଗନ୍ନାଥ ଠାକୁର ସେହି ଅଚଳ ଅଟଳ ନିଦା ପଥର । ଯଦି ଯାତ୍ରିମାନେ ଦଳ ଦଳ ହୋଇ ମହାତ୍ମା ଗାନ୍ଧି, ଠାକୁର ସାହେବ, ପଣ୍ଡିତ ଗୋପବନ୍ଧୁ ଇତ୍ୟାଦି ଲୋକହିତୈଷୀ ଦେବତାମାନଂକୁ ଦେଖି ଯାନ୍ତେ, ସେମାନେ ଆଉ କିଛି କାର୍ଯ୍ୟ କରି ପାରନ୍ତେ ନାହିଁ । ଜଗନ୍ନାଥ ପରି ଏକ ଏକ ଦାରୁବ୍ରହ୍ମ ହୋଇ ପଡନ୍ତେ । କିନ୍ତୁ ସେ ଯାହାହେଉ, ଜୀବନରେ ଥରେ ହେଉଁ ପଛେ, ମହଜ୍ଜନ ସଙ୍ଗଲାଭ କରିବା ଏବଂ ଲୋକସେବା ପାଣ୍ଠିରେ ଯଥାଶକ୍ତି ସମ୍ଭବ ଅର୍ଥ ଦାନକରିବା ଶ୍ରେୟସ୍କର ।

—॰❋॰—

## ପ୍ରାୟଶ୍ଚିତ୍ତ

ପାପରୁ ମୁକ୍ତିଲାଭ କରିବା ପାଇଁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରି ଯାଇଅଛି । ପୁଣି ବସ୍ତୁତଃ ପାପର କ୍ଷୟ ହେଉ ବା ନହେଉ ପ୍ରାୟଶ୍ଚିତ୍ତ ଦ୍ୱାରା ମନର ସନ୍ତୋଷ ଜାତ ହୋଇଥାଏ । ପାପର ଯଦି ଅର୍ଥ ହୁଏ ମନର ଅଶାନ୍ତି, ତେବେ ଏହି ସନ୍ତୋଷଦ୍ୱାରା ପାପ ନଷ୍ଟ ହୁଏ, କିନ୍ତୁ ମନରେ ଯଦି ପାପର ଧାରଣା ନ ଥାଏ ଏବଂ ପ୍ରାୟଶ୍ଚିତ୍ତରେ ବିଶ୍ୱାସ ନ ଥାଏ, ତେବେ ଧନର ଅପଚୟ ଏବଂ ବୃଥା ବାହ୍ୟାଡମ୍ବର ମାତ୍ର ସାର ହୁଏ, କିନ୍ତୁ ଲୋକଂକ ମନରୁ ପାପ ପ୍ରତି ଘୃଣା

ବହିଷ୍କୃତ ହୁଏ । ସୁତରାଂ ଅନେକ ସମୟରେ ଅନ୍ୟ ଲୋକଂକ ଭୀତି ନିବାରଣାର୍ଥେ ପ୍ରାୟଶ୍ଚିତ୍ତ କରି ଯାଇଥାଏ ।

କୁସଂସ୍କାର ବଶୀଭୂତ ହୋଇ ଲୋକେ ଯେପରି ପାପକର୍ମକୁ ଧର୍ମ ବୋଲି ବିଚାର କରନ୍ତି ସେହିପରି ଧର୍ମକୁ ମଧ୍ୟ ପାପରେ ପରିଣତ କରିଥାନ୍ତି । ଏହି ପାପର ପ୍ରାୟଶ୍ଚିତ୍ତ କରିବା-ଦ୍ୱାରା ସେମାନେ ଆଉ ଏକ ନୂତନ ପାପ କରିଥାନ୍ତି । ଏହି ପ୍ରାୟଶ୍ଚିତ୍ତରୁ ପାପକ୍ଷୟ ହେବା ଦୂରେ ଥାଉ ନୂତନ ପାପ ସଞ୍ଚୟ କରିବାକୁ ହୁଏ ।

ପୃଥିବୀ ପର୍ଯ୍ୟଟନ ଏକ ସୁମହତ୍ ପୁଣ୍ୟ କାର୍ଯ୍ୟ ବୋଲି ଶ୍ରୁତି ସ୍ମୃତି ପୁରାଣାଦିରେ ବର୍ଣ୍ଣିତ ହୋଇଥିଲେ ହେଁ ବିଲାତ ଭ୍ରମଣକାରୀମାନଂକୁ ପ୍ରାୟଶ୍ଚିତ୍ତ କରିବାକୁ ମଧ୍ୟ ହୁଏ । ସେଦିନ ମୟୂରଭଞ୍ଜ ମହାରାଜା ମହୋଦୟଂକୁ ଆମେରିକା ଇଂଲଣ୍ଡ ପ୍ରଭୃତି ଭ୍ରମଣ କରିଥିବା ହେତୁ ପ୍ରାୟଶ୍ଚିତ୍ତ କରିବାକୁ ହୋଇଥିବା କଥା ଖବର କାଗଜ ମାନଂକରେ ଘୋଷିତ ହୋଇଥିଲା । ଆଜି ଅଧୋଗତି ପ୍ରାପ୍ତ ଭାରତକୁ ଉନ୍ନତ ଇଂଲଣ୍ଡ ସହିତ ତୁଳନା କରିବାକୁ ହେଲେ ନରକ ଓ ସ୍ୱର୍ଗର ପ୍ରଭେଦ ଦେଖାଯାଏ । ଭାରତର ଦୁରବସ୍ଥା ପର୍ଯ୍ୟାଲୋଚନା କଲେ ଭାରି ଶୋକ ଜାତ ହୁଏ । ଭାରତ ଏତେଦୂର ଲକ୍ଷଭ୍ରଷ୍ଟ ହୋଇ ପଡ଼ିଅଛି ଯେ ଇଂରାଜମାନଙ୍କୁ ଭାରତୀୟ ହିନ୍ଦୁ ମାନଙ୍କର ତେତିଶକୋଟିଦେବତା କହିଲେ ଅସଙ୍ଗତ ହେବ ନାହିଁ । ଧନରେ ବଳରେ, ବିଦ୍ୟାରେ, ପୌରୁଷରେ, ପରାକ୍ରମରେ, କି ଅଧ୍ୟାତ୍ମଜ୍ଞାନରେ, କି ବିଜ୍ଞାନରେ ଇଂରାଜମାନେ ଭାରତବାସିଙ୍କର ଦେବତା ପରି ଆଦର୍ଶସ୍ଥାନୀୟ । ଅନ୍ୟାନ୍ୟ ଇତିହାସକଥା ବା ନିଗୂଢ଼ ଅର୍ଥ ଯାହାଥାଉ, ସମୁଦ୍ର ବାନ୍ଧିଥିଲେ ବୋଲି, ପୁଷ୍ପକ ବିମାନ ଆରୋହଣ କରି ଆକାଶରେ ବିହାର କରିଥିଲେ ବୋଲି, ଶୂନ୍ୟରେ ଅବସ୍ଥାନକରି ମର୍ମ ଭେଦୀ ଅସ୍ତ୍ର ପ୍ରୟୋଗ କରିଥିଲେ ବୋଲି ରାମଚନ୍ଦ୍ର ଆମ୍ଭମାନଙ୍କର ଇଷ୍ଟଦେବତା ଅଛନ୍ତି । ଇଂରାଜ ଲୋକମାନେ ଏହିପରି ଅନେକ ମହତ୍ କାର୍ଯ୍ୟ କରି ପାରି କି ହେତୁ ଆମ୍ଭମାନଙ୍କର ଦେବତା ପଦ ବାଚ୍ୟ ହେବେ ନାହିଁ ? ଏହି ମହାପୁରୁଷ ମାନଙ୍କର ଆବାସ ସ୍ଥାନ-ଆମେରିକା, ଇଂଲଣ୍ଡ ପ୍ରଭୃତି ପୃଥିବୀର ଉନ୍ନତ ପ୍ରଦେଶ ମାନ ଭ୍ରମଣ କରିବା ହେତୁ ଯଦିଚ ପାପ ସମ୍ପାଦନ କରିବାକୁ ହୁଏ, ତେବେ ଆମ୍ଭମାନଙ୍କର ରକ୍ଷଣଶୀଳ ପଣ୍ଡିତ ବ୍ରାହ୍ମଣମାନଙ୍କର ଧର୍ମକୁ ଦୂରୁ ଜୁହାର । ଭେକ ପରି କୂପରେ ଆବଦ୍ଧ ରହିବା, ଆପଣା ମଧ୍ୟରେ ଉଚ୍ଚନୀଚ ଜାତିର ସୃଷ୍ଟିକରି ପରସ୍ପର ପ୍ରତି ବିଦ୍ୱେଷାଚରଣ କରିବା କି ଧର୍ମ ସଙ୍ଗତ !

ପୁଣି ଆଉ ଏକ ଭାବରେ ଦେଖିବାକୁ ଗଲେ— କୌଣସି ଶ ବୃତ୍ତି ଅବଲମ୍ବନ କରିବା ପାଇଁ ସ୍ୱର୍ଗ ରାଜ୍ୟରେ ଅବସ୍ଥିତ କରିବା ମଧ୍ୟ ନିତାନ୍ତ କାର୍ଯ୍ୟ, ବରଂ ଲୋକହିତ ଚିକୀର୍ଷା ପ୍ରଣୋଦିତ ହୋଇ ଅନୁଭବ-ଉପଲବ୍ଧି-ଅଭିଜ୍ଞତା ସଂଗ୍ରହ କରିବା କିମ୍ବା ଈଶ୍ୱରସୃଷ୍ଟି-ଏହି ବିଶାଳ ସଂସାରର ବୈଚିତ୍ର୍ୟ ସନ୍ଦର୍ଶନରେ ପ୍ରବୃତ୍ତ ହେବା ପ୍ରକୃଷ୍ଟ ଧର୍ମକାର୍ଯ୍ୟ ଅଟେ । ଯେତେବେଳେ ମହାରାଜ ମହୋଦୟଂକୁ ମହଦୁଦ୍ଦେଶ୍ୟ ସାଧନାର୍ଥ ବିଦେଶଭ୍ରମଣ କରିବା

ହେଉ ପ୍ରାୟଶ୍ଚିତ୍ତ କରିବାକୁ ପଡଅଛି ତେବେ ଗରିବ ବ୍ରାହ୍ମଣ ବା ପୁତ୍ର ଧନୋପାର୍ଜ୍ଜନ କରିବା ପାଇଁ ରେଙ୍ଗୁନ ପ୍ରଭୃତି ଦେଶକୁ ଗମନ କଲେ ତାହା ନିମନ୍ତେ ବା କି କରି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରା ଯାଇ ନ ପାରେ !

ରକ୍ଷଣଶୀଳ ପାରିଷଦ ପୃଷ୍ଠର ଏବଂ ଅନୁଚର ଓ ସହଚର ମାନଙ୍କର ମନ ରକ୍ଷା କରିବା ନିମନ୍ତେ ମହାରାଜ ମହୋଦୟ ପ୍ରାୟଶ୍ଚିତ୍ତ କରିଥିଲେ ହେଁ ତଦ୍ଦ୍ୱାରା ସମାଜ ସମକ୍ଷରେ ସଦାଦର୍ଶ ଦେଖାଇ ନାହାନ୍ତି । ଯେଉଁମାନେ ଆପଣାର ଶକ୍ତି ଏବଂ ସଦ୍‌ଗୁଣାବଳୀ ଦ୍ୱାରା ସଂସ୍କାର କ୍ଷେତ୍ରରେ ପଥପ୍ରଦର୍ଶକ, ସେମାନେ ଯଦି ଏହି ପୌରୋହିତ୍ୟ-ଅତ୍ୟାଚାରକୁ ପ୍ରଶ୍ରୟ ଦିଅନ୍ତି, ତେବେ ସମାଜ ସଂସ୍କାର ସୁଦୂର ପରାହତ ।

ପ୍ରାୟଶ୍ଚିତ୍ତରେ ଯେତେ ପଇସା ଖରଚ ହୁଏ ବ୍ରାହ୍ମଣ ମାନଂକର ସେତେ ଲାଭ ହୁଏ । ମହାରାଜ ମହୋଦୟଂକର ଏହି ପ୍ରାୟଶ୍ଚିତ୍ତର ସଂସ୍କାରାନୁକୂଳ ବିଶେଷତ୍ୱ ଏହି ଯେ ଏହା ବହୁ ସ୍ୱଳ୍ପ ବ୍ୟୟରେ ସମ୍ପାଦିତ ହୋଇଅଛି, କିନ୍ତୁ ଏହିବ୍ୟୟ ସଂକୋଚ ଦ୍ୱାରା ଯେଉଁ ଉପକାର ହୋଇଅଛି ସେହି କୁସଂସ୍କାରକୁ ବଦ୍ଧ ମୂଳ ରଖିବା ଦ୍ୱାରା ସମାଜର ତତୋଧିକ କ୍ଷତି ସାଧିତ ହୋଇଅଛି ।

—:*:—

## ଭୂତ ପ୍ରେତ

ଭୂତ ଓ ପ୍ରେତ ଏ ଦୁଇଟା ଅବସ୍ଥ, ଏଥିରେ ବସ୍ତୁଜ୍ଞାନ କରି ଅନେକ ଲୋକ ବିଷମ ଭ୍ରମରେ ପଡ଼ି ଶଂକାକୁଳ ଓ ଶୋକବିହ୍ୱଳ ହୁଅନ୍ତି । ମନୁଷ୍ୟ ମୃତହୋଇଗଲେ ତାହାର ଶରୀରଟାକୁ ଶବ ବା ପ୍ରେତ କହନ୍ତି ।

"ଗୁରୋଃ ପ୍ରେତସ୍ୟ ଶିଷ୍ୟସ୍ତୁ ପିତୃମେଧଂ ସମାଚରନ୍ ।
ପ୍ରେତହାରୈଃ ସମଂ ତତ୍ର ଦଶ ରାତ୍ରେଣ ଶୁଧ୍ୟତି ।" ମନୁ ।

ଯେତେବେଳେ ଗୁରୁଙ୍କର ମରଣ ହୁଏ ସେତେବେଳେ ତାହାଂକର ଶବ ବା ପ୍ରେତ ଉଠାଇ ନେଇ ଦହନ କରିବା ଲୋକ ଦଶ ଦିନରେ ଶୁଦ୍ଧହୁଏ । ମୃତ ମନୁଷ୍ୟର ଶବ ଦାହ ନହେବା ପର୍ଯ୍ୟନ୍ତ ତାହାକୁ ପ୍ରେତ କହନ୍ତି ପୁଣି ଯେଉଁ ବ୍ୟକ୍ତିର ଶବ ଦାହ ହୋଇ-ଯାଏ ତାହାକୁ ଭୂତ କହନ୍ତି । ଅର୍ଥାତ ଅମୁକ ନାମକ ଏକ ବ୍ୟକ୍ତି ଥିଲେ । ଉକ୍ତ ପୁରୁଷ ବା ସ୍ତ୍ରୀ ବର୍ତ୍ତମାନ ଆଉ ନାହାନ୍ତି, ଭୂତସ୍ଥ ହେଲେ, ଭୂତ ହୋଇଗଲେ । ଅତଏବ ଉକ୍ତ ବ୍ୟକ୍ତିଂକ ନାମ ଅଟେ ଭୂତ । ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ବିଦ୍ୱାନ ବ୍ୟକ୍ତିମାନେ ଏହାକୁହିଁ ଭୂତ କହନ୍ତି । କିନ୍ତୁ ଯେଉଁମାନେ କୁସଙ୍ଗ ଏବଂ କୁଶିକ୍ଷା ଲାଭ କରନ୍ତି, ସେମାନେ କୁସଂସ୍କାର ବଶୀଭୂତ ହୋଇ ଭୂତ ନାମରେ ବୃଥା ଶଂକା କରନ୍ତି । ସେମାନଂକୁହିଁ ଏହି ଶଙ୍କା ରୂପ ଭୂତ, ପ୍ରେତ, ଡାକିନୀ, ଶାକିନୀ ଇତ୍ୟାଦି ଭ୍ରମଜାଲ ଦୁଃଖଦାୟକ ହୁଏ । ଯେଉଁ ଲୋକ ମରିଯାଏ ସେହି ବ୍ୟକ୍ତି ଆପଣାର ଶୁଭାଶୁଭ କର୍ମାନୁକ୍ରମେ ପରମେଶ୍ୱରଂକର ବିଧାନାନୁସାରେ ସୁଖ ଦୁଃଖ ଭୋଗ କରିବାପାଇଁ ପୁନର୍ବାର ଜନ୍ମାନ୍ତର ପ୍ରାପ୍ତ ହୁଏ । ଈଶ୍ୱରଂକର ଏହି ବ୍ୟବସ୍ଥା ହେତୁ

ଏଥା କରି ନପାରେ । ଅଜ୍ଞାନୀ ଲୋକମାନେ ବୈଦ୍ୟ ଶାସ୍ତ୍ର ଓ ପଦାର୍ଥ ବିଜ୍ଞାନ ଜାଣି ଘାତ ଜ୍ୱରାଦି ଶାରୀରିକ ଏବଂ ଉନ୍ମାଦାଦି ମାନସିକ ରୋଗକୁ ଭୂତ, ପ୍ରେତ, ମାର, ଭୈରବ ଆଦି ନାମରେ ଅଭିହିତ କରନ୍ତି । ସେମାନେ ଔଷଧ ସେବନ ଓ ପଥ୍ୟାଦି ନିୟମ ପାଳନ ର କୌଣସି ଧୂର୍ତ୍ତ, ପାଷଣ୍ଡ, ଦୁରାଗ୍ରହୀ, ମୂର୍ଖ, ସ୍ୱାର୍ଥପର, ଶୂଦ୍ର, ଚମାର, ମ୍ଲେଚ୍ଛାଦି ଲୋକଂ କଥାରେ ବିଶ୍ୱାସକରି ଅନେକ ପ୍ରକାର ଭଣ୍ଡ ବ୍ୟାପାର, ଯଥା ପୂଜା ବିଧାନ, ମଦ୍ୟପାନ, ଉଚ୍ଛିଷ୍ଟ ଭୋଜନ, ଝଡ଼ାଝୁଡ଼ି, ଫୁଙ୍କାଫୁଙ୍କି, ଯନ୍ତ୍ର, ମନ୍ତ୍ର, ତନ୍ତ୍ର ଇତ୍ୟାଦିର ଅନୁସରଣ କରନ୍ତି ପୁଣି ଆପଣାର ସୁଖ, ଶାନ୍ତି, ଧନ, ମାନ ଇତ୍ୟାଦି ନଷ୍ଟ କରି ନିଜର ଏବଂ ସନ୍ତାନମାନଂଙ୍କର ରୋଗ, ଦୁଃଖ, ଶୋକ ବୃଦ୍ଧି କରନ୍ତି । ଅଜ୍ଞାନରୁ ଆତ୍ମ ପ୍ରତାରଣା ଏବଂ ଆତ୍ମ ପ୍ରତାରଣାରୁ ଆତ୍ମ ହତ୍ୟା କେବଳ ଶେଷ ଫଳ ହୁଏ ।

—ଃ✻ଃ—

## ଚିରକାଳ ନା ବାଳକ

ଆମ୍ଭମାନଂକର ବଡ଼ ଦେବତା ଗୁଡ଼ିକ ସରକାର ଆଇନାନୁସାରେ ନାବାଳକ । ମନୁଷ୍ୟମାନଂକର ନା ବାଳକତ୍ୱ ୧୮ ବା ୨୧ ବର୍ଷ ବୟସରେ ଛୁଟିଯାଏ, କିନ୍ତୁ ଦେବତାମାନଙ୍କର ନା ବାଳକତ୍ୱ ଚିରକାଳ ରହେ । କୌଣସି ଅଭିଭାବକ ଅଭାବରେ ଏମାନେ ଦଣ୍ଡେ ସୁଦ୍ଧା ଚଳିପାରନ୍ତି ନାହିଁ । କେବଳ ଆଇନାନୁସାରେ ନୁହେ, ସାମାଜିକ ବିଧି ବିଧାନରେ, ଦୈହିକ ଦୈନିକ ଇତ୍ୟାଦି କାର୍ଯ୍ୟରେ ଏମାନେ ଆଜୀବନ ନା ବାଳକ । ମନୁଷ୍ୟ ଜାତିରେ ନାବାଳକମାନେ ସମ୍ପତ୍ତି ଭୋଗ ଦଖଲରେ, ଦାଖଲ ଖାରଜରେ, ମାମଲା ମକଦ୍ଦମାରେ, ଭୋଟ ବା ମତ ପ୍ରଦାନରେ, ସ୍ତ୍ରୀ ସଂଭୋଗରେ, ସନ୍ତାନ ସମ୍ପାଦନରେ ଅକ୍ଷମ ରହନ୍ତି, ମାତ୍ର ଖାଇବା ପିଇବାରେ, ବସିବାରେ ଶୋଇବାରେ, ଗାଧୋଇବାରେ ବୁଲିବାରେ, ଖେଳ କୌତୁକ ଇତ୍ୟାଦି ବ୍ୟାପାରରେ ସ୍ୱଦକ୍ଷ ଅଟନ୍ତି । କିନ୍ତୁ ଠାକୁର-ନାବାଳକମାନେ ନିଜ ସମ୍ପତ୍ତିର ଭୋଗ ଦଖଲ ବା ଦାଖଲ ଖାରଜ କରିବା, ଆଇନ ମୁତାବକ ମାମଲା ମକଦ୍ଦମା ଚଲାଇବା ଇତ୍ୟାଦି ଦୂରେ ଥାଉ ନିଜେ ସ୍ୱହସ୍ତରେ ଖାଇପାରନ୍ତି ନାହିଁ, ପିନ୍ଧି ଜାଣନ୍ତି ନାହିଁ କିବା ଚଳପ୍ରଚଳ ହୋଇ ପାରନ୍ତି ନାହିଁ । ପଣ୍ଡା ପୂଜାରୀମାନେ କେହି ଖୁଆଇ ଦିଅନ୍ତି, କେହି ଶୁଆଇ ଦିଅନ୍ତି, କେହିବା ଦାଣ୍ଡ ବୁଲାଇ ନିଅନ୍ତି ଇତ୍ୟାଦି । ଠାକୁର ନାବାଳକମାନଙ୍କର କେତେକ ବିଶେଷତ୍ୱ ଅଛି । ମନୁଷ୍ୟମାନଂକ ପରି ଠାକୁରମାନଂକର ଜନ୍ମ, ମରଣ ଓ ଗର୍ଭାଧାନାଦି ବିବିଧ ସଂସ୍କାର ଅଛି, ପରନ୍ତୁ ଏମାନେ ଆଜୀବନ ନାବାଳକ । ଏମାନେ ଚିରକାଳ ନାବାଳକ ହୋଇହେଁ ବାଲ-ସୁଲଭ ଚପଳତା, ସ୍ୱଚ୍ଛନ୍ଦ ଓ ସାରଲ୍ୟ ଏମାନଂକ ଠାରେ ଦେଖାଯାଏ ନାହିଁ । ଠାକୁର ଝିଅମାନେ ଛନ୍ଦ, କପଟ, ମାତ୍ସର୍ଯ୍ୟ, ମୋହ, ମମତା, ଭୋଗରାଗ, ଦ୍ୱେଷ ହିଂସା, ବିଷୟ ଲାଳସା ଇତ୍ୟାଦି ଯୌବନ ସୁଲଭ ଦୁର୍ବ୍ୟସନରେ ଜଡ଼ିତ । ଏମାନଂକ ପାଇଁ କେତେ ଖଟଣୀ ଦାସି ଦାସୀ

ନିଯୁକ୍ତ ରହନ୍ତି, ମଦ୍ୟ ମାଂସାଦି ଖାଦ୍ୟ ପେୟର ଆୟୋଜନହୁଏ ପୁଣି ପ୍ରଜା ପୀଡ଼ା,
ସାକ୍ଷ୍ୟ, ଏବଂ ମାମଲା ମକଦ୍ଦମାର ବ୍ୟବସ୍ଥା ହୁଏ ।

ଯେଉଁ ନା ବାଲକମାନେ ନିଜର ସଂରକ୍ଷଣରେ ଏକାନ୍ତ ଅକ୍ଷମ, ସେ ପରିବାର, ପରିଜନ ଓ ଇତର ଲୋକମାନଙ୍କୁ ପରିପୋଷଣ କରିବା ବିଡ଼ମ୍ବନା ମାତ୍ର କି ଏହି ଠାକୁର ନାବାଳକମାନେ ବିଲୋକ ପାଳକ, ପାପୀଲୋକ ତାରକ, ଦୁଷ୍ଟ ସଂହାରକ, ଶିଷ୍ଟପାଳକ ଇତ୍ୟାଦି ନାମରେ ଅଭିହିତ ହୁଅନ୍ତି । ଫଳରେ ଏମାନେ କେବଳ ଅଜ୍ଞାନ ବାଲକ ପରି ଦୁଷ୍ଟାମି କରିଥାନ୍ତି ଏବଂ ଭକ୍ତମାନଙ୍କର ଅଭିଷ୍ଟ ସାଧନ କରିବା ଦୂରେ ଥାଉ ଲୋକମାନଙ୍କର ଅନିଷ୍ଟ ଉତ୍ପାଦନ କରି ଥାନ୍ତି ।

—:*:—

## ଠାକୁରାଣୀ ଯାତ୍ରା

ଜଗତକର୍ତ୍ତା ଜଗଦୀଶ୍ୱର ଅଟନ୍ତି ଲୋକମାନଙ୍କ ଠାକୁର । ଠାକୁରଙ୍କର ସ୍ତ୍ରୀ ଅଛନ୍ତି । ସେ ଅଟନ୍ତି ଆମ୍ଭମାନଙ୍କର ଠାକୁରାଣୀ । ଠାକୁର ଦମ୍ପତିଙ୍କର ଅବଶ୍ୟ ପୁତ୍ର କନ୍ୟା ଥିବେ । ଭୂତ, ପ୍ରେତ, ଡାକିନୀ, ପିଶାଚୀ, ବୋଧହୁଏ, ଏମାନେ ହୁଅନ୍ତି ଠାକୁର ଠାକୁରାଣୀଙ୍କର ସନ୍ତାନଗଣ । କିନ୍ତୁ ଠାକୁର ଠାକୁରାଣୀ ମଧ୍ୟରେ ସ୍ୱର୍ଗ ନରକ ପ୍ରଭେଦ । ଠାକୁରମାନେ ଫଳମୂଳ ଓ ମିଷ୍ଟାନ୍ନ ଆହାର କରନ୍ତି କିନ୍ତୁ ଠାକୁରାଣୀ ଖାଆନ୍ତି ରକ୍ତ, ମାଂସ, ଅସ୍ଥି, ଚର୍ମ । ଠାକୁର ଯେତେ ପୁଅ ଝିଅ ଜନ୍ମକରି ପୋଷି ପାଳି ରଖନ୍ତି ଠାକୁରାଣୀ ସେମାନଙ୍କୁ ମୋଡ଼ିମାଡ଼ି ଚିପିମାରି ଖାଇପକାନ୍ତି । ଏହି ଠାକୁରାଣୀଙ୍କ ସନ୍ତୁଷ୍ଟ କରିବା ନିମନ୍ତେ ଲୋକେ ଅସଂଖ୍ୟ ଜୀବ ହତ୍ୟା କରନ୍ତି, ଠାକୁରାଣୀ ନାମରେ କେତେ ଛେଳି, ମେଣ୍ଢା, ଗୋରୁ, ପୋଢ଼ ଓ ମନୁଷ୍ୟ ମଧ୍ୟ ମାରନ୍ତି । ଏହି ଠାକୁରାଣୀ ରହନ୍ତି ବଣ ଜଙ୍ଗଲରେ, ପଥର ଖୋଲରେ ବା ବୃକ୍ଷ କୋତରରେ । ସେହି ସ୍ଥାନରୁ ଠାକୁରାଣୀଙ୍କ ଟାଣିଆଣି ଲୋକେ ଗ୍ରାମରେ ଠାକୁରାଣୀ ଯାତ୍ରା କରନ୍ତି । ଚଣ୍ଡି, ଶ୍ମଶାନୀ, ଲହଲହ ଜିହ୍ୱା ଇତ୍ୟାଦି ରୂପରେ ଠାକୁରାଣୀ ଦେଖାଦିଏ ପୁଣି ନୀଚ ଜାତୀୟ ସ୍ତ୍ରୀ ପୁରୁଷ ଦେହରେ ଆବେଶ କରେ । ନାନା ସ୍ଥାନରେ ଗୁଡ଼ିଏ, ପଥରଟେ, କୌଣସି ଗଛର ମିଂଅ ବା ପୁଅଟାଏ, କିବା ମାଟି ଦୁମଟାଏ ବା ଉଇହୁଙ୍କା ଟାଏ ଠାକୁରାଣୀ ରୂପରେ ପ୍ରତିଷ୍ଠିତା । ଏହି ଠାକୁରାଣୀଙ୍କି ଫୁଲ, ଚନ୍ଦନ, ସିନ୍ଦୁର, ହଳଦରେ ମାଜଣାକରି ତାହା ଉପରୁ ଫୁଲ ଯନ୍ତ୍ରାଟାଏ ନେଇ ଗ୍ରାମରେ ରଖନ୍ତି, ସେହି ଠାକୁରାଣୀ ନାମରେ ଭୋଗଭାଗ, ନାଟ, ବହୁରୂପ ଇତ୍ୟାଦିକରି ୧୨।୧୫।୨୦ ଦିନ ପର୍ଯ୍ୟନ୍ତ ଯାତ୍ରାକରନ୍ତି । ଏହି ଯାତ୍ରାରେ ହଜାର ହଜାର ଟଙ୍କା ଖରଚ କରାଯାଏ । ଗ୍ରାମର ଧନୀ, ଦରିଦ୍ର, ମୂର୍ଖ, ପଣ୍ଡିତ, ବ୍ରାହ୍ମଣ, ବାଉରି ସମସ୍ତେ ଏହି ଯାତ୍ରା ପାଇଁ ଚାନ୍ଦା ଦେବାକୁ ବାଧ୍ୟ । ଯେ ଚାନ୍ଦା ନଦେବ ତାକୁ ଠାକୁରାଣୀ ଖାଇବେ, ତା' ଘରେ ବାଡ଼ି ପଡ଼ିବ, ଏହି ଭୟରେ ଅନେକଲୋକ ଚାନ୍ଦା ଦେବାକୁ

ବାଧ । ପରେ ଠାକୁରାଣୀ ଖାଇବେ କ ନାହିଁ ଅଣ ଶୁନା ଭେଦା ନଦେବା ଲୋକଙ୍କୁ ଗ୍ରାମ ଲୋକେ ସର୍ବ୍ବ ଧନ ମାର ଖାଇ ପକାଇବେ । ଠାକୁରାଣୀ ଯାତ୍ରାରେ କେହି କେହି ଲୋକ ରଜା, ରାକ୍ଷସ, ବାଘ, ଭାଲୁ ଇତ୍ୟାଦି ବେଶ ଧରିବାକୁ ସଜିଥାନ୍ତି । ସେଥିରେ ପୁଣି ଠାକୁରାଣୀ ବର ଦେବେ ଏବଂ ଲୋକର କାମନା ସିଦ୍ଧହେବ ।

ଏହି ଭଣ୍ଡ ବ୍ୟାପାରରେ ମାତ୍ର ଅସଂଖ୍ୟ ଲୋକ ଅଜସ୍ର ଧନ ବୃଥା ବ୍ୟୟ କରନ୍ତି, ବହୁ କ୍ଲେଶ ସହ୍ୟ କରନ୍ତି ଏବଂ ଆପଣା ମଧ୍ୟରେ ମନାନ୍ତର ଘେନ ଗାଳି ଢାଳି, ମାରପିଟ, ମାମଲା ମୋକଦ୍ଦମା ଚଳାଇ ସୁଖଶାନ୍ତି ହରାଇ ବସନ୍ତି । ସେତେବେଳେ ଆଉ ଠାକୁରାଣୀ ରକ୍ଷା କରନ୍ତି ନାହିଁ । ସହର ମାନଙ୍କରେ ଠାକୁରାଣୀ ଯାତ୍ରା, ପଲ୍ଲି ମଫସଲ ମାନଙ୍କରେ ଯାମା କାଲସୀ ଇତ୍ୟାଦିର ସୁଆଙ୍ଗ । ଏହିପରି ପଲ୍ଲି, ସହର ସର୍ବତ୍ର ଠାକୁରାଣୀଙ୍କ ଘେନ ଲୋକେ ବ୍ୟତିବ୍ୟସ୍ତ ।

ଆଜ କାଲ ବର୍ଷାର ଅଭାବ ଓ ଗ୍ରୀଷ୍ମ ତାପ ଯୋଗୁଁ ଲୋକେ ବଡ଼କଷ୍ଟ ପାଉଛନ୍ତି । ହୋମାଦି ଯଜ୍ଞ ନହେବାରୁ ଯଥା ସମୟରେ ଯଥେଷ୍ଟ ପରିମାଣ ବର୍ଷା ହେଉନାହିଁ । ବର୍ଷାଭାବରୁ ଦୁର୍ଭିକ୍ଷ, ଦାରିଦ୍ର୍ୟ ଏବଂ ନାନାପ୍ରକାର ରୋଗର ପ୍ରାଦୁର୍ଭାବ । ଲୋକେ ଏକଥା ସବୁ ଜାଣିଶୁଣି ଯଜ୍ଞାଦି ଅନୁଷ୍ଠାନ ଛାଡ଼ି ଠାକୁରାଣୀ ପର୍ବ ପଞ୍ଚାଣୀରେ ମାତିଛନ୍ତି । ଦେଶର ଅଭିଜ୍ଞ ପଣ୍ଡିତନାମା ବ୍ୟକ୍ତିମାନେ ମଧ୍ୟ ଏହି ଦୁରାଗ୍ରହର ଦୁର୍ବ୍ୟସନର ପ୍ରଶ୍ରୟ ଦିଅନ୍ତି । ଏହାକୁହିଁ କହନ୍ତି ବିନାଶ କାଲେ ବିପରୀତ ବୁଦ୍ଧି ।

---

## ଗୁଣ୍ଡିଚା ଯାତ୍ରା

ବର୍ଷରେ ଥରେ ଜଗନ୍ନାଥ ମହାପ୍ରଭୁ ରଥଚଢ଼ି ବୁଲି ବାହାରନ୍ତି, ଲୋକଙ୍କର ସୁଖ ଦୁଃଖ ଦେଖନ୍ତି, ହାହାକାର ଶୁଣନ୍ତି, ଆପଣାର ଭକ୍ତମାନଙ୍କୁ ମୁକ୍ତ କରନ୍ତି, କିଂବା ପ୍ରଜା ମାନଙ୍କଠାରୁ ଦେବସ୍ୱ ସଂଗ୍ରହ କରନ୍ତି, ପୂଜକ, ଦର୍ଶକ, ସେବକ ଇତ୍ୟାଦି ଲୋକ ମାନଙ୍କଠାରୁ ଆପଣାର ବେଠି କାଠ, ଝଜଣା ପାଉଣା ଇତ୍ୟାଦି ଆଦାୟ କରନ୍ତି, କିଂବା ନଡ଼ିଆ କଦଳୀ, ଖଜା ପିଠା, ପଣା ପାଣି ଇତ୍ୟାଦି ଖାଇ ବୁଲନ୍ତି । ସେ ଯା ହେଉ ଏହି ଦେବଯାତ୍ରାର ଲାଭାଲାଭ ମଧ୍ୟରେ ସଦା ଦେଖାଯାଏ ଯେ ଗୁଡ଼ିଆମାନେ ମିଠାଇ ବିକୀକରି ଗୃହପଇସା ଲାଭ କରନ୍ତି, ସମ୍ବଲହୀନ ଗରିବ ଲୋକମଧ୍ୟ ଗୃହ ପଇସା ଧାର କରି ମନମୁଖୀ ଗନ୍ତେ ହେଉପଛକେ ଢଆର କର ରଥ ଅଗରେ ପସରା ଟିଏ ପକାଇଥାଏ । ଖଜାଖିଆ ହିଁ ଏ ଯାତ୍ରାର ଏକ ପ୍ରଧାନ ଅଙ୍ଗ । ପିଲାମାନେ ଯାହାହେବ ଖଜା କିଣିବା ପାଇଁ ପଇସା ପାଆନ୍ତି; ଧୋବା, ଭଣ୍ଡାରି, ଗୌଡ଼, ବଢ଼େଇ ଇତ୍ୟାଦି ସେବକମାନେ ଯାତ୍ରାଖରଚ ନାମରେ କିଛି କିଛି ପଇସା ପାଆନ୍ତି । ଏଦିନ ନଡ଼ିଆ ବେଶି ବିକି ହୁଏ । ପ୍ରାୟ ପ୍ରତ୍ୟେକ ଦର୍ଶକ ଅନ୍ତତଃ ଗୋଟିଏ ନଡ଼ିଆ ନେଇ ରଥ ଉପରେ

ଭାଙ୍ଗନ୍ତି । ଜଗନ୍ନାଥଙ୍କର ସମ୍ମୁଖତଃ କାଡ଼ଆରେ ବଡଭିଡ଼ । ବାଳକ ବାଳିକାଗଣ ରଙ୍ଗ ରଙ୍ଗିଆ ପୋଷାକ ପିନ୍ଧି ବାହାରନ୍ତି । ରଥ ଦଉଡ଼ି ଟଣାଟଣି ବ୍ୟାୟାମରେ କେହି କେହି ଆନନ୍ଦ ଉପଭୋଗ କରନ୍ତି । ଏହି ଦିନ ଭଦ୍ରଘର ଭଦ୍ରାସୁଣୀ ମାନେ ମଧ୍ୟ ରାତି ବେଳେ ଝରକାଏ ଦାଣ୍ଡକୁ ବାହାରିବାକୁ ଅବସର ପାଆନ୍ତି । ଅଡ଼ପ ମଣ୍ଡପରେ ଜଗନ୍ନାଥଙ୍କୁ ଦର୍ଶନ କଲେ ଅଶେଷ ପୁଣ୍ୟଲାଭ ହୁଏ, ସମସ୍ତ ପାପକ୍ଷୟ ହୋଇଯାଏ । ଏଥିପାଇଁ ସଧବା, ବିଧବା, ବାଳିକା, ବୃଦ୍ଧା ସମସ୍ତେ ଯେତ୍କା ସୁବିଧା କ୍ରମେ ରାତିବେଳେ ଅଡ଼ପ ମଣ୍ଡପକୁ ଯାଇ ଚାଲିଥାନ୍ତି । ଏହି ସମୟରେ ପଣ୍ଡା ପୂଜାରୀର ପାଳ ପଡିଥାଏ ପୁଣି ଫୁଲ ତୁଳସୀ ଧଣ୍ଡାବଢ଼ କେତେ ମାଳ ଚାଉଳ, ଚୂର ପଇସା ଉପାର୍ଜ୍ଜନ କରନ୍ତି । ରଥ ଉପରେ ସାରଥୀ ନାନା ପ୍ରକାର ଭଣ୍ଡବକ ବଷଟ୍କାର ଗୀତ ଗାଇ ଡାକୁଥାଏ, ଯାହା ଶୁଣି କୁଳବଧୂ ମାନେ ଲଜ୍ଜିତ ହୋଇ ଘର ଭିତରକୁ ପଳାନ୍ତି, ଗବାକ୍ଷ ମାର୍ଗରେ ମଧ୍ୟ ଚାହିଁ ପାରନ୍ତି ନାହିଁ, ପିଲା ପିଲି ଚଞ୍ଚଳ ହୋଇଯାନ୍ତି ଏବଂ ଲମ୍ପଟାଗ୍ରଣୀ ଓ ବ୍ୟଭିଚାରିଣୀମାନେ ଉତ୍କର୍ଷିତ ହୋଇପଡନ୍ତି । ଏହି ସବୁଥିରେ କୌଣସି ଆଧ୍ୟାତ୍ମିକତା ବା ଈଶ୍ୱରୋପାସନା ଦେଖା ଯାଏନାହିଁ । ଏହି ବାର୍ଷିକ ଉତ୍ସବ ଅଟେ ଏକ ପାଷଣ୍ଡ କର୍ମକାଣ୍ଡ, ବ୍ୟାପାର କୌଶଳ କିବା ଭଣ୍ଡବ୍ୟପଦେଶ, ଯଦ ବା ବାଲ୍ୟକ୍ରୀଡ଼ା ଅଥଚ ନିର୍ଦ୍ଦୋଷ ନୁହେ ।

## ଓଡ଼ିଆଙ୍କର ଯାତ୍ରା

ପୁରୁଷୋତ୍ତମ ପୁରରେ ରାମନବମୀ ଯାତ୍ରା ହୋଇ ପ୍ରାୟ ୫ । ୬ ହଜାର ଟଙ୍କା ଖରଚ ହେଲା । ଏଣୁ ଲୋକେ ଦୁଇ ବାଡ଼ ହୋଇଥିଲେ, ବାଦ ବିସମ୍ବାଦରେ ଏତେ ଟଙ୍କା ଖରଚ କରିଦେଲେ । କୌଣସି ସତ୍ କାର୍ଯ୍ୟ ବିଷୟରେ ଯାହା ଠାରୁ ଏକ ପଇସା ସୁଦ୍ଧା ଚାନ୍ଦା ଆଦାୟ କରିବାକୁ ପ୍ରପୀଡ଼ନ ଓ ଅନ୍ୟାୟ ବୋଧ ହେଉଥିଲା, ଏହି ଯାତ୍ରାରେ ସେହି ଗରିବ ଲୋକ ଦଶଟଙ୍କା ଦେବାକୁ ବାଧ୍ୟ ହୋଇଅଛି । ଏହି ଗ୍ରାମ ଗୋଟିଏ ତାଲୁକାର ପ୍ରଧାନ ନଗର । ଏଠାରେ ଗୋଟିଏ ଉପଯୁକ୍ତ ଓଡ଼ିଆ ବା ଇଂରାଜି ସ୍କୁଲ ନାହିଁ । ଏହି ଯାତ୍ରାରେ ଗୋଟିଏ ସ୍କୁଲ ସ୍ଥାପନ କରିବାପାଇଁ କେହି କେହି ଯଦିକରି ଦଶଟଙ୍କା ସୁଦ୍ଧା ସଂଗ୍ରହ କରିପାରି ନାହାନ୍ତି । ଏହି ଗ୍ରାମରେ ସ୍ୱର୍ଗୀୟ ନରସିଂହ ଦାସ ୧୨ ବର୍ଷ କାଳ ସବ୍ ରେଜିଷ୍ଟ୍ରାର କାର୍ଯ୍ୟ କରିଥିଲେ । ଏହି ଗ୍ରାମବାସୀଙ୍କ ସହିତ ସେ ଏତେଦୂର ସମ୍ବନ୍ଧ ସମ୍ପର୍କ ରଖିଥିଲେ ଯେ ସେ ଏହି ଗ୍ରାମର ଜଣେ ହୋଇଥିଲେ । ପ୍ରତ୍ୟେକ ଲୋକଙ୍କର ଛୋଟ ବଡ଼ ସକଳ କାର୍ଯ୍ୟରେ, ସୁଖରେ ଦୁଃଖରେ ଏବଂ ବିନୋଦରେ, ବିଚ୍ଛେଦରେ ସହୃଦୟ ଯୋଗ ଦେଇ ଆବାଳ ବୃଦ୍ଧ ବନିତା ପ୍ରତ୍ୟେକ ବ୍ୟକ୍ତିଙ୍କର ପ୍ରିୟପାତ୍ର ହୋଇଥିଲେ । ଏହିମହାତ୍ମାଙ୍କ ସ୍ମରଣାର୍ଥ ନିମନ୍ତେ ଏହିଗ୍ରାମରୁ କିଛି ହେଲେ ଧନ ସଂଗ୍ରହ ହୋଇପାରିନାହିଁ । ଆଜି ଏହି ଗ୍ରାମର ଲୋକମାନେ ଆପଣା ମଧ୍ୟରେ ଚାନ୍ଦାକରି ୫ । ୬-ହଜାର ଟଙ୍କା ସଂଗ୍ରହ କରି ବାଣ, ନାଚ ଓ ଆଲୁଅରେ ଖରଚ କରିଦେଇ ଅଛନ୍ତି ।

ପ୍ରତ୍ୟେକ ଗ୍ରାମରେ ପ୍ରାୟ ପ୍ରତିବର୍ଷ ବା ଦୁଇ ଚାରି ବର୍ଷରେ ଥରେ ଅମ୍ଭମାନଙ୍କର ଏଥ ଦେବତାଙ୍କ ନାମରେ କୌଣସି ହେଉ ଯାତ୍ରା ହୁଏ । ପ୍ରାୟ ପ୍ରତ୍ୟେକ ଗ୍ରାମର ଅଧିବାସିମାନେ ଦୁଇ ଦଳରେ ବିଭକ୍ତ ହୋଇଥାନ୍ତି । ଯେଉଁ ସ୍ଥାନରେ ଏହି ଦଳଭେଦ ବିଦ୍ୟମାନ ସେହି ସ୍ଥାନରେ ଈର୍ଷା ଚରିତାର୍ଥ କାରଣ ବହୁଧନ ଅକାତର ଭାବରେ ବ୍ୟୟିତ ହୁଏ । ପ୍ରତିଦ୍ୱନ୍ଦିତାରେ ମଧ୍ୟ ଏକତା ଦେଖାଯାଏ । ଏକ ଦଳ ମଧ୍ୟରେ ଐକ୍ୟ ନଥିଲେ ଅନ୍ୟ ଦଳ ସହିତ ପ୍ରତିଯୋଗିତା ବା ପ୍ରତିଦ୍ୱନ୍ଦିତା କରାଯାଇ ପାରେନାହିଁ । ଏହି ପ୍ରତିଦ୍ୱନ୍ଦ ସାଧନ କରିବା ପାଇଁ ଦଳ ମଧ୍ୟରେ ଘନିଷ୍ଠ ଏକତା ସମ୍ପାଦନ କରିବାକୁ ହୁଏ । ଏକତାର କି ବିସ୍ମୟଜନକ ଶକ୍ତି ! ଏହି ଅପୂର୍ବ ସ୍ୱର୍ଗୀୟ ଶକ୍ତିର ସଦ୍‌ବ୍ୟବହାର ଅପେକ୍ଷା ବେଶି ଅପଚୟ ଦେଖାଯାଏ । ଏହି ଯାତ୍ରା ତହିଁର ଗୋଟିଏ ଜ୍ୱଳନ୍ତ ଦୃଷ୍ଟାନ୍ତ । ଏହି ଏକତା ଶକ୍ତି ପଦ ତଳେ ସାମନ୍ତ ଭୂଇଁଆଠାରୁ ବାଟ ଭିକାରୀ ପର୍ଯ୍ୟନ୍ତ ଯୋଡ ହସ୍ତ ଏବଂ ନତମସ୍ତକ । କେହି କେହି ଉତ୍ସବ ଉତ୍ତେଜନାରେ ସର୍ବସ୍ୱାନ୍ତ ହେଲା ପର୍ଯ୍ୟନ୍ତ ବ୍ୟୟ କରନ୍ତି, କେହି କେହି ଦଳ ବଳ ଉପରେ ଆପଣା ଘର କଂସା ଗିନା ବନ୍ଧକରି ଧାର୍ଯ୍ୟ ହେବା ଚାନ୍ଦା ଦେଇଦେବାକୁ ବାଧ୍ୟ ହୁଅନ୍ତି । ଅତ୍ୟାଗ୍ରହ ପୂର୍ବକ ସଂଗୃହୀତ ଧନ ସତ୍‌କାର୍ଯ୍ୟରେ ବ୍ୟୟିତ ହୁଏନାହିଁ । ଯଥ ଧନ ପ୍ରାୟଶ୍ଚିତରେ ଖରଚହୁଏ । ଏହାର ଏକ ଉଦାହରଣ, ସେଦିନ ପୁରୁଷୋତ୍ତମପୁର ଯାତ୍ରାରେ ଏକ ଦଳ ଲୋକେ କେଳା ନାଟ କରାଇଲେ । ଅନ୍ୟଦଳ ପ୍ରତିଯୋଗିତା କରିବା ପାଇଁ ଶୁଣାଯାଏ, ୭୦ ଟଙ୍କା ପର୍ଯ୍ୟନ୍ତ ଦେଇ ଆଉ ଏକ ଦଳ କେଳାଙ୍କୁ ଆଣି ଲଗାଇଥିଲେ । ପ୍ରତିଦ୍ୱନ୍ଦିତା ହେତୁ ଏହି ଅମୂଲ୍ୟ ଐକ୍ୟ ଶକ୍ତିର ଯେପରି ଅପଚୟ ହୁଏ, ସେତେ ଗୁଡ଼ିଏ ଧନର ମଧ୍ୟ ସେହିପରି ଅପବ୍ୟୟ ହୁଏ । ହଜାର ହଜାର ଟଙ୍କା ଯାତ୍ରାମାନଙ୍କରେ ପାଣିପରି ଖରଚ ହୋଇଯାଏ । ତେବେ ଯାତ୍ରାର ଉଦ୍ଦେଶ୍ୟ କଅଣ, ଏଥିରୁ ଫଳରେ କଅଣ ଲାଭହୁଏ, ଏହା ଦେଖିବାକୁ ହେବ । ଯାତ୍ରାର ମୂଳ ଉଦ୍ଦେଶ୍ୟ ବୋଧହୁଏ, ବହୁ ଲୋକର ଏକତ୍ର ମିଳନ । ମିଳନ ବେଳେ ନାନାକଥା ହୁଏ, ଆମୋଦ ପ୍ରମୋଦ ହୁଏ, ଗଭୀର ଗବେଷଣା ହୁଏ, ବିଚାର ହୁଏ, ପ୍ରଚାର ହୁଏ, ବସ୍ତୁତଃ ନାନାବିଧ କାର୍ଯ୍ୟର ପ୍ରାରମ୍ଭହୁଏ । କିନ୍ତୁ ଲୋକେ ସବୁ ଛାଡ଼ି କେବଳ ଆମୋଦ ପ୍ରମୋଦକୁ ଯାତ୍ରାର ମୂଳ ବା ପ୍ରଧାନ ଅଙ୍ଗ କରୁଅଛନ୍ତି । ବାଣ, ବାଜନାଚ, କୃଷ୍ଣଲୀଳା, ରାମଲୀଳା, ଧୋବା ଧୋବଣୀ ସୁଆଙ୍ଗ, ସାପ ସାପୁଆଣୀ ବେଶ, ପଟୁଆର, ବୈଷ୍ଣବନାଚ ଇତ୍ୟାଦି ଯେତ ଆମୋଦ କରିବାକୁ ହୁଏ । ନିତାନ୍ତ ପକ୍ଷେ ଗୋଟିଏ ସାଗା ରଥ ଅଜାଡ଼ା ଉଡ଼ାଇବାକୁ ହୁଏ । ପୁଣି ଅନେକ ଗ୍ରାମରେ ଉଭୟ ଦଳ ମଧ୍ୟରେ ମାରପିଟ, ହଣାମରା ହୋଇ ମାଲି ମକଦମାରେ ଅଜସ୍ର ଧନ ବ୍ୟୟହୁଏ । ଏହି ସମବାୟ ଶକ୍ତି ଏବଂ ଏହି ଧନ ଦ୍ୱାରା ନିର୍ଦ୍ଦୋଷ ଆମୋଦ ସଙ୍ଗେ ସଙ୍ଗେ ଗୁରୁତର ଓ ମହତ୍ତ୍ୱର କାର୍ଯ୍ୟ ସଂସାଧିତ ହୁଅନ୍ତା, କିନ୍ତୁ ଅବୁଝା ଲୋକେ ବୁଝନ୍ତି ନାହିଁ, ପତଙ୍ଗ ପରି ଅଗ୍ନିରେ ଯାଇ ପଡନ୍ତି ।

ବିବାହ ଉପନୟନାଦି ଉତ୍ସବରେ, ଅଳଙ୍କାରରେ ଏବଂ ଯାତ୍ରା ପର୍ବରେ ଅପରିମିତ ଶକ୍ତ୍ୟତିରିକ୍ତ ଧନ ବ୍ୟୟ ହୁଏ । ଏହି ଅପରିମିତ ଓ ଅଯଥା ବ୍ୟୟ ହେତୁ ବିବାହ ଉପନୟନାଦିରେ ପ୍ରକୃତ କର୍ମ କାଣ୍ଡ ପ୍ରତି ଲକ୍ଷ ରହେ ନାହିଁ । ଯାହାରେ ଆମୋଦ ପରିବର୍ତ୍ତେ ବିଷାଦ ଜାତ ହୁଏ, ପୁଣି ଅଳଙ୍କାରରେ ନୈସର୍ଗିକ ସୌନ୍ଦର୍ଯ୍ୟ ନଷ୍ଟ ହୁଏ । ଏହି ତିନୋଟି କାର୍ଯ୍ୟ ସମ୍ପାଦନରେ ପରିଣାମରେ ଧନ ଓ ଶକ୍ତିର ଅପଚୟ ବା ବ୍ୟୟମାତ୍ର ସାର ହେବା ଦେଖା ଯାଏ । ଏହି ବ୍ୟାପାର ତ୍ରୟ ବ୍ୟୟ ବାହୁଲ୍ୟରେ ସମାନ ହେଲେହେଁ ଏଥିରେ ପ୍ରଭେଦ ଦେଖାଯାଏ । ବିବାହ ଓ ଯାତ୍ରାର ବ୍ୟୟ ବାହୁଲ୍ୟ ଦ୍ୱାରା ଅନ୍ୟାନ୍ୟ ଅନେକ ଗୁଡ଼ିଏ ଲୋକର ଦୁଇ ପଇସା ରୋଜଗାର ହୁଏ । କିନ୍ତୁ ଅଳଙ୍କାର ଦ୍ୱାରା ସ୍ୱର୍ଣ୍ଣକାରଙ୍କ କିଛି ଲାଭ ବ୍ୟତୀତ ଅନ୍ୟ କାହାରି କିଛି ଲାଭ ହୁଏ ନାହିଁ । ବିବାହ ଓ ଯାତ୍ରାରେ ଅଜସ୍ର ଧନ ଏକା ବେଳକେ ସରିଯାଏ । କିନ୍ତୁ ଅଳଙ୍କାର ରୂପ ଧନର ଉତ୍ପାଦନ ଶକ୍ତି ନଥିଲେହେଁ ତାହା ସଞ୍ଚିତ ରହେ ରୋଗର ଉପଦ୍ରବ, ମାନହାନି ଓ ମକଦମାର ଦଣ୍ଡ ବିଶେଷ ଏହି ବହୁବ୍ୟୟବିଶିଷ୍ଟ ବିବାହ ଓ ଯାତ୍ରାର ଅଙ୍ଗୀଭୂତ ଏବଂ ଚୋର, ତସ୍କର, ଅଗ୍ନି ଓ ପ୍ରାଣହାନି ପ୍ରଭୃତି ଉପସର୍ଗ ଭିତରେ ଅଳଙ୍କାର ରୂପ ସଞ୍ଚିତ ଧନ ସର୍ବଦା ସଙ୍କଟମୟ ।



## ପ୍ରତିମା ପୂଜା

ଦେଅଙ୍କ ସଂଖ୍ୟା ଯେତେ ବେଶି ହୁଏ, ଲୋକଙ୍କ ଭକ୍ତି ସେତେ କମ ହୁଏ । ପିଣ୍ଡୁଲା ଦେବତା ଦ୍ୱାରା ଈଶ୍ୱରଙ୍କ ଉପାସନା କରାଯାଉଥିଲେ ହେଁ ଏହି ପିଣ୍ଡୁଲା ସଂଖ୍ୟା ଯେତେ ବାହୁଲ ହୁଏ ପିଣ୍ଡୁଲା ଦେବତାପ୍ରତି ମଧ୍ୟ ତେତେ ଭକ୍ତି ଊଣା ହୁଏ । ଗ୍ରାମ ଦେଉଳର ଦେବତାଙ୍କ ପ୍ରତି ଲୋକଙ୍କର ଯେତେ ଭକ୍ତି ହୁଏ କୌଣସି ଗୃହରେ ଗୃହସ୍ଥଙ୍କ ପ୍ରତିଷ୍ଠିତ ଦେଅଁ ପ୍ରତି ଲୋକଙ୍କର ସେତେ ଭକ୍ତି ଓ ବିଶ୍ୱାସ ଜନ୍ମେ ନାହିଁ । କୌଣସି ଲୋକର ଦେଅଁ ଦର୍ଶନ ବା ପୂଜାର ଇଚ୍ଛା ହେଲେ ବା କୌଣସି ଶୁଭାଶୁଭ କାର୍ଯ୍ୟ ବେଳେ ଅନ୍ୟ କୌଣସି ଗୃହସ୍ଥର ଦେଅଁଙ୍କୁ ପୂଜା ଦର୍ଶନ ଇତ୍ୟାଦି କରନ୍ତି ନାହିଁ । କୌଣସି ଦର୍ଶକ ଯଦି ଦେବତା ଦର୍ଶନ ଇଚ୍ଛା କରେ ତେବେ ସେ ଗ୍ରାମର ଦେଉଳକୁ ଯାଏ । କିନ୍ତୁ କୌଣସି ଗୃହସ୍ଥର ଦେବତାରେ ତୃପ୍ତ ହୁଏ ନାହିଁ । ଅର୍ଥାତ୍ ସେହି ଗ୍ରାମର ଗୋଟିଏ ଦେଅଁ ପ୍ରତି ଲୋକେ ଯେପରି ଭକ୍ତି କରନ୍ତି ବହୁ ସଂଖ୍ୟକ ସେହି ଦେଅଁ ପ୍ରତି ସେହି ଭକ୍ତି ହୁଏ ନାହିଁ । ଏହି ହିସାବରେ ପୁରୀ ଜଗନ୍ନାଥଙ୍କ ପ୍ରତି ଲୋକଙ୍କର ଯେତେ ଶ୍ରଦ୍ଧା ଓ ଭକ୍ତି ହୁଏ ଗ୍ରାମ୍ୟ ଦେଉଳର ଦେବତା ମାନଙ୍କ ପ୍ରତି ମନରେ ସେତେ ଭକ୍ତି ଜାତ ହୁଏ ନାହିଁ ।

ବହୁ ସଂଖ୍ୟକ ପିଣ୍ଡୁଲାରୂପୀ ଦେଅଁଙ୍କ ସୃଷ୍ଟି ହେବାରୁ ଦେଅଁ ମାନଙ୍କ ମଧ୍ୟରେ ସାନ ବଡ଼, ଉଚ୍ଚ ନୀଚ, ପ୍ରତ୍ୟକ୍ଷ ପରୋକ୍ଷ ଇତ୍ୟାଦି ପ୍ରଭେଦ ରଖାଯାଏ । ଏହି ପ୍ରଭେଦାନୁସାରେ

ଭସ୍ମ ଭକ୍ତିର ମଧ୍ୟ ପ୍ରଭେଦ ଦେଖାଯାଏ । ପିତୁଳାର ଅର୍ଥ ଦେବତାନୁହେ କିମ୍ବା ଦେବତା ନୁହନ୍ତି ପରମେଶ୍ୱର । ଦେବତା କହିଲେ ବୁଝିବାକୁ ହେବ ଯେ ବ୍ୟକ୍ତି ବିଶେଷହିଁ ଦେବତା ଅଟନ୍ତି । ପ୍ରାଣିମାନେ ବହୁସଂଖ୍ୟକ ଓ ନାନାବିଧ, ଏମାନଙ୍କ ମଧ୍ୟରେ ଅନେକ ଦେବତା ବୋଲାନ୍ତି । ଯେଉଁମାନେ ସତ୍‌କର୍ମ କରନ୍ତି, ଯେଉଁମାନଙ୍କର ଗୁଣ ଓ ସ୍ୱଭାବ ଅତ୍ୟୁତ୍ତମ, ସେହି ମାନେହିଁ ଦେବତାରୂପେ ପୂଜିତ ହୁଅନ୍ତି । ଅତଏବ ଦେବତାମାନେ ବହୁସଂଖ୍ୟକ । ଲୋକ ସାଧାରଣ ଏମାନଙ୍କଠାରୁ ଶିକ୍ଷାଦୀକ୍ଷା ଗ୍ରହଣ କରି ପୁଣି ଏମାନଙ୍କ ଆଦର୍ଶ ଦେଖି ଈଶ୍ୱର ଭକ୍ତି, ମୋକ୍ଷ-ପ୍ରାପ୍ତି ଇତ୍ୟାଦି ଲାଭ କରନ୍ତି । ଏହେତୁ ଲୋକେ ଏମାନଙ୍କୁ ଭ୍ରମରେ ଏକ ଏକ ଈଶ୍ୱର ରୂପେ ଗ୍ରହଣ କରନ୍ତି, କିନ୍ତୁ ଦେବତା ପଦରେ ଈଶ୍ୱର ଅର୍ଥ ନୁହେ ।

ଏହି ଦେବତା ମାନଙ୍କ ପ୍ରତିନିଧି ସ୍ୱରୂପେ ବା ଚିହ୍ନ ସ୍ୱରୂପରେ ଲୋକେ ନାନାବିଧ ପିତୁଳା ସ୍ଥାପନ କରନ୍ତି, ଦେବତା ଭୁଲ୍ୟ ପିତୁଳାଠାରେ ଭକ୍ତି କରନ୍ତି । ଦେବତା ଯେପରି ଈଶ୍ୱର ନୁହନ୍ତି ପିତୁଳା ଗୁଡିକ ସେହିପରି ଦେବତା ହୋଇ ନପାରନ୍ତି ।

ଦେବତାଙ୍କୁ ପୂଜା କରିବାକୁ ହେବ, ଏହାର ଅର୍ଥ ଏହିଯେ ଦେବତାମାନଙ୍କପରି ଗୁଣ ଓ ସ୍ୱଭାବ ବିଶିଷ୍ଟ ହେବ, ସେମାନଙ୍କ ପରି ଆଚାର ଓ ବ୍ୟବହାର କରିବ, ସେମାନଙ୍କ ଗନ୍ତବ୍ୟ ପଥର ଅନୁସରଣ କରିବ ଇତ୍ୟାଦି ଅଟେ ଦେବତା ପୂଜା । କିନ୍ତୁ ସେମାନଙ୍କ ଠାରୁ ଏହିପରି କୌଣସି ଶିକ୍ଷାଦୀକ୍ଷା, କର୍ମ ଧର୍ମ ଗ୍ରହଣ ନକରି ସେମାନଙ୍କ ସ୍ମୃତିଚିହ୍ନକୁ ପିତୁଳା ବା ଚିହ୍ନ ଉପରେ ଫୁଲ ଚନ୍ଦନ ଦେଇ, ଭୋଗରାଗ ଦେଇ ପିତୁଳା ପାଦତଳେ ମୁଣ୍ଡିଅ ମାରିବା କେବେ ହୋଇ ନପାରେ ଦେବତାପୂଜା । ରାମ, କୃଷ୍ଣ, ସୀତା, ସାବିତ୍ରୀ ଇତ୍ୟାଦି ଆମ୍ଭମାନଙ୍କର ଦେବତା ଅଟନ୍ତି । ସେମାନଙ୍କର ଗୁଣ କର୍ମକୁ ଆଦର୍ଶ କରି ଅମ୍ଭେମାନେ ଯଦି ଆଚରଣ କରିବା ତେବେ ତାହାହିଁ ଆମ୍ଭମାନଙ୍କର ଦେବତା ପୂଜା ।

## ଠାକୁରଅଟନ୍ତି ସମସ୍ତଙ୍କର ।

ଠାକୁର ସମସ୍ତଙ୍କର ଏବଂ ସମସ୍ତଙ୍କର ଠାକୁର । ଯେ ଠାକୁର ସେ ସମସ୍ତଙ୍କର ହୁଏ, ପୁଣି ଯାହା ସମସ୍ତଙ୍କର ତାହା ମଧ୍ୟ ଠାକୁର ହେବା ଉଚିତ । ଯେ ସମସ୍ତଙ୍କର ହୋଇ ନପାରେ ତାହାହିଁ ସେ ଠାକୁର ପଦବାଚ୍ୟ ନୁହେ । ଅତଏବ ଯାହା ସମସ୍ତଙ୍କର ତାହାକୁ ଠାକୁର ପରି ଗଣ୍ୟମାନ୍ୟ କରିବା ଉଚିତ । ମାଟି ହେଉ, କାଠ ହେଉ, ଯେ ସମସ୍ତଙ୍କର ବା ବହୁଲୋକର ଗଣ୍ୟମାନ୍ୟ ହୁଏ, ସେ ଠାକୁର ବୋଲାଏ । ତେବେ ଯେଉଁ ବ୍ୟକ୍ତି ବା ବସ୍ତୁ ବହୁଲୋକର ଉପକାର କରେ, ବହୁଲୋକର ପ୍ରୟୋଜନରେ ଲାଗେ, କିମ୍ବା ବହୁଲୋକର ଭାର ବା ଝଞ୍ଜାଳ ସହେ, ସେହି ବ୍ୟକ୍ତି ବା ବସ୍ତୁ ଠାକୁର ନାମରେ ପୂଜ୍ୟ, ସେବ୍ୟ, ମାନ୍ୟ ଗଣ୍ୟ ହେବା ଉଚିତ ।

ଯେଉଁ ବାଟରେ ସମସ୍ତେ ଯା' ଆସ କରନ୍ତି, ସେହି ବାଟକୁ ରାଜପଥ ବା ରାଜମାର୍ଗ କୁହାଯାଏ । ନଦୀ, ନାଳ, ବନ୍ଧ, ପୋଖରୀ, ଗଛ, ମାଛ, ବଣ, ପାହାଡ଼, ବାଟ, ଘାଟ, ଗୋପଥ, ଗୋଚର, ଶ୍ମଶାନ, ବିଦ୍ୟାଳୟ, ବୈଦ୍ୟାଳୟ, ଧର୍ମଶାଳା, ଗୋଶାଳା, ମେଳା, ମନ୍ଦିର ଇତ୍ୟାଦି ବହୁଜନୋପଯୋଗୀ ବସ୍ତୁ, ବିଷୟ ବା ଅନୁଷ୍ଠାନକୁ ଠାକୁର ବା ଦେବତା ସ୍ଥାନୀୟ ମନେ କରିବାକୁ ହେବ । ଏହି ସକଳ ସମ୍ପତ୍ତିକୁ ଦେବୋତ୍ତର ମାନିବାକୁ ହେବ । ମନ୍ଦିର ଯେପରି ଦେବ ଭବନ, ବହୁଜନୋପଯୋଗୀ ସକଳ ପଦାର୍ଥକୁ ଦେବତାର ବା ଦେବୋତ୍ତର ଜ୍ଞାନ କରିବାକୁ ହେବ, ଏମନ୍ତ କି ସାଧାରଣ ପାଇଖାନା ବା ଗାଁମୁଣ୍ଡ ଖତକୁଡ଼କୁ ମଧ୍ୟ ଠାକୁର ବା ଦେବତା ସ୍ଥାନୀୟ ଜ୍ଞାନ କରିବାକୁ ହେବ ।

ଯେ କି ନିଜର ବା ବ୍ୟକ୍ତିଗତ ସଂକୀର୍ଣ୍ଣ ସ୍ୱାର୍ଥ ତ୍ୟାଗ କରି ଲୋକ ସାଧାରଣର ଉପକାରାର୍ଥେ ନିଜର ଧନ, ମନ ଏବଂ ପ୍ରାଣ ପର୍ଯ୍ୟନ୍ତ ସମର୍ପଣ କରେ, ସେହି ଏକା ଦେବ ପଦବାଚ୍ୟ, ସେହି କେବଳ ଦେବତା ! ସେହିପରି ଯେଉଁ କାର୍ଯ୍ୟ, ଯେଉଁ ବସ୍ତୁ, ଯେଉଁ ବ୍ୟବସ୍ଥା ବହୁଜନର ଉପକାର କରେ, ତାହାହିଁ ଦେବତା ବା ଦେବତାର କିମ୍ବା ଦେବୋତ୍ତର । ଯେଉଁଥିରେ କୌଣସି ଏକ ବ୍ୟକ୍ତିର ଉପକାର ହୁଏ, ତାହା ଅପେକ୍ଷା ଯେଉଁଥିରେ ତତୋଧିକ ବ୍ୟକ୍ତିର ଉପକାର ହୁଏ, ସେ ତାହାଠାରୁ ବଡ଼, ପୁଣି ଯେଉଁଥିରେ ସର୍ବଜନୋପକାର ହୁଏ ତାହା ସବୁଠୁ ବଡ଼, ଏବଂ ସର୍ବୋତ୍ତମ, ସର୍ବ ଦେବ ଦେବ ଅର୍ଥାତ୍ ମହାଦେବ ବା ପରମେଶ୍ୱର ।

ଏହି ସର୍ବବ୍ୟାପକତା ସର୍ବୋପକାରିତାଦିପ୍ରତି ଦୃଷ୍ଟି ନ ରଖି ଯେଉଁମାନେ କାଷ୍ଠ ପାଷାଣାଦି ମୂର୍ତ୍ତିଙ୍କି ଦେବତା ଜ୍ଞାନ କରନ୍ତି ସେମାନେ ମୂଢ଼, ନିର୍ବୋଧ । ସେମାନେ ଶୁଷ୍କ ଶାସ୍ତ୍ରକ ମାରି କୁଅ କାବତାକୁ ପୋଷନ୍ତି । ଏହି ଶ୍ରେଣୀର ଲୋକମାନେ ନିଜ ଦ୍ୱାର ମୁହଁ ନିର୍ମଳ ରଖନ୍ତି, ପଡ଼ଶା ଦ୍ୱାର ମୁହଁ ନିର୍ମଳ କରନ୍ତି ନାହିଁ; ବାଟ, ଘାଟ, ଜଳାଶୟ, ଗୋଚର, ଶ୍ମଶାନ ଇତ୍ୟାଦିର ଅପବ୍ୟବହାର କରନ୍ତି; ନିଜଘର ଅଗଣାପ୍ରଭୃତି ଯେତେ ଦୃଷ୍ଟି ଦିଅନ୍ତି ଗାଁମୁଣ୍ଡ ଅସଜଡ଼ା ଗଦାକୁ ସେତେ ଅପେକ୍ଷା କରନ୍ତି; ମନ୍ଦିରର ମୂର୍ତ୍ତି ପ୍ରତି ଯେତେ ଅନ୍ଧଭକ୍ତି କରନ୍ତି, ଜୀବନ୍ତ ସାଧୁ ସନ୍ଥମାନଙ୍କୁ ସେତେ ଅବଜ୍ଞା କରନ୍ତି; ପ୍ରେତ ଓ ପାଷଣ୍ଡର ଯେତେ ପୂଜା କରନ୍ତି, ସନ୍ନ୍ୟାସୀ ଓ ଅତିଥିର ସେତେ ଅନାଦର କରନ୍ତି; ସଂଭୋଗ ଲାଳସାରେ ସ୍ତ୍ରୀପ୍ରତି ଯେତେ ଲାଳାୟିତ, ମାତାପ୍ରତି ସେତେ ଅଭକ୍ତ; ନିଜର ଏକ ପାହୁଲା ପ୍ରତି ଯେତେ ବଦ୍ଧମୁଷ୍ଟି, ଅନ୍ୟର ବା ସାଧାରଣ ଟଙ୍କା ପ୍ରତି ସେତେ ଶିଥିଳ; ଦେଶ ପ୍ରତି ଯେତେ ଉଦାସୀନ, ଅଜ୍ଞାନ ଜଡ଼ ଯେନ ତତୋଽଧିକ ମୂକ, ମୂଢ଼ ଓ ମୋହଗ୍ରସ୍ତ । ଯେଉଁମାନେ ସର୍ବଜ୍ଞତା, ସର୍ବଶକ୍ତିମତ୍ତା, ସର୍ବମାଙ୍ଗଲ୍ୟାଦିପ୍ରତି ଧ୍ୟାନ ନ ରଖି ପାଷାଣାଦି ମୂର୍ତ୍ତି ପୂଜନରେ ମନଦିଅନ୍ତି, ସେମାନେହିଁ ନାସ୍ତିକ, ସେମାନେହିଁ ଭଣ୍ଡ ପାଷଣ୍ଡ ।

# ଦେବ ଓ ମାନବ

'ଯଥା ଦେହେ ତଥା ଦେବେ' ବୋଲି କଥାଅଛି । ପ୍ରାଣିମାନେ ଯେପରି ଖାଆନ୍ତି, ପିଅନ୍ତି, ଶୁଅନ୍ତି, ପିନ୍ଧନ୍ତି, ଲଗାନ୍ତି ଇତ୍ୟାଦି କାର୍ଯ୍ୟ କରନ୍ତି, ଦେବତାମାନେ ସେହିପରି ଖାଆନ୍ତି, ପିଅନ୍ତି, ଶୁଅନ୍ତି ବୋଲି ଆମ୍ଭମାନଙ୍କର ଧାରଣା । ଆମ୍ଭେମାନେ ଯେପରି ଧନ ସମ୍ପଦ ସମ୍ପାଦନ କରିଥାଉଁ, ଦେବତା ମାନଙ୍କ ଭଣ୍ଡାରରେ ତଦ୍ରୂପ ଅଜସ୍ର ଧନ ସଂଗୃହୀତ ହୁଏ । ଆମ୍ଭେମାନେ ଯେପରି ପୁତ୍ର କନ୍ୟା ମାନଙ୍କର ବ୍ରତ ବିବାହ, ପିତା ମାତାଙ୍କର ଶୁଦ୍ଧ ଶ୍ରାଦ୍ଧ କରିଥାଉଁ, ସେହିପରି ଦେବତା ମାନଙ୍କର ମଧ୍ୟ ବିବାହାଦି କର୍ମ ଚଳେ । ଆମ୍ଭମାନଙ୍କ ମଧ୍ୟରେ ଯେପରି ଧନୀ ଲୋକମାନେ ଆପଣା ଆପଣା ଉଦ୍‌ବୃତ୍ତ ଧନରେ ଲୋକହିତ ସାଧନ କରନ୍ତି ପୁଷ୍କରଣୀ ଖନନ କରନ୍ତି, ଧର୍ମଶାଳା ନିର୍ମାଣ କରନ୍ତି, ବିଦ୍ୟାଳୟ ସ୍ଥାପନ କରନ୍ତି ଇତ୍ୟାଦି, ସେପରି ଯେଉଁ ଦେବତାମାନେ ଧନୀ, ଯାହାଙ୍କ ଭଣ୍ଡାରରେ ଅଜସ୍ର ଧନ ଗଚ୍ଛିତ ଅଛି, ସେମାନେ ଆପଣା ଆପଣା ଉଦ୍‌ବୃତ୍ତ ଧନରେ ଡାକ୍ତରଖାନା ଖୋଲାନ୍ତି ନାହିଁ, ରାସ୍ତା ନିର୍ମାଣ କରନ୍ତି ନାହିଁ, କିମ୍ବା ବିଦ୍ୟାଳୟ ସ୍ଥାପନ କରନ୍ତି ନାହିଁ । ଏହି ଦେବ ସମ୍ପତ୍ତି ଦ୍ୱାରା କେବଳ କେତେକ ଲୋକଙ୍କୁ ଖାଇବାକୁ ଦେବାକୁ ହୁଏ । ପୁଣି ଯାତ୍ରା ପର୍ବରେ ବାଣ ନାଚ ଓ ବାଦ୍ୟ ଇତ୍ୟାଦି କରିବାକୁ ହୁଏ । ଦେବତାମାନେ ଯଦି ଆମପରି ଖାଇଲେ, ପିଇଲେ, ଭଣ୍ଡାରରେ ଧନ ରଖିଲେ ତେବେ ସେମାନେ କାହିଁକି ଆମପରି କେତେକ ଧର୍ମ କାର୍ଯ୍ୟ କରିବେ ନାହିଁ ? ଦେବତା ମାନେ ବଡ଼ ସ୍ୱାର୍ଥପର, ଆପଣାର ସକଳ-ସମ୍ପତ୍ତି କି ନେଇ ଆପଣାର ଭୋଗ ରାଗରେ ଲଗାଇ ଦିଅନ୍ତି । ମନୁଷ୍ୟମାନେ ଅପଣା ଧନରେ ଦେଶର ହିତ କରନ୍ତି, ଶିକ୍ଷାଳୟ ସ୍ଥାପନାଦି ଦ୍ୱାରା ଅନେକ ଲୋକର ଉପକାର କରନ୍ତି, କିନ୍ତୁ ଦିଅଁ ମାନେ ଆପଣା ଭୋଗ ବିଳାସରେ ଭଣ୍ଡାରର ଧନ ବ୍ୟୟ କରନ୍ତି ।

ଦେବ ଓ ମାନବ ମଧ୍ୟରେ ଅନ୍ୟ ପ୍ରଭେଦ—ଦେବତା ମାନେ ଆହାର ବା ଆଘ୍ରାଣ କରନ୍ତି ବୋଲି ଏମାନଙ୍କୁ ନାନାବିଧ ଖାଦ୍ୟସାମଗ୍ରୀ ଦିଆଯାଏ, ଶୟନ କରନ୍ତି ବୋଲି ଏହାଙ୍କୁ ଶଯ୍ୟାଦିଅଯାଏ, ପୁଣି ସ୍ତ୍ରୀ ସମ୍ଭୋଗ ନିମନ୍ତେ ବେଶ୍ୟାମାନେ ଖଟନ୍ତି, କିନ୍ତୁ ଏମାନଙ୍କର ଦେବତ୍ୱ ପରିଚାୟକ ପାର୍ଥକ୍ୟ ଏହି ଯେ ଏମାନଙ୍କର ବହିର୍ଗମନ କ୍ରିୟା ନଥାଏ । କୌଣସି ଦେବାଳୟରେ ପାଇଖାନାର ଯୋଗାଡ଼ ନାହିଁ । ଦେବତା ମାନଙ୍କର ଖାଇବା ରୀତି ଆମ୍ଭମାନଙ୍କ ପରି ନୁହେଁ । ଆମ୍ଭେମାନେ ତୁଣ୍ଡରେ ଖାଉଁ କିନ୍ତୁ ଦେବତା ମାନେ ନାସାରନ୍ଧ୍ର ଦ୍ୱାରା ଆଘ୍ରାଣ ଭୋଜନ କରନ୍ତି ।

ମନୁଷ୍ୟ ମାନଙ୍କ ପରି ଦେବତା ମାନଙ୍କର ଜନ୍ମ, ମରଣ, ରୋଗ, ଚିକିତ୍ସା—ଏସକଳ ବ୍ୟବସ୍ଥା ଅଛି । ପ୍ରଭେଦ ଏତିକିଯେ, ଏମାନଙ୍କର ଜନ୍ମ ଓ ମରଣ ନିୟମିତ କାଳରେ ହୁଏ । ଜଗନ୍ନାଥ ବାର ବର୍ଷରେ ଥରେ ଦେହ ତ୍ୟାଗ କରନ୍ତି । ପୁଣି ଏମାନଙ୍କୁ ସାମାନ୍ୟ ଜ୍ୱର ବ୍ୟତୀତ କଲେରା, ପ୍ଲେଗ୍ ପ୍ରଭୃତି ସଂଘାତକ ରୋଗ ଧରେ ନାହିଁ । ମନୁଷ୍ୟ ମାନଙ୍କ ପରି

ଦେବତା ମାନଂକୁ ମଧ୍ୟ ସୁଖ, ଦୁଃଖ, ସମ୍ପଦ, ବିପଦ ଭୋଗ କରିବାକୁ ପଡେ । କିଥାଅଛି, ଜଗନ୍ନାଥ ପୁଣି ଉଆଁସୀ କନ୍ୟା ଭଗ୍ନ ହେଲେ ଯେ ତାହାଂକୁ ପ୍ରତିବର୍ଷ ଥରେ ଜ୍ୱର ହେଉଅଛି ।

ମନୁଷ୍ୟମାନେ ବହୁ ଭ୍ରମଣ କରନ୍ତି, କୃଷି, ବାଣିଜ୍ୟ ଓ ଶିଳ୍ପ ବ୍ୟବସାୟ କରନ୍ତି ଏବଂ ଦେଶାନ୍ତର ଗମନ କରି ଶିକ୍ଷା ଓ ସଭ୍ୟତା ଲାଭ କରନ୍ତି, କିନ୍ତୁ ଦେବତା ମାନେ ବସିବା ସ୍ଥାନରୁ ଉଠନ୍ତି ନାହିଁ । ଯଦିଓ ଏମାନେ ବର୍ଷକେ ଥରେ ଯାତ୍ରା କରି ବାହାରନ୍ତି, ତେବେ ପଦେଣ୍ଡି ବଳେ ହୁଅନ୍ତି । ଆମଦେଶର ରାଜାମାନେ ଯାହା ପବାହରେ ପଦାକୁ ବାହାରିଲା ବେଳେ ଯେପରି ଜଣେ ଲୋକ ଛାଂତଧରେ, ଆଉ ଜଣେ କଇଫେଠ କରେ ସେହିପରି ସେବକ ମାନେ ଦେବତା ମାନଂକୁ ଝିଂକା ଓଝରା, ଝିଣାଝଣି କରି ଘୋସାରି ନିଅନ୍ତି । ଦେବତା ମାନଙ୍କର ଦୈନିକ ନିତ୍ୟକର୍ମ କେବଳ ଆହାର, ନିଦ୍ରା ଓ ମୈଥୁନ । ଏମାନେ ଅହର୍ନିଶି ଆହାର ଓ ନିଦ୍ରାରେ ଅତି ବାହିତ କରନ୍ତି । ଉଦିଧୂପ, ଧାଣ୍ଡ ଅବକାଶ ବାଲ ଭୋଗ, ଖେଚଡ଼ି ଧୂପ, ପହଡ଼, ଅଧର ପଣା, ସନ୍ଧ୍ୟା ଧୂପ, ବଡ ଶିଙ୍ଗାର ଇତ୍ୟାଦି ବହୁ ପ୍ରକାର ନିଯୋଗ କରାଯାଏ । ଦେବତା ମାନଂକୁ ନିରନ୍ତର ଖୁଆଇବା ପିଆଇବା, ଶୁଆଇବାରେ ସେବକ ମାନେ ବ୍ୟସ୍ତ । ଦେବତା ମାନଂକୁ ଆଉ ସମୟ କାହିଁ ଯେ ଏମାନେ ଅନ୍ୟାନ୍ୟ ଗୁରୁତର କାର୍ଯ୍ୟରେ ବ୍ୟାପୃତ ହେବେ ?

ଯଦିଓ କହିବ, ଦେବତାମାନେ ଲୋକହିତ ସାଧନ କରନ୍ତି, ବିଦ୍ୟା ଶିକ୍ଷା ପ୍ରଦାନ କରନ୍ତି, କୃଷି ବାଣିଜ୍ୟ ଶିଳ୍ପାଦି ବ୍ୟବସାୟ କରନ୍ତି, କିନ୍ତୁ ଏହାସବୁ ମାନବର ଦୃଷ୍ଟି ଗୋଚର ହୁଏ ନାହିଁ, ଯେହେତୁ ସେମାନେ ଅଲକ୍ଷିତ ଭାବରେ କାର୍ଯ୍ୟକରି ଥାନ୍ତି । ତେବେ ଆହାର ନିଦ୍ରା ଓ ମୈଥୁନାଦି କେତେକ ପାଶବ କାର୍ଯ୍ୟ କିହେତୁ ସେମାନେ ପ୍ରକାଶ୍ୟ ଭାବରେ କରନ୍ତି; ଏହି କାର୍ଯ୍ୟ ଗୁଡିକ ପାଇଁ କିହେତୁ ଦେବାଳୟରେ ଏତେ ତହଲ ପଡେ଼ଥାଏ ?

ଆହାର ନିଦ୍ରା ମୈଥୁନ—ଏହି ସକଳ କାର୍ଯ୍ୟ ପଶୁତ୍ୱର ବିଲକ୍ଷଣ ପରିଚାୟକ । ମନୁଷ୍ୟମାନଙ୍କର ଏହା ବ୍ୟତୀତ ଅନ୍ୟ କିଛି ବିଶେଷତ୍ୱ ଅଛି । ଏମାନଙ୍କର ବୁଦ୍ଧି, ବିବେକ, ବିଚାର, ଧର୍ମ ଧାରଣା, କର୍ତ୍ତବ୍ୟ ଜ୍ଞାନ ଇତ୍ୟାଦି ଅଛି । କିନ୍ତୁ ଦେବତା ମାନଙ୍କର ଏପରି କୌଣସି ବିଶେଷତ୍ୱ ପରିଲକ୍ଷିତ ହୁଏନାହିଁ ।

ଦେବତା ମାନଙ୍କର ଏହି ରୀତି ନୀତି ଓ ଆଚାର ବ୍ୟବହାର ଦେଖିଲେ ଏମାନେ ମାନବ ଅପେକ୍ଷା ନୀଚତର ଶ୍ରେଣୀ ଭୁକ୍ତଥିବା ଦେଖାଯାଏ । ତଥାପି ଏମାନେ ଆମ୍ଭମାନଙ୍କ ଉପାସ୍ୟ ।



# ମାନବ ସୃଷ୍ଟି ।

ଈଶ୍ୱର ଏହି ଜଗତର ସୃଷ୍ଟି କଲେ, ଏହି ମର୍ତ୍ତ୍ୟ ପୁର ତିଆରିଲେ, ଏହି ସଂସାର ସର୍ଜ୍ଜନା କଲେ । କିନ୍ତୁ ଏହି ମର୍ତ୍ତ୍ୟ ମଣ୍ଡଳର ନର ମାନବ ଦିବ୍ୟ ଲୋକ ସୃଷ୍ଟି କଲେ, ସ୍ୱର୍ଗ ରାଜ୍ୟ ଗଢିଲେ ଏବଂ ତହିଁରେ ବିଷ୍ଣୁ, ଶିବ ଆଦି ୩୩ କୋଟୀ ଦିଅଁ ଦେବତା ସ୍ଥାପନ କଲେ, ସେମାନଙ୍କ ପାଇଁ ସ୍ୱର୍ଗ ରାଜ୍ୟରେ ବୈକୁଣ୍ଠ ପୁରରେ ପ୍ରାସାଦ, ଅଟ୍ଟାଳିକା ନନ୍ଦନ ବନ, କ୍ରୀଡା ସ୍ଥାନ ଇତ୍ୟାଦି ନିର୍ମ୍ମାଣ କରି ଦେଲେ, ସେମାନଙ୍କ ପାଇଁ ବ୍ରତ, ବିବାହ ବନ୍ଦାପନା ଇତ୍ୟାଦି ବିଧାନ କଲେ ପୁଣି ସେମାନଙ୍କ ଭୋଗ ବିଳାସ ପାଇଁ ଅପସରା, ମଦିରା ଇତ୍ୟାଦି କଳ୍ପନା କଲେ । ଏହି ମାନବ ପ୍ରସାଦରୁ ଆଜି ଦେବତା ମାନେ ଘର ଦ୍ୱାର କରି ବରି ଚୁଡା ହୋଇ ପୁଅ ଝିଅ, ନାତି ନାତୁଣୀ, ଭାର୍ଯ୍ୟା ବନ୍ଧୁ ଇତ୍ୟାଦି ସମ୍ବନ୍ଧ ସ୍ଥାପନ କରି ସୁଖ ଦୁଃଖରେ ଅମର ଜୀବନ ଅତି ବାହିତ କରୁଛନ୍ତି ।

ମାନବର ଏହି କଳ୍ପନା ମୂଳରେ କ'ଣ ଅଛି ? ଅଛି ସେହି ଐଶ୍ୱରିକ ଶକ୍ତି । ଈଶ୍ୱର ପ୍ରଭାବର କୌଣସି ଅଂଶ ଯେନ କ୍ଷୁଦ୍ର ମାନବ ଯେତେବେଳେ ସ୍ୱର୍ଗ, ବୈକୁଣ୍ଠ, ବିଷ୍ଣୁ, ମହେଶ୍ୱର, ଇନ୍ଦ୍ର, ଲକ୍ଷ୍ମି, ପାର୍ବତୀ, ଶଚୀ, ମେନକା, ରମ୍ଭା, ଉର୍ବ୍ବଶୀ, ଐରାବତ ଇତ୍ୟାଦିର ସୃଷ୍ଟି କରି ପାରିଅଛି, ପୂର୍ଣ୍ଣ ପରବ୍ରହ୍ମ ଭଗବାନଙ୍କ ଶକ୍ତି କି ବିରାଟ, କି ଘୋର ଅଚିନ୍ତ୍ୟନୀୟ ଓ କଳ୍ପନାତୀତ ତାହା ସହଜ ଅନୁମାନ କରାଯାଏ ।

ମହାପ୍ରାଣୀ ମାନବ ଆପଣାର ଐଶୀଶକ୍ତି ପ୍ରଭାବରେ ୩୩ କୋଟୀ ଦିଅଁ ଦେବତା ଗଢି ପାରିଅଛି, ତଥାପି ସେହି ମାୟାଭିଭୂତ କ୍ଷୁଦ୍ର ମାନବ ଆପଣାର ସ୍ଥିର ବିଭୂତି ଜ୍ଞାନ କରି ତାହାକୁ ଡରୁଅଛି, ପଦେ ପଦେ ଅନ୍ଧ ବିସ୍ମିତ ହୋଇ ଆପଣାର କଳ୍ପନା ପ୍ରସୂତ ଅସ୍ଥାୟୀ ଅନିତ୍ୟ ବସ୍ତୁ ଉପରେ ସ୍ଥାୟୀତ୍ୱ ଓ ଈଶ୍ୱରତ୍ୱ ଆରୋପ କରୁଅଛି । ଏହି ଅବସ୍ତୁ ନିବନ୍ଧପରତା ଯେନ ଦୁର୍ଲ୍ଲଭ ମାନବ ଜୀବନ ଲକ୍ଷଭ୍ରଷ୍ଟ ହୋଇ ପଡୁ ଅଛି । ଏହି ଭ୍ରାନ୍ତ ମାନବ ନିଜକୁ ନିଜେ ଚିହ୍ନି ପାରେ ନାହିଁ, ଅଜ୍ଞାନ ହରାଇ କାଷ୍ଠ ପାଷାଣାଦି-ରେ ଯେପରି ଈଶ୍ୱରତ୍ୱ ଆରୋପ କରେ ସେହିପରି ନିଜ ସୃଷ୍ଟ ଦେବ ଦେବୀ ମାନଙ୍କଠାରେ ବ୍ରହ୍ମତ୍ୱ ଆରୋପ କରେ ।

ଏହି ଦେବ ଦେବୀ ଓ ସ୍ୱର୍ଗ ବୈକୁଣ୍ଠାଦି କଳ୍ପନାରେ ଏକ ମହତ୍ ଉଦ୍ଦେଶ୍ୟ ମଧ୍ୟ ଅଛି ବୋଲିବାକୁ ହେବ । ମନୁଷ୍ୟର ମନୁଷ୍ୟତ୍ୱ ନିର୍ବାହ ସକାଶେ ଆଦର୍ଶ ଆବଶ୍ୟକ । ଏହି ଆଦର୍ଶ ନିମନ୍ତେ ଭଗବାନଙ୍କ ପରିବାର ଓ ସ୍ୱର୍ଗ ଲୋକାଦିର ସୃଷ୍ଟି । ଏମାନେ ନିର୍ମ୍ମଳ, ପବିତ୍ର, ଉଦାର, ସ୍ୱଗୁଣ ସମ୍ପନ୍ନ ଏବଂ ଅସାଧାରଣ ସଦ୍‌ଗୁଣ-କର୍ମ୍ମ-ବିଶିଷ୍ଟ ହେବା ଉଚିତ ଯେହେତୁ ଏମାନଙ୍କ ଆଦର୍ଶରେ ଲୋକ ସାଧାରଣ ଉନ୍ନତ-ପଥ ଅନୁସରଣ କରି ପାରିବେ । କିନ୍ତୁ ଏ ମାନଙ୍କଠାରେ ଅସଦ୍ ବ୍ୟବହାର ଓ କଦର୍ଯ୍ୟ ରୁଚି ଆରୋପ କରିବା କେଉଁ ନୀତି ସଙ୍ଗତ ? ଏହି ଦେବ ଦେବୀମାନଙ୍କ ମଧ୍ୟରେ ମିଥ୍ୟା, ଚୌର୍ଯ୍ୟ, ଦ୍ୟୁତ, ଲାମ୍ପଟ୍ୟ ଇତ୍ୟାଦି

ଦେଖାଯାଏ ! ଏହି ମାନୁଷିକ ଦୌର୍ବଲ୍ୟ ହେତୁ ଦେବ୍ୟ ଆଦର୍ଶ ଗୁଡକ କଳୁଷିତ ହୋଇପଡେ । ଦେବ ଦେବୀମାନଙ୍କର ଏହି ଦୌର୍ବଲ୍ୟ ଓ କଳୁଷହିଁ ମାନବ ସୃଷ୍ଟିର ପରିଚୟ ପ୍ରଦାନ କରେ ।

## ସ୍ୱର୍ଗ ଓ ନରକ

ସ୍ୱର୍ଗ କ'ଣ, କି ପଦାର୍ଥ କେଉଁଠାରେ ଅଛ ଏବଂ ତାହାର ପ୍ରୟୋଜନ କଣ--ଏହିକଥା ଆମ୍ଭମାନଙ୍କର ଭାବିବା ଉଚିତ । ସକଳ ଦେଶରେ ସକଳ ସମାଜରେ ସ୍ୱର୍ଗ ବୋଲିବା କଥାଟା ଅବହମାନ କାଳରୁ ଅଛି, ଗଣ୍ଡ ମୂର୍ଖ ଠାରୁ ବିଲକ୍ଷଣ ବିଦ୍ୱାନ ପର୍ଯ୍ୟନ୍ତ, କୁଟୀର ନିବାସୀ ଦରିଦ୍ର ନଗଣ୍ୟ ଶୂକର ଠାରୁ ମହାମହିମ ରାଜାଧିରାଜେଶ୍ୱର ପର୍ଯ୍ୟନ୍ତ, ଚଣ୍ଡାଳ ଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ, ଆବାଳ ବୃଦ୍ଧ ବନିତା ସମସ୍ତେ ସ୍ୱର୍ଗ କହିଲେ କିଛି ନା କିଛି ବୁଝିଥାନ୍ତି । ଭିନ୍ନ ଭିନ୍ନ ଲୋକେ ଏହାର ଭିନ୍ନ ଭିନ୍ନ ଅର୍ଥ କରୁଥିଲେହେଁ ସ୍ୱର୍ଗଟା ଯେଉଁ ପଦାର୍ଥହେଉ ଗୋଟିଏ ଉତ୍ତମ ପଦାର୍ଥବୋଲି ଲୋକେ ଜ୍ଞାନ କରନ୍ତି ପୁଣି ସ୍ୱର୍ଗଟା ସର୍ବାପେକ୍ଷା ଉଚ୍ଚରେ ଅଛି ବୋଲି କହନ୍ତି । ପିଲାଦିନେ ମୁ ବୁଝିଥାଏଯେ " ମେଘ ଉପରେ ସ୍ୱର୍ଗ ଅଛି । ମେଘରୁ ଯଦି ଖଣ୍ଡେ ଛିଡ଼ିପଡ଼େ ତେବେ ସ୍ୱର୍ଗଟା ତଳେ ପଡ଼ିଯିବ " । ଲୋକେ ମଧ୍ୟ ବିଶ୍ୱାସ କରନ୍ତି- ଧର୍ମଦେବତା ଉପରେ ଅଛନ୍ତି, ଉପରେ ବିଚରଣ କରନ୍ତି; ଆଉସବୁ ଦେବତା ପୋଥି ଦେବତା, ସୂର୍ଯ୍ୟମାନ୍ ଚଳନ୍ତିବସ୍ତୁ; ସୂର୍ଯ୍ୟହିଁ ଧର୍ମଦେବତା, ଯଥା ଲୋକେ କଥାରେ କହନ୍ତି "ଧର୍ମଦେବତା ଧାନ ଶୁଖାଇବାକୁ ଆସି ଅଛିକି" । ସେହି ଉପର ଭାଗରେ, ଯାହାକୁ ଲୋକେ ସ୍ୱର୍ଗ ବୋଲି କହନ୍ତି, ଧର୍ମ ଦେବତା ନିବାସ କହନ୍ତି, ପୁଣି ଆମ୍ଭମାନଙ୍କର ତେତିସି କୋଟି ଯାକ ଦେବତା ମଧ୍ୟ ତହିଁରେ ନିବାସ କରନ୍ତି ବୋଲି ଲୋକଙ୍କର ଧାରଣା ।

ଉଚ୍ଚସ୍ଥାନ ସ୍ୱର୍ଗ ଭୁବନ, "ଉଚ୍ଚୈ ସ୍ୱର୍ଗଃ ଶାଠେ ରୌରବଃ" ଶ୍ଳୋକରେ ଏହିପରି ଅନେକ କଥା ଅଛି । ପୁଣି କଥା ଅଛି ତପସ୍ୟା ବଳରୁ ସ୍ୱର୍ଗପ୍ରାପ୍ତି ହୁଏ ଏବଂ ପୂର୍ବତପସ୍ୟା ହେଲୁ ଜୀବନରେ ଉଚ୍ଚ ଅଟ୍ଟାଳିକା—ହିତଳ ଚତୁସ୍ତଳ ସୌଧଭୋଗ କରିବାକୁ ହୁଏ । ଅତଏବ ଉଚ୍ଚସ୍ଥାନର ନିବାସ ମଧ୍ୟ ସ୍ୱର୍ଗ ବାସ ବୋଲି ଯାଇପାରେ । ତନ୍ନପୁର ଗୃହିପୁର ଭବନର ଉଚ୍ଚତମ ପ୍ରକୋଷ୍ଠରେ ଗୃହସ୍ୱାମୀ ନିବାସ କରନ୍ତି ପୁଣି ନିମ୍ନତମ ପ୍ରଦେଶରେ ଶୂକର ଲଗି ବସିଥାଏ । ଏହି ଶୂକରର ସ୍ଥାନ ସହିତ ତୁଳନାକଲେ ପ୍ରଭୁଙ୍କର ନିବାସ ସ୍ଥାନ ସ୍ୱର୍ଗ ଭୁବନ ବୋଲି ଯାଇପାରେ । ଉଚ୍ଚସ୍ଥାନର ଜଳବାୟୁ ନିମ୍ନସ୍ଥାନ ଅପେକ୍ଷା ଅଧିକତର ପରିମଳ ଏବଂ ସ୍ୱାସ୍ଥ୍ୟ ଜନକ, ଅତଏବ ହିତକାରକ । ଯେଉଁ ପଦାର୍ଥ ହିତକର ତାହାକୁ ସ୍ୱର୍ଗୀୟ ବୋଲି ଯାଇପାରେ । ଅତଏବ ଉଚ୍ଚ ସ୍ଥାନକୁ ସ୍ୱର୍ଗ ଭୁବନ କହିବା ସୁସଙ୍ଗତ । ବୋଧହୁଏ ଏହି କାରଣରୁ ଲୋକେ ସ୍ୱର୍ଗକୁ ନେଇ ଉଚ୍ଚ ସ୍ଥାନରେ ସ୍ଥାପନ କରି ଅଛନ୍ତି—ଅର୍ଥାତ୍ ସ୍ୱର୍ଗ—ଭବରେ ଉଚ୍ଚତା ଆରୋପ କରି ଅଛନ୍ତି ।

ସ୍ୱର୍ଗରେ ଅପ୍‌ସରାମାନେ ନିବାସ କରନ୍ତି । ଏମାନେ ଦେବଭୋଗ୍ୟା ବେଶ୍ୟା ଅଟନ୍ତି ବୋଲି କଥାଅଛି, ତେବେ ବେଶ୍ୟା ସଙ୍ଗକି ସ୍ୱର୍ଗ ବାସ ବୋଲ୍ଲ ଯିବ । ତାହା ନୁହେ, ପବିତ୍ର ଦାମ୍ପତ୍ୟ ପ୍ରେମ ସ୍ୱର୍ଗୀୟ ଅଟେ, ପବିତ୍ର ପ୍ରେମ ହିଁ ଦିବ୍ୟ ସୁଖ ପ୍ରଦ । ମୃଗତୃଷ୍ଣାକୁ ଜଳବୋଲି ଯେପରି ଭ୍ରମ ହୋଇ ଥାଏ, କ୍ରୀତ ପ୍ରେମକୁ ମଧ୍ୟ ଲୋକ ପବିତ୍ର ଦାମ୍ପତ୍ୟ ସୁଖ ବୋଲି ଭ୍ରମରେ ପଡ଼ିଥାନ୍ତି, ସୁତରାଂ ସ୍ୱର୍ଗ ରାଜ୍ୟରେ ମଧ୍ୟ ସେହି ପ୍ରଲୋଭନର ବସ୍ତୁ ସୃଷ୍ଟି କରି ଅଛନ୍ତି । କିନ୍ତୁ ବୁଝିବାକୁ ହେବ ଯେ, ଦାମ୍ପତ୍ୟ ପ୍ରେମ ସ୍ୱର୍ଗୀୟ ଏବଂ ତଦ୍‌ଭିନ୍ନ କାମାସକ୍ତି ନାରକୀୟ ।

ସ୍ୱର୍ଗର ଅନ୍ୟତମ ଲକ୍ଷଣ ଅମରତ୍ୱ । ସ୍ୱର୍ଗ ବାସୀ ଦେବତାମାନେ ଅମର ବୋଲି ଗୃହୀତ ହୁଅନ୍ତି । ଏହି ଅମରତ୍ୱ ପାଇବା ନିମନ୍ତେ ଲୋକେ ସ୍ୱର୍ଗ ବାସ ଇଚ୍ଛା କରନ୍ତି । କିନ୍ତୁ ସ୍ୱର୍ଗର ଦେବତା ମାନେ ମଧ୍ୟ ମର୍ତ୍ତ୍ୟ ଭୁବନକୁ ବିତାଡ଼ିତ ହୋଇ ଥାନ୍ତି, ପୁଣି ଦେଖନ୍ତୁ ମର୍ତ୍ତ୍ୟରେ ମଧ୍ୟ ଲୋକେ ଚିରଞ୍ଜୀବୀ ଅଛନ୍ତି । ଯେଉଁମାନେ ସତ୍‌କର୍ମ କରନ୍ତି ଏବଂ ଯଶୋପାର୍ଜନ କରନ୍ତି ସେମାନେ ଅମରତ୍ୱ ଲାଭ କରନ୍ତି—"ଯସ୍ୟ କୀର୍ତ୍ତି ସଜୀବତି" ।

ଆଉ ଏକ ବିଷୟ । ସ୍ୱର୍ଗରେ ଅମୃତ ମିଳଇ ବୋଲି କଥାଅଛି । ଅମୃତ ସେବନ କଲେ କ୍ଷୁଧା ପିପାସା ରହେ ନାହିଁ ଏବଂ ଅମରତ୍ୱ ଲାଭହୁଏ । ପୁଣି ଆମ୍ଭମାନଙ୍କର ପଞ୍ଚାମୃତ ଅଛି—କ୍ଷୀର, ମଧୁ ଇତ୍ୟାଦି । କ୍ଷୀର, ଘୃତ, ଶର୍କରା ପ୍ରଭୃତି ପଦାର୍ଥମାନ ଉତ୍କୃଷ୍ଟ ଖାଦ୍ୟ ଅଟେ । ଏହି ଖାଦ୍ୟ ଦ୍ୱାରା ଲୋକେ ସବଳ କାୟ ଏବଂ ଦୀର୍ଘଜୀବୀ ହୁଅନ୍ତି ।

ତେବେ ପୂର୍ବୋକ୍ତ ବିଷୟ ମାନଙ୍କରୁ ପ୍ରତିପାଦିତ ହୋଇ ପାରେଯେ ସ୍ୱର୍ଗର ପୃଥକ ସ୍ଥାନ ନାହିଁ । ମର୍ତ୍ତ୍ୟ ମଣ୍ଡଳରେ ହିଁ ସ୍ୱର୍ଗ ବାସ ପ୍ରତିଷ୍ଠିତ ଅଛି । ସୁତରାଂ ଭାଗବତରେ କଥା ଅଛି" ସ୍ୱର୍ଗ ନରକ ବେଦବାଣୀ, ଏହା ମୁ ଏକ ଧର୍ମେ ଜାଣି" ।

## ଗୃହସ୍ଥାଶ୍ରମ

ଜଗତକୁ ଗୋଟିଏ ବିଶ୍ୱବିଦ୍ୟାଳୟ କହିବାକୁ ହେଲେ ଗୃହସ୍ଥାଶ୍ରମ ଗୁଡ଼ିକ ତହିଁରେ ଗୋଟିଏ ୨ ଗୁରୁ ଟ୍ରେନିଙ୍ଗ ସ୍କୁଲ । ମାନବ ଜାତିଟା ବର୍ତ୍ତମାନ ସର୍ବୋତ୍କୃଷ୍ଟ ସୃଷ୍ଟି । ଏହି ମାନବ ଜାତି ନିମନ୍ତେ ଗୃହସ୍ଥାଶ୍ରମ ପ୍ରତିଷ୍ଠିତ । ଏହି ଗୃହସ୍ଥାଶ୍ରମ ଗର୍ଭରେ ମନୁଷ୍ୟ ମାନେ ଗଢା ହୁଅନ୍ତି । ବାଲ୍ୟ ଚାପଲ୍ୟ, ଉଦ୍ଦାମ ଯୌବନ ଓ ବାର୍ଦ୍ଧକ୍ୟର ଶିଥିଳତା ଏହି ସକଳ ମାନବ ଜୀବନ ସୁଲଭ ପ୍ରକୃତ ଗୁଡ଼ିକର ଅଙ୍କୁଶ ଓ ସଂରକ୍ଷଣ ସ୍ୱରୂପ ଅଟେ ଗୃହସ୍ଥାଶ୍ରମ । ଏହାହିଁ ପରୋପକାର, ଦେଶ ହିତ, ଜାତୀୟ ଉନ୍ନତି, ସାହିତ୍ୟ ସେବା, ଦୟାଦାକ୍ଷିଣ୍ୟ, ସହୃଷ୍ଟତା, ସ୍ୱାର୍ଥତ୍ୟାଗ ଇତ୍ୟାଦି ସଦ୍‌ଗୁଣ ବଲ୍ଲୀର ଆଧାର ଅଟେ । ଗୃହସ୍ଥାଶ୍ରମ ଗୋଟିଏ ଗୁରୁ ହାଣ୍ଡି ଏବଂ ଅନ୍ୟାଶ୍ରମ ମାନେ ଗୋଟିଏ ୨ ଖଣ୍ଡତା ସ୍ୱରୂପ । ଗୃହସ୍ଥାଶ୍ରମ ନଥିଲେ ମାନବ ଜାତିର ମନୁଷ୍ୟତ୍ୱ ଥାଆନ୍ତାକି ନାହିଁ ସନ୍ଦେହ ।

ଦୁଃଖର ବିଷୟ ଏହି ଗୃହସ୍ଥାଶ୍ରମ ଗର୍ହିତାଶ୍ରମ ହୋଇ ପଡ଼ୁଅଛି । ସୁତରାଂ ଗୃହାରମ୍ଭୋହି ଦୁଃଖାୟ ବୋଲି କଥା ଅଛି । ଏହି ଗୁରୁଟ୍ରେନିଂ ସ୍କୁଲରେ ଆମ୍ଭେମାନେ ପ୍ରକୃତ ଶିକ୍ଷା ପାଇ ପାରୁନାହୁଁ, ବରଂ ଅବିଦ୍ୟା ଏବଂ ଅବୈଧ କର୍ମ ଶିକ୍ଷାକରୁଁ । ଗୃହସ୍ଥାଶ୍ରମ ଗୋଟିଏ ଉତ୍ତମ ବ୍ୟବସ୍ଥା, କିନ୍ତୁ ତାହା ଦୁର୍ବହ ଭାର ସ୍ୱରୂପ ବୋଧ ହେଉଅଛି । ଆଗ ଉଦର ପଛେ ସୋଦର, କିନ୍ତୁ ଲୋକ ଯେ କେବଳ ଉଦରାମୟ ହେବ ଏହା ନୁହେଁ । ଅନେକ ଗୃହସ୍ଥ ଯେଉଁ ଘର ଖଣ୍ଡିକୁ ଆପଣାର ଜଗତ ବୋଲି ଜ୍ଞାନ କରନ୍ତି । ଯେଉଁ ଗୃହସ୍ଥାଶ୍ରମସାଧନ ଦ୍ୱାରା ମନୁଷ୍ୟତା ସଙ୍ଗେ ୨ ବିଶ୍ୱମୁଖୀନତା ଜାତହୁଏ ସେହି ଗୃହସ୍ଥାଶ୍ରମ ଆଜି ଆମ୍ଭମାନଙ୍କୁ ସଙ୍କୀର୍ଣ୍ଣମନା ଓ ବିବେକବିହୀନ ପଶୁ କରି ପକାଉ ଅଛି । ଧନ ଉପାର୍ଜନ କରିବା ପୁଣି ତାହା ପୁତ୍ରକନ୍ୟା ଓ ପତ୍ନୀ ପାଇଁ ସଞ୍ଚୟ କରିଯିବା, ଏହାହିଁ ଗୃହସ୍ଥାଧର୍ମର ପ୍ରଧାନ କର୍ତ୍ତବ୍ୟ ବୋଲି ଧରା ଯାଇଅଛି । ପୁତ୍ରକନ୍ୟାମାନଙ୍କୁ ସତ୍‌ଶିକ୍ଷା ଦେଇ ଗୁଣବାନ୍ କରାଇ ଜଗତର ଉପକାରାର୍ଥ ମନୁଷ୍ୟ କରି ଛାଡ଼ିଦେବା ପିତାମାତାର କର୍ତ୍ତବ୍ୟ ବୋଲି ଗୃହୀତ ହୁଏନାହିଁ । ଗୃହସ୍ଥର ଏକାନ୍ତ ଇଚ୍ଛା ଯେ ସେ ଆପଣା ପୁତ୍ରକନ୍ୟାମାନଙ୍କ ପାଇଁ କିଛି ଧନ ସଞ୍ଚୟ କରିଯିବ । ଗୃହିଣୀର ଇଚ୍ଛା ଯେ ସେ ପୁତ୍ରକନ୍ୟା ଗୁଡ଼ିଏ ଜାତ କରି ସେମାନଙ୍କର ବିବାହ କରି ଦେବ ପୁଣି ନିଜେ ଅଳଙ୍କାର ଗୁଡ଼ିଏ ଧାରଣକରିବ । ଯେଉଁ ସ୍ତ୍ରୀ ନାକ କାନ କଣାକରି ବେଶି ନାସ୍ତି ରୂପା ଲଗାଇଲା ନାହିଁ ଏବଂ ପୁଅଝିଅ ଜନ୍ମକଲା ନାହିଁ ସେ ମାଇକିନିଆଁ ଠାର ଜୀବନ ବୃଥା, ଯେହେତୁ ପୁତ୍ର ପ୍ରୟୋଜନା ଭାର୍ଯ୍ୟା ବୋଲି ଶାସ୍ତ୍ରବାକ୍ୟ ଅଛି । ଧନ ଅର୍ଜନ କରିବା ଗୃହସ୍ଥର ଯେପରି କର୍ତ୍ତବ୍ୟ, ଧନ ଅର୍ଜିଲେ ଧର୍ମ କରିବା ତଦ୍ରୂପ କର୍ତ୍ତବ୍ୟ, କିନ୍ତୁ ଗୃହସ୍ଥ ମାନଙ୍କର ଧନ ଅର୍ଜନ କରି ଆପଣା ସ୍ତ୍ରୀ ପୁତ୍ର ପାଇଁ ସଞ୍ଚୟ କରିବାହିଁ ପ୍ରଧାନ କର୍ତ୍ତବ୍ୟ ହୋଇଅଛି । ଗୃହସ୍ଥ ବା ଗୃହିଣୀର ବ୍ୟକ୍ତିଗତ ବା ପାରିବାରିକ ଜୀବନକୁ ସଙ୍କୀର୍ଣ୍ଣ ସ୍ୱାର୍ଥ ସାଧନ ଲିପ୍‌ସାହିଁ ସୃଜନ କରିଥାଏ । ନିଜର ପୁତ୍ର କନ୍ୟାମାନେ ଖାଇବେ, ପାଇବେ, ପିନ୍ଧିବେ, ଲଗାଇବେ ଏଥି ସକାଶେ ଧନ ଅର୍ଜନ କରିବାକୁ ହୁଏ ପୁଣି ପରକାଳରେ ପିତାମାତାଙ୍କୁ ପିଣ୍ଡ ପ୍ରଦାନ କରିବେ, ଏଥିପାଇଁ ଗୃହରେ ପୁତ୍ରର ଆବଶ୍ୟକତା ହୁଏ । କି ଘୋର ସ୍ୱାର୍ଥପରତା ! ଇହ ଜୀବନରେ ନିଜର ପୁତ୍ର କନ୍ୟା, ପରଜୀବନରେ ଆପଣା ପିଣ୍ଡ । ଇହ ପର ଉଭୟ ଜୀବନରେ ପରାର୍ଥ ସାଧନ ପାଇଁ କୌଣସି ଚିନ୍ତା ବା ଚେଷ୍ଟା ନାହିଁ ! ଏହି ଗୃହସ୍ଥାଶ୍ରମରୁ ବାଳକ ବାଳିକାମାନେ କଅଣ ଶିକ୍ଷା କରନ୍ତି ? ସ୍ୱାର୍ଥପରତା ନା ଉଦାରତା ? ବିଶୁଦ୍ଧ ପଶୁତ୍ୱ ନା ମନୁଷ୍ୟତା ? ଏପରି ଯେଉଁ ଗୃହସ୍ଥାଶ୍ରମ, ତହିଁରୁ ସୁଖ ଓ ଶାନ୍ତି ପଳାୟନ କରେ ପୁଣି ତହିଁରେ କପଟତା ଓ କ୍ରୂରତା ଆଶ୍ରୟ ଗ୍ରହଣ କରେ । ଯେତେବେଳେ ସେହି ପବିତ୍ର ଗୃହସ୍ଥାଶ୍ରମ ନାରକୀୟ ଗର୍ହିତାଶ୍ରମରେ ପରିଣତ ଲାଭକରେ ସେତେବେଳେ ତାହା ଜଞ୍ଜାଳ ଜଡ଼ିତ ଦୁଃଖମୟ ଶୋକ ସନ୍ତାପପୂର୍ଣ୍ଣ ଦୁର୍ବହ ଭାରହେବା ବିଚିତ୍ର କ'ଣ ?

" ଶ୍ରୀକୃଷ୍ଣ ଅର୍ଜ୍ଜୁନଂକୁ କହିଥିଲେ
ଗୃହରେ ରହି ପାର୍ଥ ଗୃହକର୍ମ କର    ଗୃହ କର୍ମକୁ ଜାଣ କେହି ନୁହେ ସରି
ଏବେ କୃଷ୍ଣ ଥିଲେ କହୁଥାନ୍ତେ
" ଗୃହସ୍ଥାଶ୍ରମ ଅଟେ ଗରହିତାଶ୍ରମ    ଗୃହସ୍ଥ ଠାରୁ ବଳ ନାହିଁକେ ଅଧମ ,,
ଯେହେତୁ ଗୃହସ୍ଥାଶ୍ରମୀ ନର ପଶୁ କର୍ମାଚରେ    ତା ଠାରୁ ବଳ ପାପୀ ନାହିଁ ଏ ସଂସାରେ

## ଜାତୀୟ ଜୀବନ ।

ଜୀବନର ଅବୟବ ନାହିଁ କିନ୍ତୁ ଅବୟବ ସମଷ୍ଟିକି ଜୀବନ କୁହାଯାଏ । କତିପୟ ଅବୟବ ମାନଙ୍କର ଏକତ୍ରାବସ୍ଥିତି, ପରସ୍ପର, ସହାନୁଭୂତି ଓ ସହାୟତା ରହିଲେ ଉକ୍ତ ଅବୟବ ଗୁଡ଼ିକୁ ଏକ ଜୀବିତ ଶରୀର କୁହାଯାଏ । ଶରୀର ମାତ୍ରେ ଯେରୂପେ ବ୍ୟକ୍ତିଗତ ଜୀବନ, ସେହିପରି ସାମାଜିକ ଜୀବନ, ସାମ୍ପ୍ରଦାୟିକ ଜୀବନ, ଜାତୀୟ ଦେଶୀୟ ଏବଂ ଜଗଜ୍ଜୀବନ । ହସ୍ତ, ପାଦ, ମୁଖ, ଉଦର ଯେପରି ଯେ ଯାହା କାର୍ଯ୍ୟ କରନ୍ତି, ଏହି କାର୍ଯ୍ୟ ସମଷ୍ଟି ଉପରେ ଯେପରି ଶାରୀରିକ ଜୀବନ ଏକାନ୍ତ ନିର୍ଭର କରେ ଏବଂ ଅବୟବ ମାନଙ୍କ ଅକର୍ମଣ୍ୟତା ଓ ଅସହାୟତା ଯୋଗୁଁ ଶରୀର ଯେପରି ଅବସନ୍ନ ହୋଇପଡ଼େ, ସେହିପରି କୌଣସି ଜାତି, ସମ୍ପ୍ରଦାୟ ବା ଦେଶର ଲୋକମାନେ ପରସ୍ପର ସହାନୁଭୂତି ଓ ସାହାଯ୍ୟ ନକଲେ, କର୍ମକ୍ଷେତ୍ରରେ ଯେ ଯାହା କାର୍ଯ୍ୟ ନକଲେ, ଉକ୍ତ ଜାତି ସମ୍ପ୍ରଦାୟ ବା ଦେଶ ଉନ୍ନତି ଲାଭ କରିପାରେ ନାହିଁ । ଆତ୍ମଜ୍ଞାନର ବିସ୍ତୃତି ସଙ୍ଗେ ସଙ୍ଗେ ଏହି ଜୀବନର ବ୍ୟାପକତା ବୃଦ୍ଧିଲାଭ କରେ । ବ୍ୟକ୍ତିଗତ ଜୀବନ ଜୀବର ପ୍ରଥମାବସ୍ଥା । ଏହି ଅବସ୍ଥାରେ ପଶୁ ଓ ମନୁଷ୍ୟ ମଧ୍ୟରେ ବେଶି ପ୍ରଭେଦ ଦେଖାଯାଏ ନାହିଁ । ମନୁଷ୍ୟ ଯେତେବେଳେ କ୍ରମଶଃ ମନୁଷ୍ୟତା ଲାଭକରେ ତେତେବେଳେ ସେହି ମନୁଷ୍ୟତାର ଅନୁପାତରେ ସେ ତାହାର ଜୀବନକୁ ବିସ୍ତୃତ କରିବାକୁ ଲାଗେ, ନିଜ ଶରୀରଠାରୁ ନିଜ ପରିବାର ଅର୍ଯ୍ୟନ୍ତ, ପରିବାରରୁ ପଡ଼ୋଶି, ପଡ଼ୋଶୀରୁ ସମ୍ପ୍ରଦାୟ, ସମ୍ପ୍ରଦାୟରୁ ଜାତି, ଜାତିରୁ ଦେଶ, ଦେଶରୁ ପ୍ରାଣୀ ଜଗତ, ଏହିପରି କ୍ରମଶଃ ବିସ୍ତୃତି ଲାଭକରେ । ଯେଉଁ ମାନଙ୍କର ଜୀବନ ଯେତେ ବିସ୍ତୃତ ସେମାନେ ସେତେ ଉଦାର ଏବଂ ସେତେ ପରୋପକାର ପରାୟଣ ପୁଣି ଯେଉଁ ଜୀବନ ଯେତେ ଦୂର ସଙ୍କୀର୍ଣ୍ଣ ସେ ସେତେଦୂର ସ୍ୱାର୍ଥପର ।

ବ୍ୟକ୍ତିଗତ ଜୀବନ ଓ ଜାତୀୟ ଜୀବନ ।

ଯେଉଁମାନେ କେବଳ ନିଜ ପେଟ ଖଣ୍ଡିକ ପୂର୍ଣ୍ଣ କରିବାକୁ ଚାହାନ୍ତି, ନିଜର ଇନ୍ଦ୍ରିୟ ସେବାରେ ଏକାନ୍ତ ଅନୁରକ୍ତ ରହନ୍ତି, ସେମାନେ ବ୍ୟକ୍ତିଗତ ଜୀବନର ଜୀବିକା ନିର୍ବାହ କରନ୍ତି । ଏହି ଶିଶ୍ନୋଦର ପରାୟଣ ଜୀବନକୁ ମାନବୋଚିତ ଜୀବନ କୁହାଯାଇ ନପାରେ । ପ୍ରକୃତିର ନିୟମ ଏପରି ନାହିଁ ଯେ କୌଣସି ବ୍ୟକ୍ତି ଏହି ଜୀବନରେ ଅଜୀବନ

ଆବଦ୍ଧ ରହିପାରେ । କ୍ଷୁଦ୍ର ଏବଂ ସଙ୍କୀର୍ଣ୍ଣ ଜୀବମାନେ ମଧ୍ୟ ନିଜ ପରିବାରର ଭିର ବନ୍ଧନ କରିବାକୁ ଆପଣାକୁ ବାଧ୍ୟ ମଣନ୍ତି । ଏହି ପାରିବାରିକ ଜୀବନରୁ ଅନୁଭବ ଜ୍ଞାନର ବୃଦ୍ଧି ସଙ୍ଗେ ସଙ୍ଗେ ଜାତୀୟ ଜୀବନ ଅଙ୍କୁରିତ ହୁଏ । ଜାତୀୟ ଜୀବନ ମାନବୋଚିତ ଜୀବନ, କିନ୍ତୁ ବ୍ୟକ୍ତିଗତ ଜୀବନ ଅଟେ ପାଶବ ଜୀବନ । ଯେଉଁ ଜାତିରେ ବ୍ୟକ୍ତିଗତ ଜୀବନ ଯେଉଁ ପରିମାଣରେ ପ୍ରତିଷ୍ଠିତ ସେହି ଜାତିର ଉନ୍ନତି ସେହି ପରିମାଣରେ ଦୂରସ୍ଥ । ଯେଉଁ ଜାତିରେ ଜାତୀୟ ଜୀବନଜୀବୀ ସଂଖ୍ୟା ଯେଉଁ ପରିମାଣରେ ବେଶି ସେହି ଜାତିର ଉନ୍ନତି ସେହି ପରିମାଣରେ ସୁନିଶ୍ଚିତ । ବ୍ୟକ୍ତିଗତ ଜୀବନ ରାଜ୍ୟରେ ଜାତୀୟ ଜୀବନ ଉନ୍ନତି ଲାଭ କରି ପାରେନାହିଁ । ଜାତୀୟ ଜୀବନ ନିମନ୍ତେ ଆତ୍ମବଳୀ ଦରକାର, ଶୌର୍ଯ୍ୟ ଦରକାର ଆଦର୍ଶ ଦରକାର, ଆତ୍ମସମ୍ମାନ ଦରକାର, ସ୍ୱାର୍ଥତ୍ୟାଗ ଦରକାର, କର୍ତ୍ତବ୍ୟ ଜ୍ଞାନ ଦରକାର, ସହିଷ୍ଣୁତା ଦରକାର, ଅଧ୍ୟବସାୟ ଦରକାର । ଜାତୀୟ ଶିକ୍ଷା, ଜାତୀୟ ଦୀକ୍ଷା, ଜାତୀୟ ସଭ୍ୟତା, ଏବଂ ଜାତୀୟ ଆଦର୍ଶ ଦରକାର । ଜାତୀୟ ଜୀବନ ସକାଶେ ଜାତୀୟ ଅବୟବ ଆବଶ୍ୟକ ।

ଜାତୀୟ ଜୀବନ ଅର୍ଥାତ୍ ଜାତି ନିମନ୍ତେ ଜୀଇଁବା । ତୁମ ପାଇଁ ତୁମେ ଜୀଇଁବ ଏହା ତୁମ୍ଭର କେବଳ ପାଶବ ଜୀବନ । ଜାତି ନିମନ୍ତେ ଜୀଇଁବା, ଜାତିର ଦୁଃଖରେ ଦୁଃଖୀ ଜାତିର ସୁଖରେ ସୁଖୀ, ଜାତିର ଟେକରେ ନିଜର ଟେକ, ଜାତିର ପ୍ରଶଂସାରେ ନିଜର ପ୍ରଶଂସା, ଜାତିର ସମ୍ପଦରେ ନିଜର ସମ୍ପତ୍ତି, ଜାତୀୟ କ୍ଷମତାରେ ନିଜର କ୍ଷମତା, ଜାତିର ଶୋଭାରେ ନିଜର ଶୋଭା, ଜାତିର ସଭ୍ୟତାରେ ନିଜର ସଭ୍ୟତା ଏବଂ ଜାତିର ବିବିଧ ପ୍ରକାର ଉନ୍ନତିରେ ନିଜର ସମସ୍ତ ଉନ୍ନତି—ଜାତୀୟ ଜୀବନହିଁ ମାନବୋଚିତ ଜୀବନ ।

ଜାତୀୟ ଜୀବନ—ତୁମଜାତି ସହିତ ତୁମର ସମବେଦନା ଅନୁଭବ କରିବା । ମନେକର, ଆତ୍ମରକ୍ଷାର୍ଥ ତୁମ ଜାତିର ଶସ୍ତ୍ରଧାରଣ ଅଧିକାର ନାହିଁ । ତୁମେ ଅନୁମତି ପାଇ ଖଣ୍ଡେ ବନ୍ଧୁକ ବ୍ୟବହାର କରି ପାରିଲେ ଜାତିର କ'ଣ କିଛି ଲାଭ ହେଲା ? ତୁମ ଜାତିରେ ଯେତେବେଳେ ଶସ୍ତ୍ର ଧାରଣ ଅଧିକାର ନାହିଁ, ତୁମେ କିଛି ଆତ୍ମଶକ୍ତି ଦେଖାଇ ବା ଖୋସାମଦ କରି ବିଶ୍ୱାସଭାଜନ ହେଲେ ଖଣ୍ଡେ ନଳୀ ଧରିବାକୁ ଅଧିକାର ପାଇଲ । ଆତ୍ମରକ୍ଷା କରିବା ପାଇଁ ହେଉ ମଧ୍ୟ ତୁମର ସେହି ଶାସ୍ତ୍ରଧାରଣ କରିବା ଉଚିତ ନୁହେ । ଶସ୍ତ୍ରାଭାବରୁ ଆତ୍ମରକ୍ଷା କରି ନପାରି ନିଜେ ମରିବା ଶ୍ରେୟସ୍କର, ବରଂ ଜାତିକି ଛାଡ଼ ତୁମର ସ୍ୱାର୍ଥସାଧନ କରିବା କିମ୍ବା ଆତ୍ମ ରକ୍ଷା କରିବା ଉଚିତ ନୁହେ । କିନ୍ତୁ ପ୍ରତିରୋଧ ଦ୍ୱାରା ଆତ୍ମସମ୍ମାନ ରଖି କର୍ତ୍ତୃପକ୍ଷଙ୍କର ବିଶ୍ୱାସଭାଜନ ହେବା ଉଚିତ ।

ତୁମ୍ଭେମାନେ ନିଜେ ନିଜର ପଦାର୍ଥ ଗୁଡିକ ତିଆରି ନକରି ବିଦେଶୀ ହାତକୁ କୁକ୍କୁରପରି ଚାହିଁଥିବ, ଅଇଁଠା ଶୋଇଁଠା ଖାଇ ଶ୍ୱବୃତ୍ତି କରୁଥିବ । ତୁମର ନାସଦାନୀ ବା ଟୋପି ଖଣ୍ଡିକ ପାଇଁ ଜର୍ମାନୀ ହାତକୁ ଚାହିଁବ ? ଏହା ତୁମର ଜାତୀୟତା କିମ୍ବା ମନୁଷ୍ୟତା ? ତୁମର ପାଗ ଯଦି ତୁମେ କରି ନପାର ତେବେ ସେ ପାଗ ପୁଟୁକା

ସଂଧି ଛାଡ ଦେଇପାର ବରଂ ଜର୍ମ୍ମାନର ଚୋଟି ଧାରଣ କରିବା ଉଚିତ ନୁହେ । ସେହିପରି ଉତ୍କଳୀମାନେ ସେମାନଙ୍କ ଯାଜପୁରରେ ସରୁଲୁଗା କରି ନପାରିଲେ ବୋଝା ମୋହ୍ନାପିନ୍ଧିବେ ପିନା, ଢ଼ାକା ମଜ୍‌ଲିନରେ ମଜା କରି ପାରିବେ ନାହିଁ । ବ୍ରିଟିଶ ସାମ୍ରାଜ୍ୟର ଉନ୍ନତରେ ଆମ୍ଭେମାନେ ସ୍ୱଭାବତଃ ଯେତେ ପ୍ରୀତ ହେବା, ଜର୍ମ୍ମାନ ସାମ୍ରାଜ୍ୟ କଥାଛଡ଼, ସେ ଏଷଣି ଆମର ଶତ୍ରୁ, ଫରାସୀ ବା ମାର୍କିନର ଉନ୍ନତିରେ ଆମ୍ଭମାନଙ୍କର ସେତେ ସହାନୁଭୂତି ରହିବନାହିଁ, କାରଣ ଶାସକ-ଶାସିତ ବନ୍ଧନ ଯୋଗୁଁ ଏବେ ଆମ୍ଭେମାନେ ଏକ ଜାତୀୟ ଅଟୁଁ । ପୁଣି ଦେଖନ୍ତୁ, ରବୀନ୍ଦ୍ର ବାବୁଙ୍କ ଖ୍ୟାତିରେ ଆମ୍ଭେମାନେ ଯେତେ ଖୁସି, କାଉଣ୍ଟ ଓକୁମାଙ୍କ ପ୍ରଶଂସାରେ ସେତେ ପ୍ରୀତ ହୋଇ ପାରୁନାହୁଁ । ଏହି ସମସ୍ତ ଘଟଣାର ମୂଳରେ ନିହିତ ଅଛି ଜାତୀୟ ଜୀବନର ସମବେଦନା ।

ଯେ ଆତ୍ମ ସମ୍ମାନ ବୁଝନ୍ତି ନାହିଁ ସେ ଅନ୍ୟର ସମ୍ମାନ କରି ପାରନ୍ତି ନାହିଁ । ଅନ୍ୟର ସମ୍ମାନ କରି ନଜାଣିଲେ ଜାତୀୟ ସମ୍ମାନ ବୋଧଗମ୍ୟ ହୁଏନାହିଁ । ମନୁଷ୍ୟ ଜାତି ଶ୍ୱାନକୁ ମଧ୍ୟ ସମ୍ମାନ କରେ ଯେତେବେଳେ ଶ୍ୱାନ ମଧ୍ୟ ସତ୍‌ଶିକ୍ଷା କରି ସ୍ନେହ ଓ ସମ୍ମାନର ଯୋଗ୍ୟ ହୁଏ । କେହି ମନୁଷ୍ୟ ଆପଣା ଜାତୀୟ ମନୁଷ୍ୟକୁ ଆପଣା ସମକକ୍ଷ ଆସନ ଦେବାକୁ କୁଣ୍ଠିତ ହୁଅନ୍ତି । ଯେଉଁ ମନୁଷ୍ୟର ମନୁଷ୍ୟ ପ୍ରତି ଆତ୍ମଜ୍ଞାନ ନାହିଁ ତାହାର ଜାତୀୟତା ନାହିଁ । ଭାରତ ବାସୀ ଯଦି ଭାରତୀୟର ସମ୍ମାନ କରେନାହିଁ, ଧିକ ତାଙ୍କ ଭାରତୀୟତା । ଯାହାର ଜାତୀୟତା ନାହିଁ ତାହାର ମନୁଷ୍ୟତା ନାହିଁ, ଅନେକ ଉଚ୍ଚ ପଦସ୍ଥ ଭାରତୀୟ ହାକିମମାନେ ସ୍ୱାହଂକାରରେ ସ୍ଫୀତ ହୋଇ ଜାତୀୟ ଭାବ ମନରୁ ପିଙ୍ଗି ଦେଇଥାନ୍ତି । ଯଦ୍ୟପି ଏମାନେ କିଛି ଜାତୀୟଭାବ ମନରେ ପୋଷଣ କରନ୍ତି ତେବେ ଉକ୍ତ ଭାବ ସଂକୀର୍ଣ୍ଣତାର ନାମାନ୍ତର ମାତ୍ର, ଯେହେତୁ ଏମାନେ ନିଜର କୌଣସି ଜାତି ପ୍ରତି ପକ୍ଷପାତ ରହି ଜାତି ଜାତି ମଧ୍ୟରେ ବିଦ୍ୱେଷ ବୀଜ ବପନ କରନ୍ତି । ଔଷଧ ଭାଗରେ ଗନା କାମୁଡ଼ିଲା ପରି ଏମାନେ ଜାତୀୟ ସଦନୁଷ୍ଠାନର ମୂର୍ତ୍ତିମାନ ବିଘ୍ନରୂପରେ ବିରାଜମାନ ରହନ୍ତି । କିନ୍ତୁ ଜାତୀୟ ଜୀବନ ଏହି ସକଳ ବାଧାବିଘ୍ନ ଅତିକ୍ରମ କରି ଧୀର ଗମ୍ଭୀର ଭାବରେ ପ୍ରବାହିତ ହୁଏ । ଜାତୀୟ ଜୀବନର ଅପରିମିତ ଶକ୍ତି । ଜାତୀୟ ଜୀବନରେ ଭୀତି ନାହିଁ, ଯେହେତୁ ଏଥିରେ ବ୍ୟକ୍ତିଗତ ସଂକୀର୍ଣ୍ଣ ସ୍ୱାର୍ଥ ନାହିଁ । ଏହି ଜୀବନର ଭବନନ୍ୟ ଏତେ ବିସ୍ତୀର୍ଣ୍ଣ ଏବ କର୍ମ୍ମକ୍ଷେତ୍ର ଏତେ ପ୍ରଶସ୍ତ ଯେ ଏହାକୁ କାରାବାସ ମଧ୍ୟ ଆବଦ୍ଧ ରଖିପାରେ ନାହିଁ । ଜାତୀୟ ପୀଠ ଉପରେ ଆତ୍ମବଳୀ ଆବଶ୍ୟକ । ବ୍ୟକ୍ତିତ୍ୱ ବିଲୁପ୍ତ ନହେଲେ ଜାତୀୟ ଉନ୍ନତି ବିକଶିତ ହୁଏ ନାହିଁ । ବ୍ୟକ୍ତି ବିଶେଷର ଆତ୍ମୋତ୍ସର୍ଗରେ ଜାତୀୟ-ପ୍ରଭାବ ଅନୁଭୂତ ହୁଏ ।



# ତ୍ୟାଗ ଶୀଳତା ।

ସୃଷ୍ଟିର ମୂଳରେ ତ୍ୟାଗ । ପ୍ରାପ୍ତି ବା ଉନ୍ନତି କଥା ଛଡ଼, ବିନା ତ୍ୟାଗରେ କୌଣସି କର୍ମ କରାଯାଇ ପାରେ ନାହିଁ, କୌଣସି ପଦାର୍ଥ ପ୍ରାପ୍ତ ହୁଏନାହିଁ କିମ୍ବା କୌଣସି ଉନ୍ନତି ହୁଏ ନାହିଁ । ତ୍ୟାଗହିଁ ପରମ ପ୍ରାପ୍ତି, ବିନା ତ୍ୟାଗରେ କିଛି ପ୍ରାପ୍ତ ହୋଇପାରେ ନାହି । ଲୋକେ ତ୍ୟାଗରେ ଅଭାବ ଆଶଂକା କରନ୍ତି ଏବଂ ଅଭାବ ଆଶଙ୍କାରୁ ଅଭାବ ଅନୁଭବ କରନ୍ତି, କିନ୍ତୁ ତ୍ୟାଗହିଁ ଉତ୍ତମ ଲାଭ ଏବଂ ପରମ ସୌଭାଗ୍ୟ । ତ୍ୟାଗର ସମ୍ପଦ, ତ୍ୟାଗର ଆତ୍ମ ପ୍ରସାଦ ତ୍ୟାଗୀ କେବଳ ଉପଲବ୍ଧି କରିପାରେ । ତ୍ୟାଗରେ ଆଖିରେ ଦେଖିବା ପୁଣି ହାତରେ ଧରିବା ଭଳି ସଦ୍ୟ ଫଳ ନଥାଏ । ତ୍ୟାଗର ଭାବୀ ଫଳରେ ଲୋକେ ବିଶ୍ୱାସ କରି ପାରନ୍ତି ନାହିଁ, ବିଶ୍ୱାସ କଲେହେଁ ତୃପ୍ତି ଲାଭ କରି ପାରନ୍ତି ନାହିଁ । କିନ୍ତୁ ତ୍ୟାଗୀ କେବଳ ସୁଖୀ ଏବଂ ଆତ୍ମପ୍ରସାଦ ଲାଭ କରିପାରେ ।

ପରମାତ୍ମା ପରମେଶ୍ୱର ପ୍ରକୃତିରୂପ ଉପାଦାନ କାରଣରୁ ସୃଷ୍ଟି ନିର୍ମାଣ କରି ତାହା ଜୀବାତ୍ମାର ଭୋଗ ବିଳାସ ନିମନ୍ତେ ତ୍ୟାଗ କରିଛନ୍ତି । ସେହିପରି ପିତା ମାତା ନିଜର ଶକ୍ତି ସାମର୍ଥ୍ୟ ଏବଂ ସ୍ୱାର୍ଜିତ ପ୍ରିୟ ପଦାର୍ଥ ସବୁ ତ୍ୟାଗ କରି ପୁତ୍ର କନ୍ୟା ଜାତ କରନ୍ତି ଏବଂ ସେମାନଙ୍କୁ ଲାଳନ ପାଳନ କରି ଜଗତର ନର ନାରୀ ତିଆରି କରନ୍ତି । ମନୁଷ୍ୟମାନେ ସ୍ୱାର୍ଥ ତ୍ୟାଗ କରି ପରାର୍ଥ ବା ପରମାର୍ଥ ସମ୍ପାଦନ କରନ୍ତି, ବୀଜ ଯେପରି ନିଜେ ନଷ୍ଟ-ହୋଇ ବୃକ୍ଷ, ପତ୍ର, ପୁଷ୍ପ, ଫଳ ଇତ୍ୟାଦି ଉତ୍ପନ୍ନ କରେ । ଜନ୍ମ ଜନ୍ମାନ୍ତର ସାଧନରେ ପ୍ରାଣିମାନେ ସିଦ୍ଧି ଲାଭ କରନ୍ତି । ସକଳ ପ୍ରକାର ସାଧନା କେବଳ ତ୍ୟାଗ ବିଶେଷ । ଇହଜନ୍ମରେ ଯେ ଯେତେ ତ୍ୟାଗ କରି ଥାଏ ପରଜନ୍ମରେ ସେ ସେତେ ପ୍ରାପ୍ତ ହୁଏ । ଇହ ଜନ୍ମରେ ମଧ୍ୟ ତ୍ୟାଗୀମାନେ ତ୍ୟାଗର ଫଳ ଭୋଗ କରି ଥାନ୍ତି । ଯେ ଯେତେଦୂର ଆପଣାର ସଙ୍କୀର୍ଣ୍ଣ ସ୍ୱାର୍ଥ ତ୍ୟାଗ କରନ୍ତି ତାହାଂକର ମହତ୍ତ୍ୱ ସେତେ ବେଶି ଏବଂ ଲୋକରେ ସେ ସେତେ ବଡ଼ ଲୋକ ବୋଲି ଗଣ୍ୟ ମାନ୍ୟ ହୁଅନ୍ତି । ଏହି ତ୍ୟାଗ ବଳରେ ଆଜି ଗାନ୍ଧି, ତିଳକ, ଗୋଖେଲ ପ୍ରଭୃତି ମହାପୁରୁଷ ମାନେ ଲୋକରେ ମହାତ୍ମା, ଲୋକମାନ୍ୟ, ଦେଶ ସେବକ ବୋଲି ପରିଚିତ ଏବଂ ସର୍ବଜନ ପୂଜିତ । ସମାଜରେ ଚାରି ଆଶ୍ରମିମାନଂକ ମଧ୍ୟରେ ସନ୍ନ୍ୟାସୀ ମାନେ ଉଚ୍ଚତମ, ସର୍ବଶ୍ରେଷ୍ଠ ଏବଂ ପରମ ପୂଜ୍ୟ । ଏହାରକାରଣ, ସେମାନେ ସର୍ବତ୍ୟାଗୀ ପୁଣି ପରୋପକାରହିଁ ସେମାନଙ୍କର ପରମ ସ୍ୱାର୍ଥ । ଯେଉଁମାନେ ତ୍ୟାଗୀ ନୁହନ୍ତି କେବଳ ସଂଗ୍ରହଶୀଳ ରହନ୍ତି ସେମାନେ ପ୍ରକୃତ ବଡ଼ ଲୋକ ନୁହନ୍ତି । ସେମାନଙ୍କର ଲୋକ ଭୁଲା ଢଙ୍ଗ, ବଡ଼ଲୋକ ପଣିଆଁ କେବଳ ଅଢ଼ାଇ ଦିନିଆଁ ମାତ୍ର ।

ତ୍ୟାଗୀ ଲୋକ ନିଶ୍ଚିନ୍ତ, ନିରୁଦ୍ବେଗ ଏବଂ ପରମ ସୁଖୀ । ଲୋଭୀ ଲୋକ ଯହିଁରେ ଅଭାବ ଅନୁଭବ କରି ସନ୍ତପ୍ତ ହେଉଥାଏ, ତ୍ୟାଗୀ ତହିଁରେ ପରିତୃପ୍ତ ହୋଇ ଆତ୍ମ ପ୍ରସାଦ ଲାଭ କରେ । ସଂଗ୍ରହରେ କେବେ ତୃପ୍ତି ନାହିଁ । ସଂଗ୍ରହକାରୀ ସଦା ଅତୃପ୍ତ ଓ ସଙ୍କୀର୍ଣ୍ଣ ।

ଅସ୍ଥାୟୀ ସ୍ୱାର୍ଥାନ୍ୱେଷୀହିଁ ତାହାର ନିରନ୍ତର ଚିନ୍ତାର ବିଷୟ, ତାହାର ଦୁରାଶାର ଅନ୍ତ ନଥାଏ ଏବଂ ସେ ପଦେ ପଦେ ସନ୍ତପ୍ତ ହେଉଥାଏ, ଯେତେ ସମ୍ପାଦନ କଲେହେଁ ନିଶ୍ଚିନ୍ତ ବା ସନ୍ତୁଷ୍ଟ ହୋଇପାରେ ନାହିଁ ।

ତ୍ୟାଗହିଁ ପରମ ସଞ୍ଚୟ । ଲୋକ ଆପଣାର ବିଷୟ ଓ ବସ୍ତୁ ତ୍ୟାଗ କରିବା ଦ୍ୱାରା ଭବିଷ୍ୟତ ପାଇଁ ସଞ୍ଚୟ କରିଥାଏ । ଇହ ଜୀବନର ତ୍ୟାଗଫଳ ବିଶେଷରେ ପର ଜୀବନରେ ଲାଭ ହୁଏ ପୁଣି ତାହା ଅନେକ ବା ବହୁ ଗୁଣରେ ଲାଭ ହୁଏ । ଏଥିପାଇଁ ଲୋକରେ କଥା ଅଛି ଯାହା ଦେଇଥିବ ତାହାକୁ ।

ସଞ୍ଚୟରୁ ନିବୃତ୍ତ ହେବାହିଁ ଏକ ପ୍ରକାର ତ୍ୟାଗ । କିନ୍ତୁ ସମ୍ପାଦନ କରି ତ୍ୟାଗ କରିଦେବା ତାହାଠାରୁ ଅଧିକ ଶ୍ରେୟସ୍କର ଏବଂ ମହତ୍ତର । ସଂସାରରେ ତଥା ସମାଜରେ ଯେଉଁ ଦିଗରେ ଯେତେ ଉନ୍ନତି ଘଟିଅଛି, ତାହାର ମୂଳରେ ବ୍ୟକ୍ତି ବିଶେଷର ତ୍ୟାଗ ଫଳ ନିହିତ ଅଛି । ବିନା ତ୍ୟାଗରେ ଉନ୍ନତି ଅସମ୍ଭବ । ଅତଏବ ତ୍ୟାଗଶୀଳତାହିଁ ମନୁଷ୍ୟତା ।



# ଗୋଜାତି ପ୍ରତି କର୍ତ୍ତବ୍ୟ ।

ଗାଈ ବା ବଳଦ ପଘାରେ ବନ୍ଧାହୋଇ ମରିଗଲେ ଗୋରୁ ବାନ୍ଧିବା ଓ ବନ୍ଧାଇବା ଲୋକର ପାପ ହୁଏ । ସେ ଲୋକ ସହିତ କେହି ଭୋଜନ ପାନ ସମ୍ବନ୍ଧ ରଖନ୍ତି ନାହିଁ, ତାହାକୁ ଚଣ୍ଡାଳ ମନେକରି ଛୁଅନ୍ତି ନାହିଁ, କାଂସ୍ୟ ପାତ୍ରରେ ମଧ୍ୟ ଖାଇବାକୁ ଦିଅନ୍ତି ନାହିଁ । ସେହି ଲୋକକୁ ପ୍ରାୟଶ୍ଚିତ୍ତ କରିବାକୁ ପଡେ, ଓଡ଼ିଶା ଯାଇ ଜଗନ୍ନାଥ ଦର୍ଶନ କରିବାକୁ ହୁଏ, ତେଣୁ ଫେରି ଆସି ବଂଶ ଓ ବନ୍ଧୁମାନଙ୍କୁ ଭୋଜି ଦେବାକୁ ହୁଏ । ତେବେ ଯାଇ ସେ ଲୋକଙ୍କୁ ଜାତିରେ ମିଶାନ୍ତି ।

ଏହା ଏକ ସୁନ୍ଦର ବ୍ୟବସ୍ଥା । ଏହାର ମୂଳ ଉଦ୍ଦେଶ୍ୟ ଏହିଯେ ଗୋଜାତି ଅତୀବ ଉପକାରୀ । ବନ୍ଧାଯିବା ବେଳେ ପଶୁ ଜାତି ସ୍ୱେଚ୍ଛାକ୍ରମେ ସ୍ୱାଧୀନ ଭାବେ କାର୍ଯ୍ୟକରି ପାରେ ନାହିଁ, ନିଜ ଶରୀର ସଞ୍ଚାଳନ ଦ୍ୱାରା କୌଣସି ଆକସ୍ମିକ ବିପଦରୁ ଉଦ୍ଧାର ଲଭି ପାରେ ନାହିଁ । ଯଦି ପଶୁର ସଂରକ୍ଷଣ ସକାଶେ ପୁଣି ନିଜର କାର୍ଯ୍ୟ ସାଧନ ସକାଶେ ତାହାକୁ ବାନ୍ଧି ରଖିବାକୁ ହୁଏ, ତେବେ ତାହା ପାଖେ କୌଣସି ଲୋକ ଜଗି ରହିବା ଉଚିତ । ଏହା ଯେ କରି ନଥାନ୍ତି ସେ ଉକ୍ତ ଦୋଷ ସକାଶେ ଦଣ୍ଡିତ ହୁଅନ୍ତି, ପୁରୀ ଯାଆନ୍ତି, ଧନବ୍ୟୟ କରନ୍ତି, ଅନେକ ଲୋକଙ୍କୁ ଭୋଜନ ଦିଅନ୍ତି—ଏହି ରୂପ ନାନାବିଧ କଷ୍ଟଭୋଗ କରନ୍ତି । ଏହିପରି ଗୋମରଣକୁ ପାପ କହନ୍ତି । ଏହାର ଫଳ

ନରକବାସ ହେବାକୁ ଭୁଲାଯାଇ ଥାଏ । ପାପ ଓ ନରକ ଏହି ଭୟାବହ ପଦରେ ମାତ୍ର ଲୋକେ ଭୁଲିଯାଇ ପାପର ପ୍ରାୟଶ୍ଚିତ କରଥାନ୍ତି । କିନ୍ତୁ କଥାଟାର ଉଦ୍ଦେଶ୍ୟ ବୁଝିପାରୁ ନଥାନ୍ତି । ଅତଏବ ଫଳରେ କେବଳ ଗୋ ସଂରକ୍ଷଣ ଦୂରେଥାଉ, ଗୋନାଶ ପର୍ଯ୍ୟନ୍ତ କାର୍ଯ୍ୟରେ କରାଯାଇ ଥାଏ । ମାତ୍ର ପ୍ରାୟଶ୍ଚିତ ନିୟମ ପାଳନରେ ତ୍ରୁଟି ନଥାଏ ।

ଏହିପରି ଦେଖନ୍ତୁ, କେହି ୨ ଗୋପୂଜା କରୁଥିଲେ ହେଁ ଗୋଜାତି ପ୍ରତି ଟିକିଏ ମାତ୍ର ସ୍ନେହ ଦୟା ରଖି ନଥାନ୍ତି । ବିଷୟଟାର ମର୍ମ ନ ବୁଝି କାର୍ଯ୍ୟକଲେ ସମୟେ ୨ ଠିକ ବିପରୀତ ଆଚରଣ କରିବାକୁ ହୋଇଥାଏ । ଲୋକେ ପ୍ରାୟଶ୍ଚିତ ଦେଇ କରଇଅନ୍ତି କିନ୍ତୁ ବ୍ୟବସ୍ଥାର ଉଦ୍ଦେଶ୍ୟ ପାଳନ କରନ୍ତି ନାହିଁ । ଗୋରୁକୁ ବାନ୍ଧି ରଖିଥିବା ବେଳେ ତାହାର ରକ୍ଷଣାବେକ୍ଷଣ ସକାଶେ କେହି ଜଗି ନ ଥାନ୍ତି ବା କାହାକୁ ଜଗାଇ ନଥାନ୍ତି । ପ୍ରାୟଶ୍ଚିତ୍ତଟା ପାଇଁ କେବଳ ପଇସାରେ କଥା ରହିଲା । ପଇସା ଖରଚ କରି ପ୍ରାୟଶ୍ଚିତ୍ତ କରଦେଲେ ହେଲା । ଗୋରୁର ସଂରକ୍ଷଣ ନ କରୁ ଚିନ୍ତା ନାହିଁ ଗୋଜାତିକୁ ବିଷ କରିଦେଉ ଚିନ୍ତା ନାହିଁ । କେବଳ ପଇସାରେ ମଲେ ପୁଣି ପାପ ହୁଏ !

## ଫୁଲତୋଳା

ସୃଷ୍ଟିକର୍ତ୍ତା ଜଗଦୀଶ୍ୱର ଏହି ଜଗତରେ ବିବିଧ ପ୍ରକାର ପଦାର୍ଥର ସୃଷ୍ଟି କରିଅଛନ୍ତି । ପ୍ରତ୍ୟେକ ପଦାର୍ଥର ପ୍ରୟୋଜନ ଅଛି । କୌଣସି ହେଉ ପଦାର୍ଥ ନିଷ୍ଫଳ ନୁହେ । ଯଦିବା କୌଣସି ପଦାର୍ଥର ପ୍ରୟୋଜନ ଧରାଯାଇ ନାହିଁ ତେବେ ବୁଝିବାକୁ ହେବ ଯେ ମାନବ ଜ୍ଞାନ ସୀମାବଦ୍ଧ, ଉକ୍ତ ଜ୍ଞାନ ବା ବିଜ୍ଞାନ ଯଥେଷ୍ଟ ନହେବାରୁ ତାହାର ପ୍ରୟୋଜନ ବୁଝାଯାଇ ନାହିଁ ।

ଏହି ହିସାବରେ ଅଜାଗଳସ୍ତନ ମଧ୍ୟ ନିରର୍ଥକ ନୁହେ, କେବଳ ଏହାର ପ୍ରୟୋଜନ ଆମ୍ଭେମାନେ ବୁଝିପାରୁ ନାହୁଁ । ଯେଉଁ କାର୍ଯ୍ୟରେ ଯେଉଁ ପଦାର୍ଥର ପ୍ରୟୋଜନ ହୁଏ ତାହାକୁ ସେଥିରେ ପ୍ରୟୋଗ କରିବା ଉଚିତ । ଏହାହିଁ ସୃଷ୍ଟିକର୍ତ୍ତା ଈଶ୍ୱରଙ୍କ ପ୍ରିତ । ମନୁଷ୍ୟ ମାନେ ଅଜ୍ଞାନ ବା ମିଥ୍ୟାଜ୍ଞାନ ବଶରୁ ପଦାର୍ଥର ପ୍ରକୃତ ପ୍ରୟୋଜନ ନବୁଝି ତାହାର ଅସତ୍ ବ୍ୟବହାର କରଥାନ୍ତି । ଏହି ଅସତ୍ ବ୍ୟବହାରରୁ ଅସାର ଫଳ ଫଳେ, ଲୋକର ଅମଙ୍ଗଳ ହୁଏ, ଦେଶର କ୍ଷତି ହୁଏ, ଜାତିର ଅବନତି ହୁଏ, ଇତ୍ୟାଦି ଅନିଷ୍ଟ, ଆପଦ ଜାତହୁଏ । ତେବେ ମାନବଜ୍ଞାନ ସସୀମ ହେଲେହେଁ ଆମ୍ଭେମାନେ ନିଜର ବିବେକ, ବୁଦ୍ଧି, ଜ୍ଞାନ, ବିଜ୍ଞାନ, ଅଭ୍ୟାସ, ଅନୁଭବ ଇତ୍ୟାଦିରୁ ପ୍ରୟୋଜନୀୟ ବସ୍ତୁର ପ୍ରୟୋଗ ବୁଝିପାରୁଅଛୁଁ ।

ପୁଷ୍ପର ପ୍ରୟୋଜନ କ'ଣ ପୁଣି ତାହାର କି ପ୍ରୟୋଗ କରାଯାଉଅଛି ଦେଖାଯାଉ । ସୁଗନ୍ଧ ପ୍ରଦାନହିଁ ପୁଷ୍ପର ଉଦ୍ଦେଶ୍ୟ । ପୁଷ୍ପଦ୍ୱାରା ବାୟୁମଣ୍ଡଳ ସୁଗନ୍ଧଯୁକ୍ତ ହୁଏ । ଫୁଲଫୁଟିଲେ ଜଗତ ବାସେ । ଫୁଲ ଗଛରେ ଥିବାଯାକ ସୁଗନ୍ଧ ବିତରଣ କରେ । ଫୁଲକୁ ଗଛରୁ ତୋଳା-

ହେଲେ କ୍ରମେ୨ ତାହାର ସୁବାସର ହ୍ରାସ ହୋଇଯାଏ । ଫୁଲକୁ ଗଛରୁ ତୋଳିଦେଲେ ତାହାର ଯଥେଷ୍ଟ ପ୍ରୟୋଜନ ଅନୁଭୂତ ହୁଏ ନାହିଁ । ଫୁଲ ଯଦି ଫୁଟି କ୍ରମେ କ୍ରମେ ଶୁଖି ପାଚି ଆପେ ଝଡ଼ି ପଡ଼ିଗଲା ପର୍ଯ୍ୟନ୍ତ ଗଛରେ ରହେ ତେବେ ସେ ବହୁକାଳ ପର୍ଯ୍ୟନ୍ତ ଆପଣାର ସୁଗନ୍ଧ ବାୟୁରାଶି ବିତରଣ କରେ । ପୁଣି ସେହି ସୁଗନ୍ଧଯୁକ୍ତ ବାୟୁ ବହୁ ଲୋକଙ୍କର ଉପକାର କରେ, ବହୁ ଲୋକଙ୍କୁ ଆମୋଦ ପ୍ରମୋଦ ପ୍ରଦାନ କରେ । କିନ୍ତୁ ଫୁଲକୁ ତୋଳିଆଣି ଶୁଙ୍ଘିବା ହାର ଗୁନ୍ଥିବା ମାନଙ୍କର ଗଳାରେ ଲମ୍ବାଇବା କିମ୍ବା ମୁଣ୍ଡରେ, କାନରେ ଲଗାଇବା ଦ୍ୱାରା ପୁଷ୍ପର ଗନ୍ଧ ବହୁକାଳ ସ୍ଥାୟୀ ହୁଏନାହିଁ ଏବଂ ସେହିଗନ୍ଧ ବହୁ ଲୋକ ଆଘ୍ରାଣ କରିପାରନ୍ତି ନାହିଁ ।

ଫୁଲ ଚନ୍ଦନାଦି ସୁଗନ୍ଧଯୁକ୍ତ ଦ୍ରବ୍ୟ ଦ୍ୱାରା ଦେବତାର ଆରାଧନା କରିବାକୁ ହୁଏ । ଦେବତାଙ୍କୁ ଯେପରି ପିତୁଳା ରୂପରେ ଗଢ଼ି ରଖିବାକୁ ହୁଏ, ସେପରି ସେହି ଦେବତା ନାମରେ ପୁଷ୍ପର ମଧ୍ୟ ଅପବ୍ୟବହାର କରିବାକୁ ହୁଏ । ପିତୁଳା ଦେବତାମାନଙ୍କପାଇଁ ପୁଷ୍ପର ସୃଷ୍ଟି ହୋଇନାହିଁ । ବାୟୁମଣ୍ଡଳକୁ ସୁବାସିତ କରିବାହିଁ ପୁଷ୍ପ ସୃଷ୍ଟିର ଉଦ୍ଦେଶ୍ୟ । ଈଶ୍ୱର କଦାପି ପୁଷ୍ପ ଗନ୍ଧରେ ପରିତୃପ୍ତ ହୁଅନ୍ତି ନାହିଁ । ସେ କେବଳ ହୃଦୟର ପବିତ୍ର ପରିମଳ ଗ୍ରହନ୍ତି । ପିତୁଳା ନିମନ୍ତେ ପୁଷ୍ପକୁ ଭ୍ରଷ୍ଟ ନଷ୍ଟ କରିବା ଦେଖି ଈଶ୍ୱର କଦାପି ସନ୍ତୁଷ୍ଟ ହେବେନାହିଁ, ଯେହେତୁ ଦିବ୍ୟ ଗନ୍ଧବହ ପୁଷ୍ପର ଏହି ଅପଚୟ ଦ୍ୱାରା ଲୋକଙ୍କର ଅପକାର ଏବଂ ଜଗତର କ୍ଷତି ହୁଏ ।

ଅତଏବ ବୃକ୍ଷ ଲତାଦିର ପୁଷ୍ପ ତୋଳି ପକାଇବା ଉଚିତ ନୁହେ । ନାନାସ୍ଥାନରେ ପୁଷ୍ପବୃକ୍ଷ ରୋପଣ କରିବା ଉଚିତ । ଗୃହ, ମନ୍ଦିର, ଅଟ୍ଟାଳିକା, ବିଦ୍ୟାଳୟ, କାର୍ଯ୍ୟାଳୟ, ରଙ୍ଗାଳୟ ଇତ୍ୟାଦି ସ୍ଥାନ ନିକଟରେ ଫୁଲଗଛ ଲଗାଇବା ଉଚିତ । ସୁଗନ୍ଧ ଆଘ୍ରାଣ କରିବାକୁ ହେଲେ ପୁଷ୍ପବୃକ୍ଷ ନିକଟକୁ ଯିବାକୁ ହେବ କିମ୍ବା ନିବାସ ନିକଟରେ ନାନାବିଧ ପୁଷ୍ପବୃକ୍ଷ ଲତାଦି ରୋପଣ କରିବା ଶ୍ରେୟସ୍କର ।



## ଭାଦ୍ରବ ମାସିଆ ଭଦ୍ରତା

ବାହ୍ୟ ବେଶରେ ସମସ୍ତ ନଗର ଏକାନ୍ତ ବିମୋହିତ, ଲୋକେ ଆପଣାର ଭଦ୍ରତାକୁ ପେଡ଼ି ସିନ୍ଦୁକରେ ରଖିଥାନ୍ତି । ଭାଦ୍ରବ ମାସରେ ଏହି ଭଦ୍ରତାର ପରିଚୟ ମିଳେ, ଉଭାହୋଇ ଝରକାରେ ଏହି ଭଦ୍ରତାକୁ ଶୁଖାଇବାକୁ ହୁଏ । ତାହା ନହେଲେ ଭଦ୍ରତା ନରମ ହୋଇଯାଏ । ଦରକାରବେଳେ ଆଉ କାମରେ ଆସେନାହିଁ । ଜମିଦାରଠାରୁ ମଜୁରିଆ ପର୍ଯ୍ୟନ୍ତ ସମସ୍ତେ ଆପଣା ଆପଣାର ସିନ୍ଦୁକ ସାଇତା ଲୁଗାପଟାଦିକ ଏହି ଭାଦ୍ରବ ମାସରେ ବାହାରକୁ କାଢ଼ନ୍ତି । ନିତ୍ୟ ନୈମିତ୍ତିକ ବେଶଭୂଷାରେ ଏହି ଭଦ୍ରତାର ପରିମାଣ ଧରାପଡ଼େ, କିନ୍ତୁ

ଆନ୍ତରିକ ଭଦ୍ରତା ଏପରି ନୁହେ । ଏହା ହେମ ପରି ସର୍ବଦା ତେଜସ୍କର । ଏହାକୁ କୀଟଦଂଶନ କରିପାରେ ନାହିଁ, ଏହା କେବେହେଁ ନରମ ହୋଇ ନଷ୍ଟ ହୋଇଯାଏ ନାହିଁ । ଏହାକୁ ଚିରିଦେଇ ଖଣ୍ଡିର ଅଂଶସ୍ତୃ ଗ୍ରହଣ କରିବାକୁ ପଡେନାହିଁ । ବାହ୍ୟ ଭଦ୍ରତା ଅଟେ ବସ୍ତ୍ର ଏବଂ ଆନ୍ତରିକ ଭଦ୍ରତା ଅଟେ ଚରିତ୍ର । ବାହ୍ୟଭଦ୍ରତା ଜଳରେ ବୁଡିଯାଏ, ଅଗ୍ନିରେ ପୋଡିଯାଏ, ଶୈତ୍ୟରେ ନରମ ହୋଇଯାଏ ଏବଂ ଏହାକୁ ଚୋର ଅପହରଣ କରେ । କିନ୍ତୁ ଆନ୍ତରିକ ଭଦ୍ରତାର କୌଣସି କାଳେ କୌଣସି କ୍ଷତି ହୁଏନାହିଁ, ଏହା ସର୍ବଦା ହୀରକ ପ୍ରାୟ ଝଟକୁଥାଏ । ତଥାପି ଏହି ବାହ୍ୟ ବସ୍ତ୍ର ପ୍ରତି ଲୋକେ ଯେତେ ଅନୁରକ୍ତ, ଆନ୍ତରିକ ଚରିତ୍ର ପ୍ରତି ସେତେ ଅନାସକ୍ତ । ଦେଶ ଲାଗି ଉତ୍ତମ ବସ୍ତ୍ର, କିନ୍ତୁ ଚରିତ୍ର ହେବ ପବିତ୍ର ହେବାକୁ ହୁଏ । ଏକମାତ୍ର ଚରିତ୍ର ଶତଶତ ବସ୍ତ୍ରର ଅଭାବ ପୂରଣ କରିପାରେ, କିନ୍ତୁ ସହସ୍ର ସଂଖ୍ୟକ ବହୁମୂଲ୍ୟବାନ ପଟ୍ଟବସ୍ତ୍ର ଚରିତ୍ରହୀନତାକୁ ଆବୃତ କରିପାରେ ନାହିଁ ।



## ବୌଦ୍ଧଧର୍ମ ବିଚାର

ଏହି ସଂସାର ଦୁଃଖମୟ, ଏଥିରେ ସୁଖ ନାହିଁ । ଭ୍ରାନ୍ତି ଲୋକ ଯେପରି ମରୀଚିକାରେ ଜଳ ଦେଖେ, ସେହିପରି ତୃଷ୍ଣାର୍ତ୍ତ ଲୋକ ଦୁଃଖକୁ ସୁଖ ବୋଲି ଜ୍ଞାନ କରେ । ଦୁଃଖ, ଦୁଃଖର କାରଣ, ଦୁଃଖର ନିବାରଣ ଓ ଦୁଃଖ ନିବାରଣର ଉପାୟ—ଏହି ଚାରୋଟି କଥା ଲୋକ ଜାଣିବା କର୍ତ୍ତବ୍ୟ । ତୃଷ୍ଣାରୁ ସକଳ ଦୁଃଖ ଜାତ ହୁଏ । ତୃଷ୍ଣା ତିନି ପ୍ରକାର ଯଥା କାମ ତୃଷ୍ଣା, ଭବତୃଷ୍ଣା ଓ ବିଭବ ତୃଷ୍ଣା । ରୂପ, ରସ, ସ୍ପର୍ଶ ଗନ୍ଧାଦିର ନାମ କାମତୃଷ୍ଣା, ଶାଶ୍ୱତ ଦୃଷ୍ଟି ଜନିତ ତୃଷ୍ଣାର ନାମ ଭବତୃଷ୍ଣା ଓ ଉଚ୍ଛେଦ ଜନିତ ତୃଷ୍ଣାର ନାମ ବିଭବ ତୃଷ୍ଣା । ତୃଷ୍ଣା ନିରୋଧ କଲେ ସୁଖଲାଭ ହୁଏ । ତୃଷ୍ଣା ନିରୋଧ ବା ନିର୍ବାଣ ଦୁଇ ପ୍ରକାର । ଉପାଧିଶେଷ—ନିର୍ବାଣ ଓ ଅନୁପାଧି ଶେଷ ନିର୍ବାଣ । ଉପାଧି ଶେଷ ଇହ ଜୀବନରେ ଲବ୍ଧ ହୁଏ । ଅନୁପାଧି ଶେଷ ଦେହ ବିନାଶ ପରେ ପ୍ରାପ୍ତ ହୁଏ । ତୃଷ୍ଣାନିରୋଧ ଉପାୟ ଅଷ୍ଟାଙ୍ଗ ବା ଆଠପ୍ରକାର, ଯଥା ସମ୍ୟକ ଦୃଷ୍ଟି, ସମ୍ୟକ ସଙ୍କଳ୍ପ, ସମ୍ୟକ ବାକ୍ୟ, ସମ୍ୟକ କର୍ମାରମ୍ଭ, ସମ୍ୟକ ଆଜୀବ, ସମ୍ୟକ ବ୍ୟାୟାମ, ସମ୍ୟକ ସ୍ମୃତି, ଓ ସମ୍ୟକ ସମାଧି । କାମ ସେବନ ଓ ଶରୀର ନିଗ୍ରହ ଉଭୟ ଅନ୍ତିମ ପନ୍ଥା ଏହି ଉଭୟ ଅନ୍ତ ପରିତ୍ୟାଗ କରି ମଧ୍ୟବର୍ତ୍ତୀ ପନ୍ଥା ଅବଲମ୍ବନ କରିବାକୁ ହେବ ।

ବୌଦ୍ଧଧର୍ମର ନୀତି—କି ଉଚ୍ଚ, କି ଉଦାର ! ( ୧ ) ଅହିଂସା ପରମ ଧର୍ମ ( ୨ ) ସର୍ବ ଜୀବଠାରେ ମୈତ୍ରୀ ସଂପାଦନ କର ( ୩ ) ଦୁର୍ଗତିର ପ୍ରତି କରୁଣା ଓ ସୁଖୀପ୍ରତି ସହାନୁଭୂତି ପ୍ରକାଶ କର । ( ୪ ) ଶତ୍ରୁତା ଦ୍ୱାରା ଶତ୍ରୁତା ନିବାରଣ କରାଯାଏ ନାହିଁ ।

(୫) ମିତ୍ରତାଦ୍ୱାରା ଶତ୍ରୁତା ନିବାରିତ ହୁଏ (୬) ଯେ କାର୍ଯ୍ୟକଲେ ଅନୁତାପ ଜାତହୁଏ ଏବଂ ଯାହାର ଫଳ ଅଶ୍ରୁସିକ୍ତ ମୁଖରେ ଭୋଗକରିବାକୁ ହୁଏ, ତାହା ପରିତ୍ୟାଗ କର (୭) ପାପମତ୍ତ ଅସତ୍ ପୁରୁଷ ସହବାସ କରନା (୮) ସତ୍‌ମିତ୍ର ଓ ସତ୍‌ପୁରୁଷର ସେବାକର (୯) କ୍ଷମାଦ୍ୱାରା କ୍ରୋଧକୁ ଜୟକର (୧୦) ସାଧୁତା ଦ୍ୱାରା ଅସାଧୁତାକୁ ଜୟକର (୧୧) କୃପଣ ବ୍ୟକ୍ତିକି ଦାନ ଦ୍ୱାରା ଏବଂ ମିଥ୍ୟାବାଦୀକି ସତ୍ୟ ଭାଷଣ ଦ୍ୱାରା ଜୟକର ।



## ପେଟଲାଗି ଏତେ ଛଟପଟ—ଉଦରମ୍ଭରି

ଲୋକେ ବଞ୍ଚିବାପାଇଁ ଖାଅନ୍ତି ନାହିଁ, କିନ୍ତୁ ଅନେକେ ଖାଇବାପାଇଁ ବଞ୍ଚନ୍ତି । ଅନେକ ବ୍ୟକ୍ତିଙ୍କର ପେଟ ଖଣ୍ଡିକହିଁ ସେମାନଙ୍କର ସଂସାର । ଭଲ ହେଉ ବା ମନ୍ଦ ହେଉ ସେମାନେ ପେଟପାଇଁ କାର୍ଯ୍ୟ କରନ୍ତି, ପେଟପାଇଁ ଚାକିରି କରନ୍ତି, ଅଧିକାର କରନ୍ତି, କର୍ମ କରନ୍ତି, ଧର୍ମ କରନ୍ତି, ପାଠ ପଢ଼ନ୍ତି, ପୁସ୍ତକ ଲେଖନ୍ତି ଇତ୍ୟାଦି । ପେଟ ଖଣ୍ଡିକ ନଥିଲେ ପୁଣି କେହି କୌଣସି କର୍ମ କରନ୍ତା ନାହିଁ, କାହାକୁ ସେବା କରନ୍ତା ନାହିଁ, ସ୍ନେହ କରନ୍ତା ନାହିଁ, ଭକ୍ତି କରନ୍ତା ନାହିଁ, ଇତ୍ୟାଦି କୌଣସି କାର୍ଯ୍ୟ କରନ୍ତା ନାହିଁ । ପେଟ ଖଣ୍ଡିକହିଁ ମାନବ ଜୀବନର ନିୟାମକ ଓ ପରିଚାଳକ । ଧନ୍ୟ ସେ ପେଟ । ଯେଉଁ ପେଟ ଭିତରେ ଭଗବାନ ଶ୍ରୀକୃଷ୍ଣ ସମସ୍ତ ବ୍ରହ୍ମାଣ୍ଡକୁ ରଖିଥିଲେ ସେହି ପେଟର ମହାତ୍ମ୍ୟ ବର୍ଣ୍ଣନାତୀତ । ଆଜି ଏହି ଦୁର୍ଲ୍ଲଭ ମାନବ ସେହି ପେଟର ପଞ୍ଚଶିଷ୍ୟ ।

ଧର୍ମ ସାଧନ କରିବା ପାଇଁ ଶରୀର ରକ୍ଷା କରିବାକୁ ହୁଏ ପୁଣି ଶରୀର ରକ୍ଷାନିମନ୍ତେ ପେଟପାଇଁ କିଛି ଯୋଗାଇବାକୁ ହୁଏ । ଲୋକେ ଯେତେବେଳେ ଉଦର ବା ଶରୀରର ଏହି ଉଦ୍ଦେଶ୍ୟ ବୁଝନ୍ତି ନାହିଁ, ସେତେବେଳେ ଧର୍ମକୁ ପରିତ୍ୟାଗକରି ଶରୀର ପ୍ରତି ଆସକ୍ତ ହୁଅନ୍ତି । ପୁଣି ଏମାନଙ୍କ ମଧ୍ୟରୁ କେହି କେହି ଶରୀର ରକ୍ଷା ପ୍ରତି ଲକ୍ଷ ନରଖି ଉଦରର ବଶୀଭୂତ ହୁଅନ୍ତି, ସ୍ୱାସ୍ଥ୍ୟ ନଷ୍ଟହେଉ, ଶରୀର ଭ୍ରଷ୍ଟ ହେଉ, ରସନା ଲାଳସା ଛାଡି ନ ପାରି ଖାଇବାଟାକୁ ଜୀବନର ମୂଳ କରିଥାନ୍ତି ।

ଏହି ଆହାର ଇଚ୍ଛା ଟା ମାନବ ଜୀବନରେ ପଶୁତ୍ୱର ଅବଶେଷ ମାତ୍ର । ମନୁଷ୍ୟ ନରବାଚ୍ୟ ହେଲେହେଁ ସମସ୍ତେ ସମଭାବରେ ମନୁଷ୍ୟତ୍ୱ ପାଇ ନଥାନ୍ତି । ବହୁଜନ୍ମ ସାଧନାରୁ ମାନବଜୀବନ ଲବ୍ଧହୁଏ । ଏହି କ୍ରମେ ଜୀବନଟା ପୂର୍ବବର୍ତ୍ତୀ ପଶୁତ୍ୱରୁ ମାନବତ୍ୱକୁ ଉନ୍ନୀତ ହୁଏ । ଯେଉଁ ବ୍ୟକ୍ତି ବିଶେଷଙ୍କ ଠାରେ ପଶୁତ୍ୱର ଅବଶେଷ ବେଶି ପରିମାଣରେ ଥାଏ ସେହି ବ୍ୟକ୍ତିମାନେ ବେଶି ଆହାର ପ୍ରିୟ । ଏହି ପଶୁତ୍ୱାବଶେଷର ପରିମାଣ ଅନୁପାତରେ ଲୋକେ ପେଟଲାଗି ଛଟ ପଟ ହୁଅନ୍ତି, ପେଟ ଲାଗି ଏତେ ନାଟ କରନ୍ତି, ଉଦର ନିମନ୍ତେ ବେଶି ଧାଉଁଛନ୍ତି

କରନ୍ତି, ଉଦର ଦେବତାଙ୍କୁ ନିରନ୍ତର ଆରାଧନା କରନ୍ତି ।

ଉଦରମ୍ଭରି ମାନଙ୍କର ଉଦାରତା କାହୁଁ ଆସିବ ? ଏମାନଙ୍କର ପେଟଟା ଯେପରି କ୍ଷୁଦ୍ର, ମନଟା ସେହିପରି ସଂକୀର୍ଣ୍ଣ । ଏମାନଙ୍କର ସଂସାରଟା ପେଟ ଗହ୍ୱରରେ ପରିବ୍ୟାପ୍ତ ।



## ବାଟରେ ହଗିଲେ ନା

ଆମ ଦେଶରେ କଥାଅଛି " ଦେଉଳ ତୋଳାଇଲେ ନା, ବାଟରେ ହଗିଲେ ନା," ଏଦେଶରେ ଲୋକେ ପାଇଖାନାର ବ୍ୟବହାର ଜାଣନ୍ତି ନାହିଁ, ପୁରୁଷମାନେ ଗାଁ ମୁଣ୍ଡରେ ନଦୀତଟେ, ଟୋକାମାନେ କମା ପୋଖରୀ ହୁଡ଼ାଉପରେ ମଳତ୍ୟାଗ କରନ୍ତି । ପୁଣି ସନ୍ଧ୍ୟାବେଳେ ଲୋକେ ବିଶେଷତଃ ସ୍ତ୍ରୀ ଓ ବାଳକ ବାଳିକାମାନେ ଗାଁ ମୁଣ୍ଡରେ ନଡ଼ିଆ ଦାଣ୍ଡରେ ପୋଖରୀ ବସନ୍ତି । କୌଣସି କୌଣସି ଗ୍ରାମମାନଙ୍କରେ ଘୁଷୁରି କେତେଗୁଡ଼ା ଥାଇ ଅନୁଗ୍ରହ କରୁଥିଲେ ହେଁ ଆବର୍ଜନା ମଧ୍ୟରୁ ପୁରୀଷାଂଶଟା ଅପସାରିତ କରି ନଥାନ୍ତି । ବାଟଘାଟ ଟିକକ ମାତ୍ର ଛାଡ଼ି ଦୁଇପଟ ଆବର୍ଜନା ସ୍ତୂପରେ ପରିପୂର୍ଣ୍ଣ । ସେତେବେଳେ ଲୋକମାନେ ଆବର୍ଜନାକୁ ଡର ଦୂରକୁ ନ ଯାଇ ବାଟରେ ବସାଉଥାନ୍ତି । ଏମାନଙ୍କର ନାମ ଲୋକରେ ବିଦିତ ହୁଏ, ଲୋକେ ଏମାନଙ୍କର ଅନ୍ୱେଷଣ କରନ୍ତି, ଅନୁସରଣ କରନ୍ତି, ଏମାନଙ୍କର ନାମ ବାଟରେ ଘାଟରେ, ସମାଜରେ, ସଭାରେ, ଥାନାରେ, କଚେରୀରେ ପଡ଼େ । ଏମାନଙ୍କୁ ସକଳ ଲୋକେ ଚିହ୍ନିବାକୁ ପାରନ୍ତି । ଅତଏବ ବାଟରେ ହଗିଲେ ନା ହୁଏ ।

ଆଜି କାଲି ଦେଉଳ ତୋଳାଇବା ଏହିପରି ଏକ ନାମ ବିଶେଷ । ପୂଜକ ବା ଭକ୍ତ ଜଣେ ସୁଦ୍ଧା ନାହାନ୍ତି, କିନ୍ତୁ ଦେଉଳ କାହାଣ କାହାଣ ହେଲାଣି । ଏହି ଦେଉଳ ଗୁଡ଼ିକ, ବାସ୍ତବିକ ଦେଖିବାକୁ ହେଲେ, ଭକ୍ତ ସଂଖ୍ୟା ବଢ଼ାଇ ପାରୁନାହିଁ । ଏଥିଦ୍ୱାରା କେବଳ ଭଣ୍ଡ ସଂଖ୍ୟା ବଢ଼ୁଅଛନ୍ତି । ଦେଉଳ ମାନଙ୍କରେ ଅତିଥି ଅଭ୍ୟାଗତଙ୍କର ନିୟୋଗ ଥାଉ ଅଳସୁଆ ନେହାଲିଆ, ନିରକ୍ଷର ପୂଜାରୀ ଓ ଦାସୀ ଦେଉଳଆମ୍ବାରେ ଆମୋଦ କରି ନଥାନ୍ତି । ଏହି ଦେବାଳୟ ସ୍ଥାପନ ଦ୍ୱାରା ଦେଶର ସମ୍ପତ୍ତି ଶୋଷିତ ହୁଏ ନାହିଁ, କିନ୍ତୁ ସେମାନଙ୍କ ନାମ ଗୋଟେ ହୁଏ, ବାଟରେ ହଗିବା ଲୋକର ପରି ସମାଜରେ ଗୋଟିଏ ନାମ ପ୍ରକାଶିତ ହୋଇପଡ଼େ । ଏହି ନାମରେ ଲୋକେ ଲକ୍ଷାଧିକ ଟଙ୍କାର ଅଜସ୍ର ଧନ କାଠ ପଥର ମାଟିରେ ପୋତି ପକାନ୍ତି ।

ମଳ ମୂତ୍ର ପ୍ରଭୃତି ହିନ୍ଦୁମାନଙ୍କର ଅତି କଠୋର ନିୟମ । ମଳତ୍ୟାଗ କଲେ ବା ମଳସ୍ପର୍ଶ କଲେ ହିନ୍ଦୁମାନେ ବିଶେଷତଃ ନୈଷ୍ଠିକ ବ୍ରାହ୍ମଣ ମାନେ ସ୍ନାନ କରନ୍ତି, ଅନ୍ୟଥା

ଅଣ୍ଡାପାଣି କରନ୍ତୁ । ପାପ ଅପେକ୍ଷା ମଳଭୁକ୍ତ ଅଧିକ ଘୃଣା । ପାପ କରାଯାଇ ପାରେ, ସମାଜ ଚଳାଇ ନେବ, କିନ୍ତୁ ବସ୍ତ୍ର ଚଳନ୍ତି ପକାଇଲେ ଗତ୍ୟନ୍ତର ନାହିଁ । ସ୍ନାନସନ୍ଧ୍ୟା ପୂର୍ବକ ନୂତନ ଉପବୀତ ଧାରଣ କରିବାକୁ ପଡ଼େ, ଇତ୍ୟାଦି । ଏମାନଙ୍କର ମଳ ମୂତ୍ର ପ୍ରତି ଏତେ କଟକଣା, ଏତେ କଠୋର ବ୍ୟବସ୍ଥା, ତଥାପି ଏମାନେ ପାଇଖାନା ଯୋଗେ ମଳ ପରିଷ୍କାର ନକରି ଦାଣ୍ଡରେ, ବାଡ଼ରେ, ବାଟରେ, ଘାଟରେ ମଳ ମୂତ୍ର ତ୍ୟାଗ କରି ଥାନ୍ତି, ଅଲକ୍ଷିତ ଭାବରେ ତାହାସବୁ କୁହୁଡ଼ି ଆସନ୍ତି ନଷ୍ଟ ବାଷ୍ପରୂପେ ତାହା ଅଘ୍ରାଣ କରଥାନ୍ତି । ସେହିପରି ଏମାନଙ୍କର ପ୍ରତିମା ପ୍ରତି ପ୍ରଗାଢ଼ ଭକ୍ତି ଥିଲେହେଁ ଏବଂ ଦେଉଳ ସନ୍ନିଳ ମାଳ ଓ ଛାଲକକୁ ଏମାନେ ଭକ୍ତିର ପ୍ରଧାନ ସମ୍ବଳ ବା ଆଧାର ବୋଲି ଜ୍ଞାନ କରୁଥିଲେ ହେଁ ବର୍ଥ ପୂଜାରେ, ଝୁଲଣରେ, ମାଳୀରେ ଏବଂ ଛାଲକରେ ଯଥେଚ୍ଛାଚାର ଭଣ୍ଡାମି ଦେଖାଯାଏ ।

## ସ୍ୱାର୍ଥତ୍ୟାଗ ।

ତ୍ୟାଗହିଁ ସ୍ୱାର୍ଥର ସାରାଂଶ, ବିନା ତ୍ୟାଗ ସ୍ୱୀକାରରେ ସ୍ୱାର୍ଥ ସଂଘଟିତ ହୋଇପାରେ ନାହିଁ । ତ୍ୟାଗ ନିମନ୍ତେ ସ୍ୱାର୍ଥର ସୃଷ୍ଟି, ତ୍ୟାଗଦ୍ୱାରା ସ୍ୱାର୍ଥର ସମ୍ବର୍ଦ୍ଧନ ଏବଂ ତ୍ୟାଗହିଁ ସ୍ୱାର୍ଥର ପରିଣତି । ସର୍ବସ୍ରଷ୍ଟାଙ୍କ ତ୍ୟାଗ ହେତୁ ଏହି ସଂସାରର ସୃଷ୍ଟି, ପିତା ମାତାଙ୍କ ତ୍ୟାଗରୁ ପୁତ୍ର କନ୍ୟାଙ୍କ ଉତ୍ପତ୍ତି, ବୃକ୍ଷର ତ୍ୟାଗରୁ ଅଂକୁରର ଉତ୍ପତ୍ତି । ଦୁଃଖରୁ ଯେପରି ସୁଖ ଲାଭହୁଏ, ପରିଶ୍ରମରୁ ଯେପରି ଫଳ ଲାଭହୁଏ, ଯତ୍ନକଲେ ଯେପରି ରତ୍ନମିଳେ, ସେହିପରି ତ୍ୟାଗରୁ ସ୍ୱାର୍ଥ ଜନ୍ମେ । ତ୍ୟାଗିମାନେହିଁ ପରମ ସ୍ୱାର୍ଥପର । ଧର୍ମ କରିବାପାଇଁ ଯେପରି ଧନ ସଂପାଦନ କରିବାକୁ ହୁଏ, ତଦ୍ରୂପ ସ୍ୱାର୍ଥ ସାଧନ କରିବାପାଇଁ ତ୍ୟାଗ କରିବାକୁ ହୁଏ ।

ସ୍ୱାର୍ଥ ତ୍ୟାଗ ନକଲେ କୌଣସି ମହତ୍‌କାର୍ଯ୍ୟ ସାଧିତ ହୋଇପାରେ ନାହିଁ । ପ୍ରତ୍ୟେକ ମହତ କାର୍ଯ୍ୟ ମୂଳରେ ସ୍ୱାର୍ଥତ୍ୟାଗ ରୂପ ବୀଜ ଅନ୍ତର୍ନିହିତ ଥାଏ । କୃଷିକର, ବାଣିଜ୍ୟକର, ଶିଳ୍ପ ବ୍ୟବସାୟକର, ରାଜସେବାକର, ଲୋକୋପକାର, ଦେଶୋଦ୍ଧାରକର, ଗୃହସ୍ଥ ଧର୍ମକର, ବା ସନ୍ନ୍ୟାସକର, ଯଶଃ ସମ୍ପାଦନକର, ପୌରୁଷ ସାଧନକର, ମୋକ୍ଷ ଇଚ୍ଛାକର, ପ୍ରତ୍ୟେକ କାର୍ଯ୍ୟରେ ସ୍ୱାର୍ଥତ୍ୟାଗ ଆବଶ୍ୟକ ।

ଯେଉଁ ଚରମ ଉଦ୍ଦେଶ୍ୟ ଅଟେ ପରମସ୍ୱାର୍ଥ, ସେହି ଉଦ୍ଦେଶ୍ୟ ବା ପରମ ସ୍ୱାର୍ଥ ସାଧନ ନିମନ୍ତେ ଯେଉଁ ଉପାୟ ଅବଲମ୍ବନ କରିବାକୁ ହୁଏ ଏବଂ ଯେଉଁ ଉପାଦାନ ସଂଗ୍ରହ କରିବାକୁ ହୁଏ ତାହାକୁ ମଧ୍ୟ ସ୍ୱାର୍ଥ କୁହାଯାଏ । ଲୋକେ ଏହି ଶେଷୋକ୍ତ ସ୍ୱାର୍ଥକୁ ପ୍ରକୃତ ବା ପରମସ୍ୱାର୍ଥ ବୋଲି ଗ୍ରହଣ କରନ୍ତି ଏବଂ ପ୍ରକୃତ ସ୍ୱାର୍ଥକୁ ପରିତ୍ୟାଗ କରନ୍ତି । ଏମାନେ ଏହି ସ୍ୱାର୍ଥ ପ୍ରତି ଆସକ୍ତ ଥିବାରୁ ସ୍ୱାର୍ଥପର ବୋଲି ଲୋକଙ୍କରେ ନିନ୍ଦିତ ହୁଅନ୍ତି । ଗୋଟିଏ ଉଦାହରଣ

ଦେଖନ୍ତୁ—"ଧନ ଅର୍ଜିଲେ ଧର୍ମ କର, ଧର୍ମେ ପ୍ରାପତ ନିରନ୍ତର", କିନ୍ତୁ ନିରବଧି ଅନ୍ତକୁ ଦୃଷ୍ଟି ନଦେଇ କେବଳ ଧନ ପ୍ରତି ଆସକ୍ତ ହେବା ଲୋକଙ୍କୁ ସ୍ୱାର୍ଥପର କୁହାଯାଏ । ଯେହେତୁ ଏମାନେ ପ୍ରକୃତ ସ୍ୱାର୍ଥାନ୍ୱେଷୀ ନୁହନ୍ତି । ଏହିପରି ଦାରପରିଗ୍ରହ କରିବାକୁ ହୁଏ, ଦେବ ମନ୍ଦିର ସ୍ଥାପନ କରିବାକୁ ହୁଏ, ଶରୀର ରକ୍ଷା କରିବାକୁ ହୁଏ, ଗୃହ ନିର୍ମାଣ କରିବାକୁ ହୁଏ, ନାନାବିଧ ଉପାୟ କରି ଧନ ସମ୍ପାଦନ କରିବାକୁ ହୁଏ, ଅଧ୍ୟୟନ ଅଧ୍ୟାପନ କରିବାକୁ ହୁଏ, ଯୁଦ୍ଧ କରି ଜୟଲାଭ କରି ବୀରତ୍ୱ ଏବଂ ଶୌର୍ଯ୍ୟ ପ୍ରକାଶ କରିବାକୁ ହୁଏ, ନିୟମିତ ନିତ୍ୟକର୍ମ କରି ସଦାଚାରର ପରିଚୟ ଦେବାକୁ ହୁଏ ଇତ୍ୟାଦି । ଏହି ପ୍ରତ୍ୟେକ କର୍ମର ଚରମ ଉଦ୍ଦେଶ୍ୟ ଅଟେ ଲୋକ ହିତ ସାଧନ ଏବଂ ସେହି ଈଶ୍ୱର ପ୍ରାପ୍ତି । ଏହାହିଁ ପରମସ୍ୱାର୍ଥ । ଏହି ସ୍ୱାର୍ଥକୁ ପରିତ୍ୟାଗ କରି ଉପାୟରୂପୀ ସ୍ୱାର୍ଥକୁ ଆରାଧନା କରିବା କୁତ୍ସିତ ସ୍ୱାର୍ଥପରତା । ଲୋକର ସୃଷ୍ଟି ଓ ଅଭ୍ୟୁଦୟ ନିମିତ୍ତ ପ୍ରତିଷ୍ଠିତ ଗୃହସ୍ଥାଶ୍ରମ ଧର୍ମ ପାଳନରେ ପରସ୍ପର ସାହଚର୍ଯ୍ୟ କରିବା ପାଇଁ ଦାମ୍ପତ୍ୟର ବିଧାନ । ଏହି ଉଦ୍ଦେଶ୍ୟ ପ୍ରତି ଲକ୍ଷ ନ ରଖିଲେ ସ୍ୱର୍ଗୀୟ ଦାମ୍ପତ୍ୟ ନାରକୀୟ ଶାରୀରିକ ମିଳନରେ ପରିଣତ ଲାଭ କରେ, ଏବଂ ସ୍ତ୍ରୀ ପ୍ରତି ପାଶବିକ ଆସକ୍ତି ଜନ୍ମେ । ସେହିପରି ଧନ ଉପାର୍ଜନର ଉଦ୍ଦେଶ୍ୟ ଏହି ଯେ ତାହା ସତ୍କାର୍ଯ୍ୟରେ ବ୍ୟୟିତ ହେବ । ଯଦି ଏହି ଧନ ତ୍ୟାଗ କରି ନ ଯାଏ ତେବେ ତହିଁରେ ସ୍ୱାର୍ଥରକ୍ଷା ହୁଏନାହିଁ ।

ସ୍ୱାର୍ଥତ୍ୟାଗ ଦ୍ୱାରା ସ୍ୱାର୍ଥରକ୍ଷା ହୁଏ । ଆପଣାର ଧନ ଦ୍ୱାରା ପୁତ୍ର, ଗୃହ, ସମ୍ପତ୍ତି ଇତ୍ୟାଦି ପାର୍ଥିବ ବସ୍ତୁକୁ ପ୍ରତ୍ୟେକ ବ୍ୟକ୍ତି ଆପଣାର ସ୍ୱାର୍ଥ କହନ୍ତି । ସ୍ୱାର୍ଥତ୍ୟାଗ କହିଲେ ଏହି ସକଳ ପଦାର୍ଥ ଅନ୍ୟକୁ ଦେଇଦେବା ବା ଫିଙ୍ଗିଦେବା ନୁହେ, ଏହି ସକଳ ପଦାର୍ଥ ଦ୍ୱାରା ଯେଉଁ ସିଦ୍ଧିର ସାଧନା କରାଯାଏ, ତହିଁ ପ୍ରତି ଅନାସ୍ଥା ପ୍ରଦର୍ଶନ ପୂର୍ବକ ଉକ୍ତ ପଦାର୍ଥ ପ୍ରତି ଯେଉଁ ଅଯଥା ଆସକ୍ତି ଜନ୍ମିଥାଏ ତାହାହିଁ ସ୍ୱାର୍ଥପରତା । ଏହି ଆସକ୍ତି ତ୍ୟାଗକରିବାହିଁ ସ୍ୱାର୍ଥତ୍ୟାଗ । ଏହି ସ୍ୱାର୍ଥ ତ୍ୟାଗଦ୍ୱାରା ପ୍ରକୃତ ପରମ ସ୍ୱାର୍ଥ ପ୍ରତି ମନ ଆକୃଷ୍ଟ ହୁଏ । ଏବଂ ଜୀବନର ଲକ୍ଷ୍ୟ ସାଧିତ ହୁଏ । ଅତଏବ ସ୍ୱାର୍ଥତ୍ୟାଗ ଦ୍ୱାରା ସ୍ୱାର୍ଥରକ୍ଷା ହୁଏ ।



## ବିବେକାନନ୍ଦଙ୍କ ପତ୍ର

ସ୍ୱର୍ଗୀୟ ମହାତ୍ମା ସ୍ୱାମୀ ବିବେକାନନ୍ଦ ଜାପାନରେ ଅବସ୍ଥାନ କାଳରେ ତାଙ୍କର ମାନ୍ଦ୍ରାଜ ପ୍ରବାସୀ ଜଣେ ବନ୍ଧୁଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖିଥିଲେ । ଉକ୍ତ ପତ୍ରର ଉତ୍କଳାନୁବାଦ ନିମ୍ନରେ ପ୍ରଦତ୍ତ ହେଲା ।

ଜାପାନୀମାନଙ୍କ ବିଷୟରେ ମୋ ମନରେ ଯାହା ଅଛି ତାହା ଏହି କ୍ଷୁଦ୍ର ପତ୍ରରେ ଲେଖି ନପାରେ । ମୋହର ଏତିକି ମାତ୍ର ଅନୁରୋଧ ଯେ ଆମ୍ଭମାନଙ୍କ ମଧ୍ୟରୁ ଅନେକ ଯୁବକ ଯେଉଁ ମାନେ କି ଭାରତ ବର୍ଷକୁ ସକଳ ଉଚ୍ଚ ଏବଂ ଉତ୍କୃଷ୍ଟ ବିଷୟର ଆକର ବୋଲି ଭ୍ରାନ୍ତ ମତର ବଶବର୍ତ୍ତୀ ହୋଇଅଛନ୍ତି ପ୍ରତିବର୍ଷ ଥରେ ଜାପାନକୁ ଆସି ଜାପାନୀ ମାନଙ୍କୁ ଦେଖନ୍ତୁ । ତୁମ୍ଭେମାନେ କି ମନୁଷ୍ୟ ? ଜୀବନ ଯାକ ବୃଥାଳାପ କରି ବସି ଅଛ । ତୁମ୍ଭେମାନେ କଂସାର ଶିଳ୍ପପ୍ରିୟ ବାଲୁଆ ନୁହଁକି ? ଯେବେ ଏଠାକୁ ଆସି ଜାପାନୀମାନଙ୍କୁ ଦେଖିବ ତେବେ ଲଜ୍ଜାରେ ଆପଣା ମୁଖ ଲୁଚାଇ ରଖିବ । ତୁମ୍ଭେମାନେ ଅଳସ୍ୟ ପ୍ରଯୁକ୍ତ ଅକ୍ଷମ ହୋଇ ପଡ଼ିଲଣି, ତୁମେମାନେ ପଦାକୁ ଆସିଲେ ତୁମର ଜାତିଯିବ, ପ୍ରସ୍ତରିବତ୍ ଘନୀଭୂତ ଭ୍ରାନ୍ତବିଶ୍ୱାସର ଅନୁକ୍ଷଣ ବର୍ଦ୍ଧନଶୀଳ ଭାରରେ ସହସ୍ର ସଂଖ୍ୟକ ବର୍ଷ ହେଲା ପ୍ରପୀଡ଼ିତ ହୋଇ ପଡ଼ିଅଛ, କେଉଁ ଅନ୍ନ ସ୍ପର୍ଶଯୋଗ୍ୟ, କେଉଁ ଅନ୍ନ ଅସ୍ପୃଶ୍ୟ—ହଜାର ସଂଖ୍ୟକ ବର୍ଷ ହେଲା ଏହାର ମୀମାଂସା କରି ବସିଅଛ, ଚିରକାଳର ସାମାଜିକ ଦୌରାତ୍ମ୍ୟ ହେତୁ ମାନବୋଚିତ ଦୟା ଦାକ୍ଷିଣ୍ୟ ତୁମ ହୃଦୟରୁ ହରାଇ ବସିଅଛ । ତୁମେମାନେ କି ମନୁଷ୍ୟ ? ବର୍ତ୍ତମାନ ତୁମେମାନେ କଅଣ କରୁଅଛ ? ପୁସ୍ତକହସ୍ତ ହୋଇ ସମୁଦ୍ର ତୀରରେ ବୁଲି ବୁଲି ପାଶ୍ଚାତ୍ୟ ମସ୍ତିଷ୍କ ପ୍ରସୂତ ଇତସ୍ତତଃ ବିକ୍ଷିପ୍ତ ଭାବାଂଶ ନିଚୟକୁ ହୃଦୟଙ୍ଗମ କରି ନପାରି ଚର୍ବଣ କରୁଅଛ । କେବଳ ୩୦ ଟଙ୍କାର ମୋହରିର ବା ଗୁମାସ୍ତାଗିରି ଅଥବା ଉତ୍କୃଷ୍ଟ ପକ୍ଷେ ଓକିଲାତି ( ଯାହାକି ଆଜିକାଲି ଭାରତ ଯୁବକଙ୍କ ଉଚ୍ଚତମ ଲକ୍ଷ୍ୟ ) କରିବା ଆଶା ଉପରେ ତୁମ୍ଭମାନଙ୍କ ଆମ୍ଭସର୍ବସ୍ୱ ଏକାନ୍ତ ନିର୍ଭର କରୁଥାଏ । ପ୍ରତ୍ୟେକ ଯୁବକ ଆପଣା କ୍ଷୁଦ୍ର ସନ୍ତାନ ବୃନ୍ଦରେ ପରିବେଷ୍ଟିତ ହୋଇ ନିଜର ଆହାର ଅନ୍ୱେଷଣ କରୁଥାଏ । ସମୁଦ୍ରରେ ଝାସଦିଅ ନାହିଁ ? ତୁମେମାନେ ତୁମ୍ଭମାନଙ୍କର ପୁସ୍ତକ, ଉପାଧି ସୂଚକ ପରିଚ୍ଛଦ ଏବଂ ବିଶ୍ୱବିଦ୍ୟାଳୟର ପଦବୀ ପ୍ରଭୃତି ଆପଣାର ସର୍ବସ୍ୱ ଧରି ବୁଡ଼ି ମରୁନାହଁ, । ଭାରତ ଗର୍ତ୍ତାଭ୍ୟନ୍ତରରୁ ବାହାରକୁ ଆସ, ମାନବୋଚିତ କାର୍ଯ୍ୟ କର, ଅନ୍ୟାନ୍ୟ ଜାତିମାନେ ଦିନକୁ ଦିନ କିପରି ଉନ୍ନତି ପଥରେ ଉତ୍ତରୋତ୍ତର ଅଗ୍ରସର ହେଉଅଛନ୍ତି ଦେଖ । ତୁମ୍ଭେମାନେ ଯଦି ମାନବ ଜାତିର ପ୍ରେମ କର ପୁଣି ଆପଣା ଦେଶର ହିତାକାଙ୍କ୍ଷୀ ହୁଅ ତେବେ ଆସ ଉଚ୍ଚ ଏବଂ ଉପାଦେୟ ଲକ୍ଷ୍ୟର ଅନୁଧାବନ କରିବ, ପଶ୍ଚାତ୍‌ପଦ ହୁଅନାହିଁ । ପ୍ରିୟତମ ବନ୍ଧୁଙ୍କ ଶୋକମଧ୍ୟ ତୁମ୍ଭଂକୁ ପଶ୍ଚାତପଦ ନକରୁ । ପଛକୁ ନଚାହିଁ ତୁମ୍ଭେମାନେ ଅଗ୍ରସର ହୁଅ ।

## ପ୍ରତିଭା ଓ ଖିଆ ପିଆ ଜୀବନ

ପ୍ରତିଭାଶାଳୀ ବିଦ୍ୟାପ୍ରଦାୟକ ଦିନେ କୌଣସି ଶାସ୍ତ୍ର ସମାଲୋଚନା କରୁଥିଲେ । ଭୋଜନ ସମୟ ଉପସ୍ଥିତ ହେଲା । ତାଙ୍କ ମା ଆସି ତାଙ୍କୁ ଭୋଜନ କରିବାକୁ ଡାକିଲେ ।

ଶ୍ରୀହରାନେ ସେହିକ୍ଷଣି ଯାଇ ପାରିଲେ ନାହିଁ । ବିଳମ୍ବ ଦେଖି ପରେ ମାଆ ଡାକିବାକୁ ଆସିଲେ । ଦ୍ୱିତୀୟ ବାର ଡାକ ଦେଇ ମା ଗଲା ପରେ ପ୍ରହରାଜେ ଶାସ୍ତ୍ର ବିଚାରରୁ ଟିକିଏ ଅବସର ପାଇ ଭୋଜନ କରିବାକୁ ଉଠିଗଲେ, କିଛି କ୍ଷଣ ପରେ ଆସି ପୂର୍ବ ପରି ପୋଥି ଧରି ବସିଗଲେ । ତୃତୀୟବାର ମାଆ ଆସି ଡାକିଲା ବେଳେ କହିଲେ ଯେ, ସେ ଭୋଜନ କରିସାରି ଆସିଲେଣି । ମାଆ ଯାଇ ଦେଖିଲେ ଯେ, ଅନ୍ନ ପାଖରୁ ପୁଅ ଆଦୌ ଯାଇ ନାହାନ୍ତି, ଗୋଟିଏ ଥାଳରେ ମସ୍ତାକଟା ହୋଇ ଥୁଆ ହୋଇଥିଲା, ପ୍ରହରାଜେ ଅନ୍ନ ଭ୍ରମରେ ସେହି ମସ୍ତାତକ ଖାଇଦେଇ ଚାଲି ଆସି ଅଛନ୍ତି । ଶାସ୍ତ୍ର ସମାଲୋଚନା ବେଳେ ସେ ଏପରି ଏକାଗ୍ର ଚିତ୍ତ ଓ ଧ୍ୟାନନିମଗ୍ନ ରହୁଥିଲେ ଯେ, କ୍ଷୁଧା ତୃଷା ସବୁ ପାସୋରି ପକାଇ ଭାତ ଭ୍ରମରେ ମସ୍ତା ଖାଇଦେଇ ଥିଲେ । ଏହି ପ୍ରହରାଜେ ବସୁ ପ୍ରକ୍ରିଆ ବ୍ୟାକରଣର ପ୍ରଣେତା ଥିଲେ ଏବଂ ମୁକ୍ତି ମଣ୍ଡପ ସଭାରେ ପଣ୍ଡିତ ମଣ୍ଡଳଙ୍କ ଜିଣି ପ୍ରତିଷ୍ଠା ଲାଭ କରିଥିଲେ । ପ୍ରତିଭା ଓ ବିଳାସ ମଧ୍ୟରେ ସ୍ୱର୍ଗ ପାତାଳ ପ୍ରଭେଦ ।



## ଧର୍ମ ଧାରଣା ।

ବ୍ରହ୍ମା ଆପଣା ପାଦରୁ, ଗୋଡ଼ରୁ, ମୁଣ୍ଡରୁ ଶୂଦ୍ର, ବୈଶ୍ୟ, ବ୍ରାହ୍ମଣାଦି ଜାତିର ସୃଷ୍ଟି କରିଥିଲେ ! ପୁଣି ଶ୍ରୀକୃଷ୍ଣ ଗୁଣ କର୍ମ ଭେଦରେ ଜାତି ନିର୍ଣ୍ଣୟ କଲେ । ଏସବୁ ପୁରାକାଳ ପୁରାଣର କଥା, କିନ୍ତୁ ଆମର ଏହି କଳିଯୁଗରେ ଧନରୁ ଏବଂ କ୍ଷମତାରୁ ଜାତି ଜନ୍ମୁଅଛି । ରାଜାମାନେ ଅନୁଗ୍ରହ କଲେ ବାଉରି ମଧ୍ୟ କାଳକ୍ରମେ ବ୍ରାହ୍ମଣ ହୋଇପଡ଼େ ଏବଂ କମାର କରଣ ହୋଇଯାଏ ଇତ୍ୟାଦି । ସେଦିନ ଜଣେ ଭଣ୍ଡାରି କହୁଥିଲା " ଆମ ରଜା ଏମାନଙ୍କୁ ବଡ଼ିଆ କରିଦେଲେ, ବୁଢ଼ା ରଜା ଥିଲାବେଳେ ଏମାନେ ଗୃହଣିଙ୍କ ବାଡ଼ିରେ ଗୋବର ପାଣି ପକାଉଥିଲେ । ଏମାନେ ଥିଲେ ପୂର୍ବେ ବଢ଼େଇ, ଏବେ ହୋଇଗଲେ ବୈଶ୍ୟ । ଭଣ୍ଡାରିମାନେ ଆମଘରେ ନ ଖାଇଲେ ଆମେ କିପରି ବଡ଼ ଜାତି ହୋଇପାରିବା ବୋଲି ଏମାନେ ବସି ଚକ୍ରାନ୍ତ କଲେ, ସେତେବେଳେ ରାଜା ଡାକିନେଲେ, ଦଣ୍ଡଦେଲେ, ଭଣ୍ଡାରି ମାନଙ୍କୁ ଏମାନଙ୍କ ଘରେ ଖୁଆଇଦେଲେ । ରାଜାଙ୍କ ଭୟରୁ ଆମେମାନେ ସିନା ଏହାଙ୍କ ଘରେ ଖାଇଲୁ । ମାତ୍ର ଧର୍ମ କୁଆଡ଼େ ଯିବ ? ପାପର ଫଳ ଦେଖାଇ ଦେଲା । ଏମାନଙ୍କର ବାପା ବୁଢ଼ା ବାଇଆ ହୋଇଗଲେ, ଭୂଇଁ ଅଣ୍ଡାଳିଲେ, କଷ୍ଟ କୁଦିଲେ, ଏପରି ନାନା ହଇରାଣ ହୋଇଗଲେ । ଏବେ ମଧ୍ୟ ଏମାନଙ୍କ ଘରେ କିଏ ହେଲେ ଜଣେ ପାଗଳ ହୋଇଯାଉ ଅଛି । ଧର୍ମ କଣ ଧାନ ଶୁଖାଇବାକୁ ଆସିଅଛି ? ଭଣ୍ଡାରି ଗୁଡ଼ାକୁ ନେଇ ଲୋହର ଘଟର ଖୁଆଇଦେଲେ ଏବେ ସେହି ପାପର ଫଳ ପାଉ ଅଛନ୍ତି ।

ପାଠକେ, ବିଚାର କରି ଦେଖନ୍ତୁ, ଏହାହିଁ ହିନ୍ଦୁ ସାଧାରଣଙ୍କର ଧର୍ମ ଧାରଣା । ଲୋକଙ୍କ ମନରୁ ଏହି ଧର୍ମଧାରଣା, ଏହି କୁସଂସ୍କାର ଦୂରୀଭୂତ ନହେବା ପର୍ଯ୍ୟନ୍ତ ଭାରତ ଜାତିର ଉନ୍ନତି ସୁଦୂର ପରାହତ ।

## ବାନପ୍ରସ୍ଥାଶ୍ରମ ।

ଆଶ୍ରମ ବ୍ୟବସ୍ଥା ଆଜି କେବଳ ନାମରେ ଅଛି ବା ପୁସ୍ତକ ଗତ ହୋଇଅଛି । କୁସଂସ୍କାର ସଂକୁଳ ରକ୍ଷଣଶୀଳ ଦଳ ବର୍ଣ୍ଣାଶ୍ରମ ବୋଲି ଚିତ୍କାର କରନ୍ତି କିନ୍ତୁ ଏହି ମାନେହିଁ ବର୍ଣ୍ଣାଶ୍ରମର ସଂପୂର୍ଣ୍ଣ ବିରୁଦ୍ଧାଚରଣ କରନ୍ତି । ଯେଉଁ ମାନଙ୍କର ବାଲ୍ୟାବସ୍ଥାରେ ବ୍ରହ୍ମଚର୍ଯ୍ୟ ନାହିଁ ସେମାନଙ୍କର ପ୍ରକୃତ ଗାର୍ହସ୍ଥ୍ୟ ବା ବାନପ୍ରସ୍ଥାଶ୍ରମ କାହୁଁ ଆସିବ ? ଲୋକମାନେ, ଶିକ୍ଷିତ, ମୂର୍ଖ, ଧନୀ, ଦରିଦ୍ର, ବ୍ରାହ୍ମଣ, ଶୂଦ୍ର, ସମସ୍ତେ ବାଲ୍ୟହିଁ ଗୃହସ୍ଥ ହେବାକୁ ଚେଷ୍ଟା କରନ୍ତି । ସୁତରାଂ ପ୍ରକୃତ ଗୃହସ୍ଥ ହୋଇ ପାରନ୍ତି ନାହିଁ । ବ୍ରହ୍ମଚର୍ଯ୍ୟ ହେଉଛି ସମସ୍ତ ଆଶ୍ରମ ସକଳ ଧର୍ମର ମୂଳ ଭିତ୍ତି । ପୋତା ନଥିଲେ ଗୃହ ନିର୍ମାଣ କରାଯାଇ ପାରେନାହିଁ, ଯଦି କରାଯାଏ ତାହା ଦୃଢ ବା ଚିରସ୍ଥାୟୀ ହୋଇ ପାରେନାହିଁ । ଲୋକେ ଆଜୀବନ ଗୃହସ୍ଥାଶ୍ରମୀ ରହନ୍ତି, ଅତଏବ ବାନପ୍ରସ୍ଥ ବା ସନ୍ୟାସୀ ହେବା ଦୂରେଥାଉ ପ୍ରକୃତ ଗୃହସ୍ଥ ମଧ୍ୟ ହୋଇ ପାରନ୍ତି ନାହିଁ । ଗୃହସ୍ଥାଶ୍ରମ କରିସାରି କେହି ବାନପ୍ରସ୍ଥ ହେବା ଦେଖାଯାଉ ନାହିଁ । ସରକାର ବାହାଦୂର ୫୫ ବର୍ଷୀୟ ନିୟମ କରି ନଥିଲେ କେହି ହେଲେ ଚାକିରି ଛାଡ଼ିବାକୁ ଚାହାନ୍ତେ ନାହିଁ, ବୋଧହୁଏ, ଏକାନ୍ତ ବାର୍ଦ୍ଧକ୍ୟ ବା ଶ୍ମଶାନ ଯାତ୍ରା ପର୍ଯ୍ୟନ୍ତ, ପାରୁ ନପାରୁ, କେତେକ ପାରିତୋଷିକ, ଉନ୍ନତି ଇତ୍ୟାଦି ଆଶାରେ ଚାକିରି କରୁ ଥାନ୍ତେ । କେବଳ ବାନପ୍ରସ୍ଥାଶ୍ରମର ଛବିଧା ସଙ୍କାଶେ ପେନସନର ବ୍ୟବସ୍ଥା, କିନ୍ତୁ ପେନସନ ବୃତ୍ତିଭୋଗୀ ବୟୋବୃଦ୍ଧ କର୍ମଚାରୀମାନେ ମଧ୍ୟ ଅନ୍ୟାନ୍ୟ କିଛି ଗୋଟିଏ କ୍ଷୁଦ୍ର ବୃତ୍ତି ବା ଆଉ ନୌକରି କରି ଧନ ସମ୍ପାଦନ ପ୍ରୟାସ କରନ୍ତି । ଧର୍ମଚିନ୍ତା କାହାରନାହିଁ । ବାନପ୍ରସ୍ଥ କୋଟିକେ ଗୋଟିଏ ବା ଅତ୍ୟନ୍ତ ବିରଳ ।

## ସନ୍ନ୍ୟାସ ।

ସେଦିନ ଦୀପିକାରେ ଦେଖା ଗଲାନେ ଯାଜପୁର ଡ଼ିଭିଜନ ରାୟବାହାଦୁର ଦୟାନିଧି ଦାସଙ୍କ ଜ୍ୟେଷ୍ଠ ପୁତ୍ର ସନ୍ନ୍ୟାସ ଗ୍ରହଣ କରି ଗୃହ ତ୍ୟାଗ କରିଥିବା ହେତୁ ଦୁଃଖପ୍ରକାଶ

କଣ ଯାଉଅଛୁ । ସନ୍ୟାସଧର୍ମ ଅବଲମ୍ବନ କରିବା କ ଦୁଃଖର ବିଷୟ ? ଚାରି ଆଶ୍ରମ ମଧ୍ୟରେ ସର୍ବଶ୍ରେଷ୍ଠ ଆଶ୍ରମ ହେଉଅଛୁ ସନ୍ୟାସାଶ୍ରମ । ଆଶ୍ରମ ଧର୍ମର ପରିଣତି ସନ୍ୟାସ । ସବୁ ଆଶ୍ରମିମାନଙ୍କର ପରିଶେଷରେ ସନ୍ୟାସ ଧର୍ମ ଗ୍ରହଣ କରିବା କର୍ତ୍ତବ୍ୟ । ନିଜର ଆଧ୍ୟାତ୍ମିକ ସଦ୍‌ଗତି ଏବଂ ଜଗତର ଉପକାର ସକାଶେ ସନ୍ୟାସ ଧର୍ମ ଗ୍ରହଣ କରିବାକୁ ହୁଏ । ସଂଯମ, ସ୍ୱାର୍ଥତ୍ୟାଗ, ପରୋପକାର ଏବଂ ଅଧ୍ୟାତ୍ମ ଚିନ୍ତା-ଏହି ସକଳ ଗୁଣ କର୍ମର ସମନ୍ୱୟକୁ ସନ୍ୟାସ କୁହାଯାଏ । ଯାର ପୂର୍ବଭାଗ୍ୟ ଥାଏ ତା ପୁଅ ସନ୍ୟାସୀ ହୁଏ, ଏହି ଭାଗବତ ବାକ୍ୟ ସମସ୍ତଙ୍କର ଶିରୋଧାର୍ଯ୍ୟ । ବର୍ଣ୍ଣାଶ୍ରମ ଧର୍ମ ମୂଳଭିତ୍ତି ଉପରେ ହିନ୍ଦୁ କଥା ଛଡ଼, ମାନବ ଜାତି ସୁପ୍ରତିଷ୍ଠିତ ବୋଲିବାକୁ ହେବ । ରକ୍ଷଣଶୀଳ ହିନ୍ଦୁମାନେ ପ୍ରତି କଥାରେ ବର୍ଣ୍ଣାଶ୍ରମର ଦୋହି ଦେଇ ଧର୍ମ ଧ୍ୱଜା ଉଡ଼ାଉ ଥାନ୍ତି । ତଥାପି କାର୍ଯ୍ୟତଃ ସନ୍ୟାସ ଆଜି ବର୍ଜିତ କିମ୍ପା । ସ୍ମୃତି ପଣ୍ଡିତ କହନ୍ତି ଯେ କଳିରେ ସନ୍ୟାସ ବର୍ଜିତ, ସାହିତ୍ୟକାର ସନ୍ୟାସର ପକ୍ଷପାତୀ ନୁହନ୍ତି ପୁଣି ସମ୍ପାଦକ ମହାଶୟ ସନ୍ୟାସ କଥା ଶୁଣି ଦୁଃଖିତ । ସନ୍ୟାସ ଗ୍ରହଣରୁ କଳିକାଳ ଆସିଲା କିମ୍ବା କଳିକାଳ ଆସିଲାରୁ ସନ୍ୟାସ ଗଲା? ସନ୍ୟାସର ଅଭାବହିଁ କଳିଯୋଗ । ଆଶ୍ରମ କ୍ରମରେ ଲୋକେ ସନ୍ୟାସ ଗ୍ରହଣ କରୁଥିଲେ କଳିଯୁଗ କେବେ ଆସନ୍ତା ନାହିଁ, ସବୁକାଳେ ସତ୍ୟଯୁଗ ଚାଲିଥାନ୍ତା । ଏବେ ମଧ୍ୟ ବିଧିମତ ସନ୍ୟାସ ଗୃହୀତ ହେଲେ କଳିକାଳ କାହିଁ ପଳେଇଯିବ । ଯଦି କହିବ ଆଶ୍ରମ ସୋପାନ କ୍ରମେ ଉଠି ପରିଶେଷରେ ସନ୍ୟାସ ଗ୍ରହଣ କରିବାକୁ ହୁଏ ଏବଂ ବ୍ରହ୍ମଚର୍ଯ୍ୟାଦି ଆଶ୍ରମ ନିୟମ ପାଳନ ନକରି ସନ୍ୟାସ ଗ୍ରହଣ କରିବା ଦୁଃଖର ବିଷୟ, ଅବଶ୍ୟ ପୂର୍ବ ତିନି ଆଶ୍ରମ ସନ୍ୟାସ ଆଶ୍ରମର ସାଧନବିଶେଷ । ଏହି ସୋପାନ କ୍ରମରେ ନଉଠିଲେ ସନ୍ୟାସ ଅସାଧ୍ୟ ବା କଷ୍ଟସାଧ୍ୟ ହୁଏ । ସେଥିପାଇଁ କହୁଅଛୁଁ ଯେ, ଯାହାର ପୂର୍ବଭାଗ୍ୟ ବା ବାସନା ଥାଏ ସେହି କେବଳ ପ୍ରଥମରୁ ସନ୍ୟାସ ଗ୍ରହଣ କରିପାରେ । ତେବେ ଆଉ ଏଥିରେ ଦୁଃଖର ବିଷୟ କଣ ଅଛୁ ? କେହି ସନ୍ୟାସ ଗ୍ରହଣ କଲେ ବିଭାଭୁଆ, ବ୍ରତ ଉପବାସ, ଶ୍ରାଦ୍ଧ ଇତ୍ୟାଦିରୁ ଚାଉଳ ପଇସା, ଲୁଗା ପଟା, ଖଇ ଦହି, ପଣା ପାଣି, ଦାନ ଦକ୍ଷିଣା ଇତ୍ୟାଦି ଆଉ ମିଳିବ ନାହିଁ ବୋଲି ବ୍ରାହ୍ମଣନାମଧାରୀ ପୁରୋହିତ ପୂଜାରୀ, ଗୋସାଇଁ ଇତ୍ୟାଦି ଶ୍ରେଣୀସ୍ଥ ଲୋକେ ସନ୍ୟାସକୁ ବର୍ଜନ କରିଛନ୍ତି । ଏହାଙ୍କ ଶିକ୍ଷା ଦୀକ୍ଷା ପାଇ ଲୋକ ସାଧାରଣ ସନ୍ୟାସ ପ୍ରତି ଅଶ୍ରଦ୍ଧାବାନ ହେଉଅଛନ୍ତି ଏବଂ ସନ୍ୟାସୀର ଅନାଦର କରନ୍ତି । ଏହାକୁହିଁ କହି ବିନାଶ କାଳେ ବିପରୀତ ବୁଦ୍ଧି ।



## ମହନ୍ତ ଶ୍ରେଣୀ ।

ଆର୍ଯ୍ୟ ଜୀବନ ଚାରି ଆଶ୍ରମରେ ବିଭକ୍ତ ଯଥା, ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଏବଂ ସନ୍ୟାସ । ମହନ୍ତ ନାମରେ ଏକ ଶ୍ରେଣୀର ଲୋକ ଦେଖାଯାନ୍ତି, ଏମାନେ ବ୍ରହ୍ମଚର୍ଯ୍ୟ

ନୁହନ୍ତି, ବନସ୍ଥ ନୁହନ୍ତି କିମ୍ବା ସନ୍ନ୍ୟାସୀ ନୁହନ୍ତି। ଏମାନଙ୍କର ନିୟମ ନାହିଁ, ସଂଯମ ନାହିଁ ବିଦ୍ୟାଶିକ୍ଷା ନାହିଁ। ଅନେକେ ଗଣ୍ଡମୂର୍ଖ ଅତଏବ ଏମାନେ ବ୍ରହ୍ମଚାରୀ ନୁହନ୍ତି। ଏମାନେ ଗୃହସ୍ଥ ନୁହନ୍ତି ଯେହେତୁ ଏମାନେ ବିବାହ ହୁଅନ୍ତି ନାହିଁ। ଏମାନେ ବନସ୍ଥ ନୁହନ୍ତି, କାରଣ ଏମାନେ ମଠ ନାମରେ ପକ୍କାଗୃହରେ ଦ୍ୱିତଳ ତ୍ରିତଳ ଭବନରେ ନିବାସ କରନ୍ତି, ଖଟ ପଲଙ୍କରେ ଶୟନ କରନ୍ତି ପୁଣି ଯାନ ବାହାନ ଉପରେ ଭ୍ରମଣ କରନ୍ତି। ଏମାନେ ସନ୍ନ୍ୟାସୀ ନୁହନ୍ତି ଯେହେତୁ ଏମାନେ ଏକାନ୍ତ ଅର୍ଥପରାୟଣ, ଭୋଗ ବିଳାସରେ ଆସକ୍ତ, ମାମଲା ମୋକଦ୍ଦମାରେ ବ୍ୟାପୃତ, କୁଟ କପଟରେ ଜର୍ଜରିତ ଏବଂ ଆମିଷାଭିଳାଷରେ ଅଭ୍ୟସ୍ତ। ଏମାନେ ଅଟନ୍ତି କେବଳ ମହନ୍ତ। ଏହି ମହନ୍ତାଶ୍ରମ ଅଟେ ଏମାନଙ୍କର ମହତାଶ୍ରମ।

ସୃଷ୍ଟିକର୍ତ୍ତା ବ୍ରହ୍ମା ବ୍ରାହ୍ମଣାଦି ଚାରି ଜାତି ସୃଷ୍ଟି କରି ଥକି ଗଲେ। ସେ ଆଉ ପଞ୍ଚମ ଜାତିର ଗଠନ କରି ନ ଥିଲେ। ଏବେ କାଳକ୍ରମେ ଆଉ ଏକ ଜାତିର ସୃଷ୍ଟି ହେଲା। ଯେଉଁମାନେ ବ୍ରାହ୍ମଣାଦି ଚାରି ଜାତିରେ ଗୃହୀତ ହୁଅନ୍ତି ନାହିଁ ସେମାନଙ୍କୁ ପଞ୍ଚମ ଜାତି କୁହାଯାଉଅଛି। ଯେଉଁ ଅତିଶୂଦ୍ରମାନେ ଅବହମାନ କାଳରୁ ଉକ୍ତ ଜାତି ଚତୁଷ୍ଟୟ ସହିତ ମିଳି ଆସୁଥିଲେ ଏବେ ସେମାନେ ପଞ୍ଚମାଜାତି ନାମରେ ଅଭିହିତ। ସେହିପରି ଯେଉଁମାନେ ଉକ୍ତ ଆଶ୍ରମ ଚତୁଷ୍ଟୟରୁ ବହିର୍ଭୂତ ସେମାନଙ୍କୁ ମହନ୍ତାଶ୍ରମୀ କହିବା ଉଚିତ।

ଖଣ୍ଡିଏ ମଠ ପୁଣି ପୂଜା ସେବା ନାମରେ କିଛି ସମ୍ପତ୍ତି ପାଇଲେ ଅନେକେ ବୈଷ୍ଣବ, ବୈରାଗୀ, ବାବାଜୀ ବା ମହନ୍ତ ହୁଅନ୍ତି। ଏହି ଶ୍ରେଣୀର ମହନ୍ତମାନେ ସନ୍ନିହିତ କୌଣସି ଔରସପୁତ୍ରଙ୍କୁ ଆଣି ଅପଣାର ଚେଲା କରନ୍ତି। ଏହି ଜାତିର ମଠାଧ୍ୟକ୍ଷ ମହନ୍ତ ଜଣେ ସେ ଦିନ ଆସିଥିଲେ, ରେଜିଷ୍ଟ୍ରି ହାକିମଙ୍କୁ ଏହି କଥା କହୁଥିଲେ—ମହନ୍ତଙ୍କର ମଠ ଇଲାକାରେ ଗୋଟିଏ ଘର ଥିଲା। ସେହି ଘରେ ଏକ ବ୍ୟକ୍ତି ଅନେକ କାଳରୁ ନିବାସ କରିଅଛି, କିନ୍ତୁ ଘରଟା ମଠ ଇଲାକା ବୋଲି କୌଣସି ପଟାପତ୍ର ପ୍ରଭୃତି ନିଦର୍ଶନ ନାହିଁ। ମହନ୍ତଙ୍କର ଇଚ୍ଛା, ସେ ଲୋକକୁ ଯେ କୌଣସି ପ୍ରକାରେ ସେ ଘରୁ ବାହାର କରି ଉକ୍ତ ଘରଟା ମଠ ଇଲାକା କରିନେବେ। କିନ୍ତୁ ସେ ଲୋକ ଘର ଛାଡୁ ନାହିଁ, ସେଥିପାଇଁ ମହନ୍ତ ଏହି ଉପାୟ କରିଛନ୍ତି। ସେହି ଲୋକଠାରୁ ଉକ୍ତ ଗୃହର ହସ୍ତାନ୍ତର ପତ୍ର ମହନ୍ତ ଲେଖାଇ ନେବେ ପୁଣି ଉକ୍ତ ଗୃହ ବଦଳରେ ତାହା ନାମରେ ଅପଣାର ଅନ୍ୟ ଏକ ଗୃହର ହସ୍ତାନ୍ତର ପତ୍ର ଲେଖି ଦେଇବେ। ଉଭୟଙ୍କ ମଧ୍ୟରେ ଏହି ଚୁକ୍ତି ମାତ୍ର ହେବ। କିନ୍ତୁ ବାସ୍ତବିକ ମହନ୍ତ ତାହାଙ୍କୁ ଉକ୍ତ ଗୃହର ଭୋଗାନୁମତି ପତ୍ର ମାତ୍ର ଲେଖି ଦେବେ ଏବଂ ତାହାଠାରୁ ଏକ କବୁଲିୟତ ଲେଖି ରଖିବେ। ସେହି ଲୋକ ନିରକ୍ଷର ମୂର୍ଖ, ଦସ୍ତାବିଜ କଥା କିଛି ବୁଝି ପାରିବ ନାହିଁ। ଅତଏବ ମହନ୍ତଙ୍କର ହାକିମଙ୍କ ଠାରେ ଅନୁରୋଧ ଏହି ଯେ, ସେ ଉକ୍ତ ଲୋକକୁ ଦସ୍ତାବିଜର ବିଷୟ କିଛି ନ ପଢ଼ିଶୁଣି ଦସ୍ତାବିଜ ରେଜିଷ୍ଟ୍ରି କରି ଦେବେ। ଏହି ପାପ ପ୍ରବର୍ତ୍ତନାରେ ମହନ୍ତଙ୍କର ଧାର୍ମିକତା ଦେଖି ହାକିମ ବିସ୍ମୟାପନ୍ନ

ହୋଇ କହିଲେ ଯେ, ସେ ହେଉଛନ୍ତି ମହନ୍ତ, ଲୋକୋପକାର କରିବା ତାହାଙ୍କର ପ୍ରଧାନ କର୍ମ, ମିଥ୍ୟା କହି କୌଣସି ଲୋକର ଘାତ କରିବା ତାହାଙ୍କର ଧର୍ମ ନୁହେ। ପୁଣି ସେତେବେଳେ ହାକିମ ଉକ୍ତ ଲୋକକୁ ଡକାଇ ଆଣି ମହନ୍ତଙ୍କର ଦୁରଭିସନ୍ଧି ମହନ୍ତଙ୍କ ଆଗରେ ସେହି ଲୋକକୁ ଜଣାଇ ଦେଲେ ଏବଂ ମହନ୍ତଙ୍କୁ ତିରସ୍କାର ପୂର୍ବକ ଘଉଡ଼ି ଦେଲେ ।

ମହନ୍ତମାନେ ଅନେକ ଏହିଭଳି କାର୍ଯ୍ୟ କରିଥାନ୍ତି । ପ୍ରିୟ ପାଠକ ବର୍ଗ, ମହନ୍ତମାନେ କେଉଁ ଆଶ୍ରମବାସୀ ହୁଅନ୍ତି ଏହିପରି ଘଟନାବଳୀରୁ ସହଜ ଅନୁମାନ କରି ପାରିବେ ଏମାନେ ହିଁ ଗୃହ ଦଉଡ଼ି କଟା ପଞ୍ଚମାଶ୍ରମୀ ।

## ମହନ୍ତ ମହାରାଜ ।

ଯେଉଁମାନେ ଆଜୀବନ ବ୍ରହ୍ମଚାରୀ ଏବଂ ସୁଶିକ୍ଷିତ ସ୍ୱତନ୍ତ୍ରିତ ଥିଲେ, ଜଗତର ବିଷୟ ବାସନାରେ ଆସକ୍ତ ନ ଥିଲେ ପୁଣି ବ୍ରହ୍ମଚିନ୍ତନ ଓ ବିଦ୍ୟାଦାନ ଯେଉଁମାନଙ୍କର ପ୍ରଧାନ ବ୍ୟବସାୟ ଥିଲା ପୂର୍ବେ ସେମାନେ ମହାତ୍ମା ନାମରେ ପରିଚିତ ହେଉଥିଲେ । ଏହି ମହାତ୍ମାମାନଙ୍କର ପୁଣି ଏମାନଙ୍କ ଶିଷ୍ୟମାନଙ୍କର ଜୀବିକା ନିର୍ବାହ ସକାଶେ ତତ୍କାଳୀନ ଦାନଶୀଳ ରାଜାମାନେ ଅନେକ ଜମିବାଡ଼ି ଖଞ୍ଜି ଦେଇଥିଲେ । ବୋଧହୁଏ, ଉକ୍ତ ମହାତ୍ମା ଶବ୍ଦର ଅପଭ୍ରଂଶ ହୋଇ "ମହନ୍ତ" ଶବ୍ଦର ସୃଷ୍ଟି ହୋଇଅଛି । ଆଜି ମହନ୍ତମାନେ ଆଉ ଉକ୍ତ ମହାତ୍ମା ନୁହନ୍ତି । ଏମାନେ ସାଧାରଣ ଗୃହୀ ଅପେକ୍ଷା ଅଧିକ କାମୀ, ଲୋଭୀ ଏବଂ ରାଗୀ, ଏତେଦୂର ବିଷୟାକ୍ରାନ୍ତ ଯେ, ସର୍ବଦା କୌଣସି ମାମଲା ମକଦ୍ଦମାରେ ଲିପ୍ତ । ଏମାନେ 'ସାଧୁସନ୍ଥ' ମାନଙ୍କୁ ସଦାବର୍ତ୍ତ ଦେଇଥାନ୍ତି । ଏହି ସାଧୁସନ୍ଥମାନେ ଗଣ୍ଡମୂର୍ଖ ବିଭୂତି ବିଲେପିତ ଏବଂ ଲୌହଯଷ୍ଟି ହସ୍ତ । ଏମାନେ ବୈରାଗି ବୋଲି ପରିଚିତ, କିନ୍ତୁ ବୈରାଗ୍ୟ ହେତୁ ବୈରାଗୀ ନୁହନ୍ତି, ବିଶେଷରେ ରାଗଯୁକ୍ତ ହେବାରୁ ଏମାନେ ପ୍ରକୃତ-ବୈରାଗୀ । ଏହି ବୈରାଗୀମାନେ କାଳେ ରାଗିବେ ବୋଲି ଲୋକେ ବ୍ୟାଘ୍ର ଭଲ୍ଲୁକ ଅପେକ୍ଷା ଏମାନଙ୍କୁ ଅଧିକ ଭୟ କରି ଥାନ୍ତି । ଏହି ବୈଷ୍ଣବମାନେ ଦଳ ଦଳ ହୋଇ ଗ୍ରାମେ ୨ ବୁଲନ୍ତି, ହାତୀ, ଘୋଡ଼ା, ଓଟ ଅନେକ ସଙ୍ଗେ ନେଇ ଥାନ୍ତି । ବୈଷ୍ଣବ ଜମାତ ଆସିଲେ ଏମାନଙ୍କ ପଙ୍ଗତ ସକାଶେ ଗ୍ରାମବାସିମାନେ ତାହାଙ୍କର ଅନ୍ନ ସଂଗ୍ରହ କରି ଦେଇଥାନ୍ତି । ଧାନ କ୍ଷେତରେ ପଙ୍ଗପାଳ ଆସି ଯେପରି ପଡ଼ନ୍ତି, ଏହି ବୈଷ୍ଣବଗଣେ ଯାଇ ଗ୍ରାମବାସୀ ମାନଙ୍କଠାରେ ସେହିପରି ଅଳି କରନ୍ତି ପୁଣି ଯଥେଷ୍ଟ ଘିଅ, ଡ଼ାଲି, ଲୁଟି, ଉଦରସ୍ଥ କରି ଚାଲି ଯାଆନ୍ତି । ଏହି ଅଳସୁଆ, ଅକର୍ମଣ୍ୟ, ମୂର୍ଖ, ଏବଂ ରାଗାନ୍ଧ, "ସାଧୁ" ମାନଂକୁ ସଦାବର୍ତ୍ତ ଦେବାଲାଗି ମହନ୍ତମାନେ ଆପଣାଙ୍କୁ ତ୍ୟାଗୀ ଓ ଧାର୍ମିକ ବୋଲି ପରିଚୟ ଦେଇ ଥାନ୍ତି ! ଏହି ମହନ୍ତମାନେ ଆଜ୍ଞା

ଏକ ୨ ଭୋଗବିଳାସୀ ରାଜା ଜମିଦାର । ଭୋଗବିଳାସ ହିଁ ଏମାନଙ୍କର ଅଧ୍ୟୟନ ଓ ତପସ୍ୟା । ଏମାନଙ୍କର ମଧ୍ୟ ଗୋଟିଏ ୨ କ୍ଷୁଦ୍ର ରାଜ୍ୟ ଅଛି । ଏମାନେ ଘିଅ, ଦୁଧ, ଛେନା, ରୁଟି, ଖଜା ପେଠା ଖାଇ ଶରୀର ବଢ଼ାଇ ଥାନ୍ତି, ଯାନ ବାହନରେ ଗମନାଗମନ କରୁଥାନ୍ତି, ପଲଙ୍କୋପରି ଦୁଗ୍ଧଫେନ ନିଭ କୋମଳ ତୁଳିକା ଶଯ୍ୟାରେ ଦୋଳାୟିତ ଏବଂ ଦାସୀ ପୋଷକ ପରିବାରରେ ପରିବେଷ୍ଟିତ । ଏମାନେ ମଧ୍ୟ ଗୋଟିଏ ଗାଦିରେ ଅଭିଷିକ୍ତ ହୁଅନ୍ତି ପୁଣି ଯୋଗଣ ପହଡ଼ ପ୍ରଭୃତି ରାଜନୀତି କରିଥାନ୍ତି । କିନ୍ତୁ ପ୍ରଭେଦ ମାତ୍ର ଏତିକି, ଏମାନଙ୍କର କାଠି ଲାଗି, କର ପୈଠ ପ୍ରଭୃତି କେତେଗୋଟା ଅତିରିକ୍ତ ନୀତି ନ ଥାଏ ।

ଯେ କୌଣସି ପ୍ରକୃତ ବ୍ରହ୍ମଚାରୀ ଓ ପରମ ଯୋଗୀ ଆସି ଏହି ମହନ୍ତ ଗାଦିରେ ଅଭିଷିକ୍ତ ହେଲେ, ଏହି ବିଷୟ ବାସନା ଓ ସୁଖ ଲାଳସାରେ ଆବଦ୍ଧ ହେଲେ ସେ ଯେ କିଛି କାଳପରେ ଲକ୍ଷ୍ୟଭ୍ରଷ୍ଟ ହୋଇ ପଡ଼ିବେ ନାହିଁ ଏହା କିଏ କହି ପାରିବ ? ବ୍ରାହ୍ମଣମାନଙ୍କ ପରି ମହନ୍ତମାନେ ମଧ୍ୟ ଏକ ଜାତିରେ ଯୁକ୍ତ ହେଲେଣି । ବ୍ରାହ୍ମଣମାନେ ଜନ୍ମରୁ ବ୍ରାହ୍ମଣ କିନ୍ତୁ ମହନ୍ତମାନେ ପୋଷା ଜନ୍ମ । ସ୍ମୃତିକାରମାନେ ଆମ୍ଭମାନଙ୍କ ପାଇଁ ଯେଉଁ ବ୍ୟବସ୍ଥା କରି ଯାଇ ଅଛନ୍ତି, ଆଜି ଆମ୍ଭେମାନେ ଯେପରି ଦେଶ କାଳପାତ୍ର ଜ୍ଞାନ ନ କରି ତାହାର ଅପବ୍ୟବହାର କରୁଅଛୁଁ, ଏହି ମହନ୍ତମାନେ ମଧ୍ୟ ପୂର୍ବେ ରାଜାମାନେ ଦେଇଥିବା ସମ୍ପତ୍ତିର ସେହିପରି ଅପବ୍ୟବହାର କରୁଅଛନ୍ତି । ଏହି ମହନ୍ତମାନେ ଯେ ଦେଶର ଅନ୍ନ ଧ୍ୱଂସ କରୁଅଛନ୍ତି, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଏହି ମହନ୍ତ ମାନଙ୍କ ମଠବାଡ଼ି ସବୁ ଯଦି ଏକ ୨ ଚତୁଷ୍ପାଠୀରେ ପରିଣତ ହୁଅନ୍ତା, ବ୍ରହ୍ମଜ୍ଞାନ ବେତ୍ତା ବ୍ରହ୍ମଚାରୀମାନେ ଏହି ପାଠାଗାରର ଅଧ୍ୟାପକ ହୁଅନ୍ତେ ପୁଣି ଏହି ଗୁର୍ବାଶ୍ରମ ସଂକ୍ରାନ୍ତ ସକଳ ସମ୍ପତ୍ତି ଛାତ୍ର ମାନଙ୍କ ଜୀବନ ନିର୍ବାହ ଓ ସେମାନଙ୍କ ବିଦ୍ୟାଶିକ୍ଷାର ଆୟୋଜନରେ ବ୍ୟୟିତ ହୁଅନ୍ତା, ତାହାହେଲେ ଦେଶର ପ୍ରଭୂତ ଉପକାର ହୁଅନ୍ତା । ବୈଷ୍ଣବ ସମ୍ମିଳନରେ ଆଡ଼ମ୍ବର ମାତ୍ର ସାର, କିଛି ପ୍ରୟୋଜନ ନାହିଁ । "ବୈଷ୍ଣବ ସମିତି" ଏହାର ସୁବିଚାର କରି ଦେଖନ୍ତୁ ।



## ଅପତ୍ୟ ସ୍ନେହ

ହିନ୍ଦୁମାନଙ୍କ ମଧ୍ୟରେ ଅପତ୍ୟସ୍ନେହ ବେଶି ପରିମାଣରେ ଦେଖାଯାଏ । ବିବାହ କରି ସନ୍ତାନ ଉତ୍ପାଦନ କରିବା ମାନବ ଜାତିର ପ୍ରଧାନ ଧର୍ମ ବୋଲି ସର୍ବସାଧାରଣ ବୁଝିଥାନ୍ତି । ପୁତ୍ର ସନ୍ତାନ ପରମ ଆଦରର ବସ୍ତୁ ସ୍ୱରୂପ ଗୃହୀତ ହୁଏ । କିନ୍ତୁ କନ୍ୟା ଅନେକ ସମୟରେ ଘୃଣିତା ଓ ଲାଞ୍ଛିତା ହୁଏ । ପୁତ୍ର ଜନ୍ମହେଲେ ଗୃହରେ ମହୋତ୍ସବ, ଆନନ୍ଦ ଉଚ୍ଛ୍ୱାସରେ ସମସ୍ତେ ସ୍ଫୀତ ।

ବାଳକ ବାଳିକା ମଧ୍ୟରେ କୈବଲ୍ୟ କୁରହୁଏ ଅର୍ଥାତ୍ ମିଠାଇ ପଇସା ବଣ୍ଟନ କରାଯାଏ। କିନ୍ତୁ କନ୍ୟା ଜାତ ହେଲେ ବିଷାଦ କାଳିମାରେ ସମସ୍ତେ ଅବସନ୍ନ। ସମୟେ ସମୟେ କ୍ରନ୍ଦନ ଧ୍ୱନିରେ ଗୃହଟା ନିନାଦିତ ହୋଇଉଠେ ନତୁବା ଏତେଦୂର ଶୋକ ସନ୍ତାପ ନହେଲେହେଁ କାହାରି ମନରେ ଆନନ୍ଦ ନଥାଏ। ଯେଉଁ ସ୍ତ୍ରୀ ବନ୍ଧ୍ୟାହୁଏ ବା ପୁତ୍ରବତୀ ନହୁଏ ତାର ସମାଜରେ ତାହାର ସମ୍ମାନ ବଢେନାହିଁ ପୁଣି ଅନେକ ସମୟରେ ସେ ଲାଞ୍ଛନା ଭୋଗକରେ। ଯେଉଁ ପୁରୁଷର ପୁତ୍ର ସନ୍ତାନ ନଥାଏ ସେ ଅପୁତ୍ରିକ ବା ଅଣ୍ଟକୁଡ଼ା ବୋଲି ଲାଞ୍ଛିତ ହୁଏ ପୁଣି କେତେକ ଶୁଭକାର୍ଯ୍ୟରେ ଯୋଗ ଦେବାକୁ ଅର୍ହ ହୁଏ ନାହିଁ। ପୁତ୍ର କନ୍ୟା ଉତ୍ପାଦନରେ ଅସ୍ମମାନଙ୍କର ଅଧିକାର ନାହିଁ। " କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ " ତଥାପି ଏହି ସମାଜର ଅନ୍ଧ ନିୟମାନୁସାରେ ଅପୁତ୍ରିକ ଦମ୍ପତି ଦୁଃସହ ଲାଞ୍ଛନା ଭୋଗ କରନ୍ତି।

ପୁତ୍ର ପ୍ରୟୋଜନୀ ଭାର୍ଯ୍ୟା। ପୁତ୍ର ପିଣ୍ଡ ପ୍ରୟୋଜନ ବୋଲି କଥାଅଛି। ପୁତ୍ର ପିତାକୁ ପିଣ୍ଡ ପ୍ରଦାନ କରେ ପୁଣି ପୁନ୍ନାମ ନରକରୁ ତାହାଙ୍କୁ ଉଦ୍ଧାରକରେ। ଏହା ଛଡ଼ା ପୁତ୍ର ବଂଶ ରକ୍ଷା କରେ ଏବଂ ଜୀବନ ନିର୍ବାହରେ ପିତାର ସହାୟ ହୁଏ। ହିନ୍ଦୁ ପୁତ୍ରର ବିଶେଷତ୍ୱ ଏହିଯେ ସେ ପିଣ୍ଡ ପ୍ରଦାନକରେ ଏବଂ ପୁନ୍ନାମ ନରକରୁ ପିତାକୁ ଉଦ୍ଧାରକରେ। ଏଥିପାଇଁ ହିନ୍ଦୁମାନେ ପୁତ୍ର ପାଇଁ ଏକାନ୍ତ ପ୍ରୟାସୀ। ପୁତ୍ର ନିମନ୍ତେ ଅନେକେ ଆପଣାର ଧନ ଜୀବନ ସର୍ବସ୍ୱ ଦେଇ-ଦେବାକୁ ପ୍ରସ୍ତୁତ। ପୁତ୍ର ପ୍ରାପ୍ତି ନିମନ୍ତେ ଦେବ ମନ୍ଦିରରେ ନାନାବିଧ କର୍ମ କରାଯାଏ। ଏଥିରେ ବ୍ରାହ୍ମଣ ନାପ ମାନଙ୍କର ଗୃହପଇସା ରୋଜଗାର ହୁଏ। ଅନେକ ଦିଅଁ ଦେବତାଙ୍କୁ ପୂଜା ଆରାଧନା କରାଯାଏ ଏବଂ ପୁତ୍ରେଷ୍ଟି ଯାଗ କରାଯାଏ। ଏଥିରେ ଅଜସ୍ର ଧନ ବ୍ୟୟହୁଏ। ଏଣେ ସ୍ତ୍ରୀମାନେ ସ୍ୱାମୀଙ୍କ ଅଜ୍ଞାତସାରରେ ଅନେକେ ଲୋକଙ୍କୁ ମୁଠା ମୁଠା ପଇସା ଦିଅନ୍ତି, ପୁରୋହିତ, ଜ୍ୟୋତିଷିକ, ତାନ୍ତ୍ରିକ ଯେ ଯେପରି ଠକି ନେଇପାରନ୍ତି। ପୁଣି ଅନେକ ସ୍ତ୍ରୀ ଏଣୁ ତେଣୁ ଚେର ମୂଳି ଖାଇ ପେଟ ଭରଣ କରନ୍ତି। ହିନ୍ଦୁ ସାଧାରଣ ଏତେ ଦୂର ସନ୍ତାନାଭିଳାଷି ଯେ, ଗ୍ରାମ ମାନଙ୍କରେ ଦେଖିବ ଅନେକେ ଆପଣାର କଅଁଳା ପିଲାଙ୍କମାନଙ୍କୁ କାଖରେ ଘେନି ବୁଲୁ-ଥିବେ। ଗ୍ରାମର କୌଣସି ସ୍ଥାନକୁ ଗଲାବେଳେ ଏବଂ ପୁରାଣ ଶୁଣିବାକୁ ଗଲାବେଳେ ମଧ୍ୟ ପିଲାଙ୍କମାନଙ୍କୁ କାଖରେ ଘେନି ଯାଇଥିବେ। ଦୁଇ ପିଲା ଯଦି ଖୁପୁରୁ ଖୁପୁରୁ ହୁଅନ୍ତି ତେବେ ସେମାନଙ୍କ ପିତା ମାତା ମାନଙ୍କ ମଧ୍ୟରେ ଭୁମୁଲ ମାରପିଟ ପର୍ଯ୍ୟନ୍ତ ଚାଲିଯାଏ। ଏହିପରି ଶିଶୁ ମାନଙ୍କ, ହେତୁ ଗୃହସ୍ଥ ମାନଙ୍କ ମଧ୍ୟରେ କଳହ ଏବଂ ଅଶାନ୍ତି ଜାତହୁଏ।

କୌଣସି ବସ୍ତୁ ପ୍ରତି ଯେତେ ଅଧିକ ଆସକ୍ତି ହୁଏ ଉକ୍ତ ବସ୍ତୁ ହେତୁ ତେତେ ଅଧିକ ଦୁଃଖ ଏବଂ ଅଶାନ୍ତି ଭୋଗକରିବାକୁ ହୁଏ। ଏହି ଅତିରିକ୍ତ ଅପତ୍ୟସ୍ନେହ ହେତୁ ହିନ୍ଦୁ ସାଧାରଣ ବ୍ରହ୍ମଚର୍ଯ୍ୟ ପରିତ୍ୟାଗ କରି ବାଲ୍ୟଦନୁ ବିବାହ କରନ୍ତି ଏବଂ ସନ୍ତାନ ନିମନ୍ତେ ସର୍ବଦା ଅଧୀର ରହନ୍ତି। ନାତି ନାତୁଣୀ ଦେଖିବାକୁ ପିତାମାତା ଉତ୍କଣ୍ଠିତ। ଯେଉଁମାନେ ପଣନାତି, ଅଣନାତି ପର୍ଯ୍ୟନ୍ତ ଦେଖି ପାରନ୍ତି ସେମାନେ ସ୍ୱର୍ଗଲାଭ କରନ୍ତି ବୋଲି ଅନେକଙ୍କର ବିଶ୍ୱାସ।

ଏହି ପୁତ୍ରପ୍ରିୟ ହିନ୍ଦୁ ସାଧାରଣଙ୍କର ଅତିରିକ୍ତ ଅପତ୍ୟାସକ୍ତି ସେମାନଙ୍କୁ ହୀନବଳ, କ୍ଷୀଣବୀର୍ଯ୍ୟ, ଅଳ୍ପାୟୁ କରିପକାଏ । ସୁତରାଂ ଏମାନେ ଦେଶ ହିତକର ମହତ୍ କାର୍ଯ୍ୟ ସାଧନରେ ଅପାରଗ ହୁଅନ୍ତି ।

ଏହି ସନ୍ତାନ ପ୍ରିୟତାର ସୀମା ଏବଂ କର୍ତ୍ତବ୍ୟତା ଅଛି । ପ୍ରତ୍ୟେକ କର୍ତ୍ତବ୍ୟ ପରାୟଣ ବ୍ୟକ୍ତି ଉଦାରଚରିତ ପୁଣି ଦେଶ ହିତୈଷୀ ହେବା ଉଚିତ । ଆପଣାର ଦେଶହିତ ଚିକୀର୍ଷା ସଫଳ କରିବା ନିମନ୍ତେ ଏବଂ ନିଜର ଉଚ୍ଚ ଓ ଉଦାର ଭାବନାଚୟ ଜଗତରେ ପ୍ରଚାର କରିବା ନିମନ୍ତେ ଆତ୍ମାର ପ୍ରତିକୃତି ଅର୍ଥାତ୍ ଆତ୍ମବତ୍ ପୁତ୍ର ଜାତ କରିବା କର୍ତ୍ତବ୍ୟ । କିନ୍ତୁ ଆଜି ଜଗତ ପାଇଁ କିଏ ପୁତ୍ର ଜାତ କରୁଅଛି ? ପୁଅ ଜନ୍ମହେଲେ ବାପାଙ୍କୁ ପୋଷିବ, ଧନ ସଂଗ୍ରହ କରି ଆଣି ଘରେ ରଖିବ, ପୁଣି ସେଥିରେ ପୁତ୍ର ଜାତକରି ଆପଣା ବଂଶ ରକ୍ଷା କରିବ । ଏହି କୁତ୍ସିତ ସଙ୍କୀର୍ଣ୍ଣ ସ୍ୱାର୍ଥ ଘେନି ଚିନ୍ତା ବିହୀନ ଆତ୍ମମ୍ଭରିମାନେ ପାରମ୍ପର୍ଯ୍ୟ ସ୍ରୋତରେ ଭାସମାନ ହୋଇ ପୁତ୍ର ଇଚ୍ଛାକରନ୍ତି । ଜଗତରେ ଲୋକସଂଖ୍ୟା ବୃଦ୍ଧି ଲାଭ କରି ଦେଶରେ ଦାରିଦ୍ର୍ୟର ମାତ୍ରା ବଢ଼ୁଥିବା ବେଳେ ଏପରି ପୁତ୍ର ଜାତ କରିବା କେବଳ ପାପ ସଞ୍ଚୟର କଥା । ପରାଶର ପ୍ରଭୃତି ମହାତ୍ମାମାନେ ଲୋକହିତ ଉଦ୍ଦେଶ୍ୟରେ ପୁତ୍ର ସମ୍ପାଦନ କରିଥାନ୍ତି । ପରାଶର ମହର୍ଷି ଯମୁନା ନଦୀ ପାର ହୋଉଥିଲେ, ସେତେବେଳେ କୈବର୍ତ୍ତର ଏକ ବାଳିକା କନ୍ୟା ନାଆ ବାହୁଥିଲା । ମହର୍ଷି ଉକ୍ତ ଶିଶୁ କନ୍ୟାର ସମ୍ଭୋଗ ଇଚ୍ଛାକଲେ, ତାହାକୁ ଯୌବନାବସ୍ଥା ପ୍ରଦାନ କରି ତାହା ଗର୍ଭରେ ବୀର୍ଯ୍ୟ ସ୍ଖଳନ କଲେ । ମହର୍ଷିଙ୍କ ପ୍ରସାଦରୁ ସେହି ଯୋଜନଗନ୍ଧା କନ୍ୟା ବେଦବ୍ୟାସଙ୍କୁ ଜନ୍ମକରି ଜଗତରେ ସୁଖ୍ୟାତି ଲାଭକଲେ । ଏହି ପୌରାଣିକ ଘଟନାରୁ କେଉଁ ଶିକ୍ଷା ପ୍ରାପ୍ତ ହୁଏ ପାଠକମାନେ ବିଚାର କରି ଦେଖନ୍ତୁ । ମହର୍ଷି ପାଶବ ବୃତ୍ତି ପରିଚାଳିତ କାମାନ୍ଧ ହୋଇ କୈବର୍ତ୍ତ କନ୍ୟାଠାରେ ଇନ୍ଦ୍ରିୟ ସେବା କରିଥିଲେ, ଏହା ନୁହେଁ, କେବଳ ଲୋକ ହିତ ଇଚ୍ଛାକରି ଆତ୍ମବତ୍ ପୁତ୍ର ସମ୍ପାଦନ କରିବା ଉଦ୍ଦେଶ୍ୟ କରିଥିଲେ । ସେହି ବ୍ରହ୍ମବେତ୍ତା ଋଷିଙ୍କ ମନରେ ସେତେବେଳେ ଯେଉଁ ବିମଳ ଜ୍ଞାନ ସଂଜାତ ହୋଇଥିଲା ତାହା ଲୋକରେ ପ୍ରଚାର କରିବା ନିମନ୍ତେ ପୁତ୍ରଜାତ କରିବା ପାଇଁ ଋଷିଙ୍କର ଅଭିଳାଷ ବଳଥିଲା, ବୋଧହୁଏ, ମାନବର କୌଣସି ଗୁଣାଧିକ୍ୟ ଓ ଜ୍ଞାନର ପ୍ରାଦୁର୍ଭାବ ଥିବାବେଳେ ଯେଉଁ ବୀର୍ଯ୍ୟର ଉତ୍ପତ୍ତି ହୁଏ ତାହା ସାଧାରଣତଃ ଉକ୍ତ ଗୁଣ ଜ୍ଞାନ ଗର୍ଭିତ ହୋଇଥାଏ । ତତ୍କାଳୀନ ବୀର୍ଯ୍ୟର ଯଥା ବିହିତ ସ୍ଖଳନ ଦ୍ୱାରା ଉକ୍ତ ଗୁଣ ଜ୍ଞାନ ସମ୍ପନ୍ନ ସନ୍ତାନ ଉତ୍ପନ୍ନ ହୋଇଥାଏ, ଯେହେତୁ ମନର ଗୁଣାଂଶପୁଞ୍ଜ ରକ୍ତ, ମାଂସ, ମେଦ, ବୀର୍ଯ୍ୟ ପ୍ରଭୃତି ଶାରୀରିକ ଉପାଦାନରେ ସୂକ୍ଷ୍ମରୂପେ ପ୍ରତିବିମ୍ବିତ ହୋଇଥାଏ । ପୁଣି ଏକ ପିତା ଔରସରୁ ବିଭିନ୍ନ ଗୁଣ ବିଶିଷ୍ଟ ପୁତ୍ରକନ୍ୟା ଜାତହୁଅନ୍ତି, ଯେହେତୁ ବିଭିନ୍ନ ସମୟରେ ଜାତ ସନ୍ତାନଗଣ ବିଭିନ୍ନ ଗୁଣ ସମ୍ପନ୍ନ । ଏଥିପାଇଁ ଜ୍ୟୋତିଷରେ ଚୋର ଲଗ୍ନରେ ଜନ୍ମ ବୋଲି ଏକ କଥା ଅଛି । ଏହି ଲଗ୍ନରେ ପୁଣି ଯେଉଁମାନେ ଜନ୍ମ ଗ୍ରହଣ କରନ୍ତି ସେମାନେ

ସ୍ୱଭାବତଃ ଶୈର୍ଯ୍ୟାଭିଳାଷୀ । ଏହିସକଳ କଥାର ମର୍ମ ଏହିଯେ, ବୀର୍ଯ୍ୟର ଉତ୍ପତ୍ତି ଓ ସ୍ଖଳନ ବେଳେ ମନୁଷ୍ୟ ଯେଉଁଭାବ ପ୍ରଯୁକ୍ତ ହୋଇଥାଏ ଇନ୍ଦ୍ରିୟ ସେବାର ଫଳ ସ୍ୱରୂପ ସନ୍ତାନର ସେହିଭାବ ପ୍ରତି ସ୍ୱାଭାବିକ ପ୍ରବଣତା ବଢ଼ିଥାଏ ।

ଇନ୍ଦ୍ରିୟ ସେବାଟା ଗୋଟିଏ ବ୍ୟକ୍ତିଗତ ପ୍ରମୋଦଜନକ ବ୍ୟାପାର ହେଲେହେଁ ତାହାର ସଦ୍‌ବ୍ୟବହାର ଯେପରି ସୁଫଳପ୍ରଦ ଅପବ୍ୟବହାର ସେହିପରି ପ୍ରମାଦଜନକ । ଏହି ଅସଦ୍‌ବ୍ୟବହାର ବିଶେଷ ଭାବରେ ବ୍ୟଭିଚାର ରୂପେ ବର୍ଣ୍ଣିତହୁଏ । ଧନର ଯଦି ସଦ୍‌ବିନିଯୋଗ ହୁଏ ନାହିଁ ତେବେ ଉକ୍ତ ଧନ ଅଜାଗଳ ସ୍ତନନ୍ୟାୟ ନିରର୍ଥକ ନହୁବା ମଦ ବହୁଳିତ ବ୍ୟକ୍ତିର ହସ୍ତଗତ ଅସିସ୍ୱରୂପ ଅନିଷ୍ଟଜନକ । ଏଣୁ ଧନ ଦେଇ ଧନୀ ବୋଲାଇବା ଅପେକ୍ଷା ମହାନ୍ ଦରିଦ୍ର ରହିବା ଶ୍ରେୟସ୍କର । ସେହିପରି କେହି ବ୍ୟକ୍ତି ବୀର୍ଯ୍ୟର ସଦ୍‌ବିନିଯୋଗ ନକରି ବୀର୍ଯ୍ୟବାନ ବୋଲାଇବେ, ଏହା ସମୁଚିତ ହୋଇ ନପାରେ । ସ୍ତ୍ରୈଣ ଏବଂ ଲମ୍ପଟ ବ୍ୟକ୍ତିମାନେ ଏହାର ଅପବ୍ୟବହାର କରି ପଦେ ପଦେ ଆପଦ ଭୋଗକରନ୍ତି ଏବଂ ଯେଉଁମାନେ ତାହାର ସଦ୍‌ବିନିଯୋଗ କରନ୍ତି, ସେମାନେ ନିଜର ଏବଂ ଦେଶର ଅନେକ ହିତ ସାଧନ କରିଥାନ୍ତି ।

କୌଣସି ଧର୍ମ ସଂପ୍ରଦାୟିମାନେ ବୀର୍ଯ୍ୟକୁ ବ୍ରହ୍ମ ବୋଲି ମନେକରି ବିଶେଷ ପୂଜା ପ୍ରଭୃତି ଗୋପନୀୟ କର୍ମ କାଣ୍ଡର ଉଦ୍‌ଭାବନ କରିଥାନ୍ତି, କିନ୍ତୁ ସେ ତାହା ନୁହେଁ, ବୀର୍ଯ୍ୟକୁ ପ୍ରକୃତ ବୁଝିବାକୁ ହେଲେ ତାହାଏକ ବ୍ରହ୍ମ ପଦାର୍ଥ ସତ୍ୟ, ଯେହେତୁ ଏହି ବୀର୍ଯ୍ୟରୁ ବ୍ରହ୍ମରୂପୀ ଜୀବର ଉତ୍ପତ୍ତି ହୁଏ । ବେଦବ୍ୟାସ ପରି ବ୍ରହ୍ମବେତ୍ତା, ଅର୍ଜୁନ ପରି ଯୋଦ୍ଧା, କର୍ଣ୍ଣ ପରି ଦାତା ଏବଂ ରାମଚନ୍ଦ୍ରଙ୍କ ପରି ରାଜାମାନେ ଏହି ବୀର୍ଯ୍ୟରୁ ଜନ୍ମ ଗ୍ରହଣ କରି ଏହି ଜଗତର ଅଶେଷ ଉପକାର ସାଧନ କରିଯାଇ ଅଛନ୍ତି । ଏହି ବୀର୍ଯ୍ୟରୂପୀ ବ୍ରହ୍ମର ସୁରକ୍ଷା ନିମନ୍ତେ ବ୍ରହ୍ମଚର୍ଯ୍ୟ ବିଧାନର ସୃଷ୍ଟି ହୋଇଅଛି । ବ୍ରହ୍ମଚର୍ଯ୍ୟ ବିଧି ପାଳନ ପୂର୍ବକ ଯେଉଁ ବୀର୍ଯ୍ୟ ସୁରକ୍ଷିତ ଥାଏ ତାହାର ଯଥାବିଧି ବ୍ୟବହାର କଲେ ଅବଶ୍ୟ ସୁସନ୍ତାନ ଜାତ ହୁଅନ୍ତି । ଏମାନେ ସମାଜର, ଜାତିର, ତଥା ଦେଶର ମୁଖୋଜ୍ଜ୍ୱଳ କରନ୍ତି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏହି ବ୍ରହ୍ମ ପଦାର୍ଥର ଅପବ୍ୟବହାର ବା ଅପଚୟ କରିଦେଲେ ଅନେକ ଅନିଷ୍ଟ ସଂପାଦିତ ହୁଏ, ଯଥା ଗର୍ଭପାତ ହୁଏ, ଦୁର୍ବଳକାୟ, ବିକଳାଙ୍ଗ ଏବଂ କ୍ଷୀଣକାୟ ସନ୍ତାନ ଜାତ ହୁଅନ୍ତି ପୁଣି ଅନେକ ଦୁଷ୍ଟ, ଦୁର୍ଜନ, ଦୁରାତ୍ମା ଜନ୍ମଗ୍ରହଣ କରି ଲୋକର ଅପକାର ସାଧନ କରନ୍ତି । ଏହି ପରମ ପବିତ୍ର ପଦାର୍ଥର ଅପବ୍ୟବହାର ବା ଅପଚୟ ଦ୍ୱାରା ନିଜର କ୍ଷତି ସାଧିତ ହୁଏ, ନାନାବିଧ ରୋଗ ସଂଜାତ ହୋଇ ଶରୀର ଏବଂ ମନର ଦୌର୍ବଲ୍ୟ ଉତ୍ପାଦନ କରେ । ସୁତରାଂ କାର୍ଯ୍ୟ କ୍ଷେତ୍ରରେ ଏହି ହୀନବୀର୍ଯ୍ୟ ବ୍ୟକ୍ତିମାନେ ଏକାନ୍ତ ଅକର୍ମଣ୍ୟ ହୋଇରହନ୍ତି ।



# ଜ୍ଞାତି ବା ବନ୍ଧୁମାନଙ୍କ ମଧ୍ୟରେ ଭୋଜନ ସମ୍ବନ୍ଧ

ଜ୍ଞାତି ଓ ବନ୍ଧୁମାନେ ରକ୍ତସମ୍ବନ୍ଧୀ ଅଟନ୍ତି । ରକ୍ତ ସମ୍ବନ୍ଧ ବିଷୟରେ ବନ୍ଧୁ ଓ ଜ୍ଞାତି ମଧ୍ୟରେ ନ୍ୟୂନାଧିକ୍ୟ ଦେଖା ଯାଏନାହିଁ । ସ୍ତ୍ରୀ ଅପେକ୍ଷା ପୁରୁଷର ଅଧିକ ରକ୍ତ ସମ୍ବନ୍ଧ ଥିବା କୌଣସି କାରଣ ଦିଶୁ ନାହିଁ । ପୁରୁଷ ଯେପରି ଅନ୍ୟ ଏକ ସ୍ତ୍ରୀ ସହିତ ସମ୍ବନ୍ଧ କରେ, କନ୍ୟା ତଦ୍ରୂପ ଅନ୍ୟ ଏକ ପୁରୁଷ ସହିତ ସମ୍ପର୍କ ରଖେ । ଯଦ୍ୟପି ମାନବ ଜୀବନ ଗଠନରେ ରକ୍ତର ଗୁଣ ଲକ୍ଷିତ ହୁଏ ତେବେ ସ୍ତ୍ରୀ ରକ୍ତର ଗୁଣାନୁସାରେ ସ୍ତ୍ରୀ ଜୀବନ ଗଠିତ ଓ ପୁରୁଷର ରକ୍ତର ଗୁଣାନୁସାରେ ପୁରୁଷ ଜୀବନ ଅନୁପ୍ରାଣିତ ହୋଇଥାଏ । ପୁଣି ପ୍ରାଣୀସୃଷ୍ଟିରେ ପୁରୁଷ ଓ ସ୍ତ୍ରୀର ସମାନ ଅଧିକାର ଓ ସମାନ ସମ୍ବନ୍ଧ ଥାଏ, ତେବେ ପୁତ୍ରର ସନ୍ତାନମାନେ କିହେତୁ ସ୍ତ୍ରୀର ସନ୍ତତି ମାନଙ୍କ ଅପେକ୍ଷା ଅଧିକ ସମ୍ବନ୍ଧୀଭୂତ ହୋଇ ଜ୍ଞାତି ବୋଲାଇବେ ? କିନ୍ତୁ ସାମାଜିକ ଜୀବନ ଲକ୍ଷ୍ୟମାନୁସାରେ ସ୍ତ୍ରୀ ସମ୍ବନ୍ଧ ଅପେକ୍ଷା ପୁରୁଷ ସମ୍ବନ୍ଧର ବେଶି ପ୍ରୟୋଜନ ଦେଖାଯାଏ । ସୁତରାଂ ପୁରୁଷ ସମ୍ବନ୍ଧଜାତ ସନ୍ତାନ ଜ୍ଞାତିବୋଲି ବିବେଚିତ ହୁଅନ୍ତି । ବୈବାହିକ ପଦ୍ଧତି ଓ ଗୃହସ୍ଥ ଧର୍ମ ସ୍ୱତ ଏହି ଜ୍ଞାତି ସମ୍ବନ୍ଧର ବିଶେଷତ୍ୱ ସମ୍ପାଦନ କରିଅଛି ।

ଏହି ସମ୍ବନ୍ଧ ଯେପରି ହେଉ, ସମ୍ପଦରେ ଓ ବିପଦରେ ପରସ୍ପର ସହାୟ ଓ ସହଭାଗୀ ହେବାରୁ ଲୋକେ ପରସ୍ପର ଜ୍ଞାତି,ବନ୍ଧୁ,ମିତ୍ର ବା ସ୍ନେହର ପାତ୍ର ବୋଲି ସୂଚିତ ହୁଅନ୍ତି । ଏହି ବନ୍ଧୁତା ଜ୍ଞାତି ସମ୍ବନ୍ଧର ଉତ୍ତରୋତ୍ତର ଘନିଷ୍ଠତା ସଂସ୍ଥାପନ ସକାଶେ ଭୋଜନ ସମ୍ବନ୍ଧ ରଖାଯାଏ, ଅବା ଏହି ଜ୍ଞାତି ବା ବନ୍ଧୁ ସମ୍ବନ୍ଧ ହେତୁରୁ ଅବା ତହିଁର ଏକଫଳ ସ୍ୱରୂପ ଭୋଜନ ପାନ ସମ୍ବନ୍ଧ ରଖାଯାଏ ? ଭୋଜନହେତୁ ବନ୍ଧୁତାଜନ୍ମେ,ଏଥାନୁହେ । କିନ୍ତୁ ବନ୍ଧୁତା ଯୋଗୁଁ ଭୋଜନ ସମ୍ବନ୍ଧ ଘଟିଥାଏ । ଦୁର୍ଦ୍ଦୈବବଶତଃ ଆମ୍ଭେମାନେ ଜାତି ପିଶାଚର କ୍ରୂର କବଳରେ ପଡ଼ି ବିବେକ ଶୂନ୍ୟ ଓ ଲକ୍ଷ୍ୟଭ୍ରଷ୍ଟ ହୋଇ ପଡ଼ିଅଛୁଁ । ଖାଇବା ପିଇବାରେ ଆମମାନଙ୍କର ଜାତିଥାଏ । ଏହିଜାତି ଆମ୍ଭମାନଙ୍କର ଜୀବନ ସର୍ବସ୍ୱ । ଏହି କାରଣରୁ ପରସ୍ପର ପ୍ରତି ଆତତାୟୀ ସ୍ୱରୂପ ବ୍ୟବହାର କଲେହେଁ ଆମ୍ଭେମାନେ ବନ୍ଧୁତା ସୂତ୍ରରେ ପରସ୍ପର ଘରେ ଭୋଜନ ପାନ କରିବାକୁ ବାଧ୍ୟ ହୋଇ ଥାଉଁ । ପରସ୍ପର ଘରେ ଭୋଜନ କରିବା ଯେରୂପ ଏକଜାତିର ପରିଚୟ ଦିଏ ତଦ୍ରୂପ ଭୋଜନାଭାବ ବନ୍ଧୁତା ରହିତ କରି ଦେଇଥାଏ । ଯଦି କୌଣସିବ୍ୟକ୍ତି ଆଗନ୍ତୁକ ରୂପେ ଉପସ୍ଥିତ ହୋଇ ଆପଣାର ଜ୍ଞାତି ବା ବନ୍ଧୁଘର ଠାରେ ଭୋଜନ ନକରି ଅନ୍ୟ ଯାଗାରେ ଭୋଜନ କରେ ନରୁବା କୌଣସି ଭୋଜି କାର୍ଯ୍ୟ ହେବାରେ ନିମନ୍ତ୍ରଣ ପାଇ ଯଦି କୌଣସି ବ୍ୟକ୍ତି ଆପଣାର ବନ୍ଧୁଘରେ ଯାଇ ଭୋଜନ କରେ ନାହିଁ ତେବେ ସେମାନଙ୍କ ମଧ୍ୟରେ ମାନ, ଅଭିମାନ, ଅପମାନର ସୀମାନଥାଏ ପୁଣି ସମୟେ ୨ ଏହି ତ୍ରୁଟି ହେତୁ ବନ୍ଧୁତା ସୂତ୍ର ଛିନ୍ନ ହେବା ପର୍ଯ୍ୟନ୍ତ ଯାଇଥାଏ । କେତେ ୨ କହନ୍ତି ବ୍ୟବହାର କାଣ୍ଡରେ ଜଣକୁ ଜଣେ ଠକିନେଉ, ଅର୍ଥଲୋଭରେ ଜଣଙ୍କର ଜଣେ ସର୍ବନାଶ କରୁ, ଜଣେ

ମିଥ୍ୟାବାଦୀ କପଟାଚାରୀ ହେଉ ଅପର ଜଣକ ସତ୍ୟବାଦୀ, ସରଳାନ୍ତଃକରଣ ଓ ସଦାଚାରୀ ହେଉ ପୁଣି ଜଣେ ପାପ କରୁ ଅନ୍ୟ ଜଣକ ଧାର୍ମିକ ହେଉ, ଉଭୟଙ୍କ ମଧ୍ୟରେ ଯଦି ବନ୍ଧୁତା ବା ଘନିଷ୍ଠତା ଥାଏ ତାହାହେଲେ ଜଣକ ଘରେ ଯାଇ ଅନ୍ୟଜଣେ ଭୋଜନ କରିବାକୁ ବାଧହେବ, ତାହା ନହେଲେ ସାମାଜିକ ନିୟମର ବ୍ୟତିକ୍ରମ ଘଟିବ । ଏହି ସାମାଜିକତା କେତେଦୂର ଯୁକ୍ତିସଙ୍ଗତ, ଶ୍ରେୟସ୍କର ଏବଂ ଲୋକରେ ପାଳନୀୟ ତାହା ଚିନ୍ତାଶୀଳ ବ୍ୟକ୍ତିମାନେ ବିଚାର କରିବେ ।

କେହି କେହି କହନ୍ତି କି ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ ନାନାବିଧ ସଙ୍ଗ ସମ୍ପର୍କ ମଧ୍ୟରେ ମିଳାମିଶି ଜଣକ ଘରେ ଜଣେ ଭୋଜନ କରିବା ସର୍ବୋତ୍କୃଷ୍ଟ ସମ୍ବନ୍ଧ ଅଟେ । ଏହି ସମ୍ପର୍କ ପରସ୍ପର ମନୋମାଳିନ୍ୟ ଦୂରକରି ଦେଇଥାଏ ଏବଂ ସମ୍ବନ୍ଧ ବନ୍ଧନକୁ ଉତ୍ତରୋତ୍ତର ଦୃଢ଼ତର କରେ । କିନ୍ତୁ ଭୋଜନ କଣ ? ଏହା ରସନେନ୍ଦ୍ରିୟର ପରିତୃପ୍ତି ସାଧନ । ଅନ୍ୟାନ୍ୟ ଇନ୍ଦ୍ରିୟ ସହିତ ତୁଳନା କଲେ ରସନେନ୍ଦ୍ରିୟ ନିକୃଷ୍ଟ ଶ୍ରେଣୀଭୁକ୍ତ ଅଟେ । ଏହା ଅପେକ୍ଷା ଦର୍ଶନ, ଶ୍ରବଣ, ଅଘ୍ରାଣ ଉତ୍କୃଷ୍ଟ ଅଟେ, ଯେହେତୁ କୌଣସି ଏକମାତ୍ର ରଚନ ଦୃଶ୍ୟ ବା ମନୋହର ସଂଗୀତ ଏକକାଳରେ ଅନେକ ବ୍ୟକ୍ତିଙ୍କର ସଂତୃପ୍ତି ସାଧନ କରିପାରେ ପୁଣି ଏକ ବ୍ୟକ୍ତିର ସନ୍ତୋଷ ପାଇଁ ଅପର ବ୍ୟକ୍ତିର ଅଭାବ ଘଟାଇ ନଥାଏ । ତେବେ ଏହି ଭୋଜନ ଦ୍ୱାରା କିପରି ଘନିଷ୍ଟ ସମ୍ବନ୍ଧ ସଂବର୍ଦ୍ଧିତ ହୋଇପାରେ ? ଭୋଜନାଭାବରୁ ଯେଉଁ ମନୋମାଳିନ୍ୟ ଘଟିଥାଏ ତାହାହିଁ ଭୋଜନ ଦ୍ୱାରା ଦୂରୀଭୂତ ହୋଇ ପାରେ କିନ୍ତୁ ଅନ୍ୟାନ୍ୟ କାରଣରୁ ସଂଜାତ ହେବା ମନାନ୍ତର ଭୋଜନ ଦ୍ୱାରା କଦାପି ଦୂରୀକୃତ ହୋଇ ନପାରେ । ଅପର କୌଣସି ବ୍ୟକ୍ତି ହେଉ, ବନ୍ଧୁ ଜ୍ଞାତି ହେଉ ବା ଭାଇ ହେଉ, ପରସ୍ପର ମନୋମିଳନ ନଥିଲେ, ବିରୁଦ୍ଧ ଭାବ ଥିଲେ, ଦୁଇଜଣ ମିଶି ଏକତ୍ର ଭୋଜନ କରିବା ସ୍ୱଭାବସିଦ୍ଧ କଥା ନୁହେ । ଯଦି ସାମାଜିକ ନିୟମ ରକ୍ଷା କରିବା ସକାଶେ ବାଧ୍ୟହୋଇ ଭୋଜନ କରିବାକୁ ପଡ଼େ ତେବେ ତାହା ବଳପୂର୍ବକ ଭୋଜନ ଅଟେ, ତଦ୍ୱାରା ମନର ସନ୍ତୋଷ କଥା ଦୂରେଥାଉ, ଅତ୍ୟନ୍ତ ବିରକ୍ତି ଜାତହୋଇ ଫଳରେ ଭୋଜନର ଉଦ୍ଦେଶ୍ୟ ନଷ୍ଟହୁଏ !

---

## ବ୍ୟଭିଚାର, ମନରେ ଓ କର୍ମରେ

ଅସଦାଚାର ବା ଅତ୍ୟାଚାରକୁ ବ୍ୟଭିଚାର କୁହାଯାଏ ପୁଣି ବିଶେଷତଃ ସ୍ତ୍ରୀ ଓ ପୁରୁଷର ଅଯଥା ସଂସର୍ଗକୁ ବ୍ୟଭିଚାର କୁହାଯାଏ । ବ୍ୟଭିଚାର ଶବ୍ଦର ଏହି ଶେଷୋକ୍ତ ଅର୍ଥହିଁ ଏହି ପ୍ରବନ୍ଧର କଥା । କୌଣସି ସଦାଚାର ମନରେ, ବଚନରେ ଏବଂ ଶରୀରରେ କରାଯାଇ ଥାଏ । ବାକ୍ୟ ଏବଂ ଶରୀର ଛଡ଼ା ମନରେ କୌଣସି ହେଉ ବ୍ୟଭିଚାର କରାଯାଇ ପାରେ, କିନ୍ତୁ ମନରେ

ପ୍ରଥମେ ଭାବ ଜାତ ନହୋଇ ବାକ୍ୟରେ ବା ଶରୀରରେ ବ୍ୟକ୍ତ କରାଯାଇ ନପାରେ । ମନ ସେଚ୍ଛାଚାର ସ୍ୱାଭାବିକ ଧର୍ମ, ଯେ ମନକୁ ତାହା ଅବାରିତ ଭାବରେ ରହିବ, ଏହା ସ୍ୱଭାବ ବିରୁଦ୍ଧ ଅଟେ । ମନର ଗତି ବାୟୁ ବା ଆଲୋକ ଅପେକ୍ଷା ଦ୍ରୁତତର । ଏହାର ଅଲୌକିକ ବ୍ୟଗ୍ରତା ହେତୁ ମନୋବେଗ ବୋଲି କଥାଅଛି । ଯଦିଚ ମନଅଛି ତେବେ ତାହାର ଗତି ଅବଶ୍ୟମ୍ଭାବୀ, ଯେକୌଣସି ଦିଗରେ ହେଉ ଏହା ଅବଶ୍ୟ ପ୍ରଧାବିତ ହେବ । ଗତିରହିତ ମନ ଏକାବେଳେକେ ଅସମ୍ଭବ । ମନ ଯଦି ଗତି ପ୍ରବଣ ହୋଇ ନଥାନ୍ତା ତେବେ ମନଃସଂଯମର ଆବଶ୍ୟକତା କେଉଁଠାରେ ? ମନ ସେଚ୍ଛାଚାର ଯଦି ସ୍ୱାଧୀନ ଗତି ନାହିଁ ତେବେ ଜିତେନ୍ଦ୍ରିୟତାର ଅର୍ଥ କଣ ? ମନ ଅଟେ ମତ୍ତଗଜ, ଜ୍ଞାନାଙ୍କୁଶ ଦ୍ୱାରା ଆୟତ୍ତ କରାଯାଏ । ଜ୍ଞାନ ଅଭାବରେ ମନ ଇତସ୍ତତଃ ଭ୍ରମଣ କରେ । ଜ୍ଞାନହିଁ ଜିତେନ୍ଦ୍ରିୟତାର ଅପରିହାର୍ଯ୍ୟ ଉପାଦାନ ଅଟେ । ପ୍ରଲୋଭନ ନଥିଲେ ନଭୁବା ତହିଁର ଜ୍ଞାନ ନଥିଲେ ଇନ୍ଦ୍ରିୟ ସଂଯମର ଆବଶ୍ୟକତା ନାହିଁ । ଏହି ସଂସାର ନାନାପ୍ରକାର ପ୍ରଲୋଭନରେ ପରିପୂର୍ଣ୍ଣ । ଯଦି କୌଣସି ବ୍ୟକ୍ତି ଏହି ସଂସାର ପରିତ୍ୟାଗ କରି ଜନ୍ମାବଧି ବନବାସ କରେ, ସେହି ବ୍ୟକ୍ତି ହଠାତ୍ କୌଣସି ପ୍ରଲୋଭନ ଦେଖି ତହିଁରେ ଆସକ୍ତ ନହୁଏ, ତେବେ ସେ ସେଥିପାଇଁ ଇନ୍ଦ୍ରିୟ ସଂଯମର ପ୍ରଶଂସା ପାଇ ପାରିବ ନାହିଁ । ଋଷ୍ୟଶୃଙ୍ଗ ଋଷି ଜନ୍ମାବଧି ବନବାସରେ ରହି ରମଣୀ ମୁଖ ଦେଖି ନଥିଲେ, ତାଙ୍କର ସେ ଜ୍ଞାନ ମଧ୍ୟ ନଥିଲା । ସେପରି ବିଳାସିନୀର ଉନ୍ନତ ବକ୍ଷକୁ ଶରୀରର ମାଂସ ବିଶେଷ ବ୍ୟତୀତ ଅନ୍ୟକିଛି ନୁହେଁ ବୋଲି ବିଚାର କରି ପ୍ରଥମେ ତହିଁର ପ୍ରଲୋଭନ ବଶବର୍ତ୍ତୀ ହୋଇନଥିଲେ, ସେ ତେବେ ସେଥିପାଇଁ ଜିତେନ୍ଦ୍ରିୟତାର ପ୍ରଶଂସା ପାଇପାରିବେନାହିଁ । ଅତଏବ ଇନ୍ଦ୍ରିୟ ସଂଯମ କରିବାକୁ ହେଲେ ପ୍ରଥମେ ମନରେ ଯେଉଁ ବ୍ୟଭିଚାର ଇଚ୍ଛା ଜାତ ହୁଏ ତାହା ଦମନ କରିବାହିଁ ଇନ୍ଦ୍ରିୟ ସଂଯମ । ଇନ୍ଦ୍ରିୟ ନିଗ୍ରହ ବା ମନଃ ସଂଯମର ପ୍ରଥମାବସ୍ଥା ମାନସିକ ବ୍ୟଭିଚାର । ଇନ୍ଦ୍ରିୟ ବିଶିଷ୍ଟ ମାନବମାତ୍ରେ ମନରେ ବ୍ୟଭିଚାର କରନ୍ତି । ଉକ୍ତ ମନକୁ ବ୍ୟଭିଚାର ପଥରୁ ନିବର୍ତ୍ତାଇବାହିଁ ମନୁଷ୍ୟର ପୁରୁଷାର୍ଥ ଅଟେ । କୌଣସି ଇନ୍ଦ୍ରିୟ ହେଉ ଅପକ୍ରାନ୍ତ ଉପଭୋଗ୍ୟ ପଦାର୍ଥକୁ ଥରେ ଅଥବା ଆସ୍ୱାଦନ ନକଲେ ନଭୁବା ଅନୁମାନ ନିଦର୍ଶନ, ପ୍ରଭୃତି ପ୍ରମାଣଦ୍ୱାରା ଜ୍ଞାନପୂର୍ବକ ଉକ୍ତ ପଦାର୍ଥର ବିଷୟ ହୃଦୟଙ୍ଗମ ନକଲେ ତହିଁପ୍ରତି ମନର ଆସକ୍ତି ଜନ୍ମେନାହିଁ । ଏହିରୂପ ଅସକ୍ତ ମନର ଅଭାବରେ ଆସକ୍ତି ରହିତ କର୍ମର ଅର୍ଥ କଣ ? ଆସକ୍ତି ଓ ବ୍ୟଭିଚାର ମନର ସ୍ୱାଭାବିକ ଧର୍ମ ଅଟେ । ଯଦିଚ କହିବ, ମନର ଆସକ୍ତିନାହିଁ, ବ୍ୟଭିଚାର ନାହିଁ, ତେବେ ବୁଝିବାକୁ ହେବ ଯେ ଉକ୍ତ ମନ କଂଭୂନ ଜମାକାର ବିକୃତ ବସ୍ତୁ ଅଟେ । ତାହା ମନୋବାଚ୍ୟ ନୁହେଁ ।

ଅତଏବ ମାନସିକ ବ୍ୟଭିଚାର ମନର ସ୍ୱଭାବସିଦ୍ଧ ଧର୍ମ । ଯଦିଚ ଉକ୍ତ ବ୍ୟଭିଚାର ନିର୍ଲିପ୍ତ କାର୍ଯ୍ୟ ପରିଣତ ହୁଏ ନଭୁବା ମନୁଷ୍ୟ ଉକ୍ତ ବ୍ୟଭିଚାର କରିବାକୁ ଯତ୍ନବାନ ହୁଏ ତାହାହେଲେ ସେହି ବ୍ୟକ୍ତି ବ୍ୟଭିଚାରାସକ୍ତ ପାପୀ ବୋଲି ଘୃଣିତ ଓ ଲଜ୍ଜିତ ହେବା ଉଚିତ ।

# ହରିନାମ ସଂକୀର୍ତ୍ତନ

ଏହି ନାମ ସଂକୀର୍ତ୍ତନ ଆଜିକାଲି ଭିନ୍ନ ଭିନ୍ନ ଦିଗରେ ଦୁର୍ନୀତିରେ ପରିଣତ ହୋଇଅଛି । ଅନେକ ଗ୍ରାମରେ ଗୋଟିଏ ୨ କୀର୍ତ୍ତନ ଆଖଡ଼ା ଅଛି । ଏହି କୀର୍ତ୍ତନ ଦଳ ତାଳ ମୃଦଙ୍ଗ ଝାଞ୍ଜ ବଜାଇ ଗୀତ ଗାଇ ନୃତ୍ୟ କରି ଗ୍ରାମରେ ତହଲ କରିପକାନ୍ତି । ଏହି ତାଳ ମୃଦଙ୍ଗ ବାଦ୍ୟ ଶବ୍ଦରେ କର୍ଣ୍ଣ ସ୍ତବ୍ଧ ହୋଇ ଯାଉଥାଏ । ଏହି କୀର୍ତ୍ତନ ଗୋଳମାଳ ଶାସ୍ତ୍ରଚର୍ଚ୍ଚା, ପୁରାଣ ପଠନ ପ୍ରଭୃତି ଅନ୍ୟାନ୍ୟ କାର୍ଯ୍ୟର ପ୍ରତିବନ୍ଧକ ଘଟାଇ ଥାଏ । ଏହି ଉତ୍ପାତରେ ଶ୍ରମଜୀବିମାନଙ୍କର କ୍ଳାନ୍ତ ଶରୀରରେ ବିଶ୍ରାମଦାୟିନୀ ନିଦ୍ରାଦେବୀ ମଧ୍ୟ ପ୍ରବେଶ କରି ପାରନ୍ତି ନାହିଁ । ଗ୍ରାମସ୍ଥ ଅଳସୁଆ ଓ ପରିଶ୍ରମ ବିମୁଖ ଲୋକମାନଙ୍କର ଏହା ଏକ ପ୍ରଧାନ ବୃତ୍ତି ହୋଇଥାଏ । ଏହି କୀର୍ତ୍ତନ ଦଳଭୁକ୍ତ ଅଳସୁଆମାନେ ଦିନଯାକ ଯା ଦ୍ୱାର ତା ପିଣ୍ଡାରେ ବସି କାଳ କଟାନ୍ତି, ରାତ୍ରବେଳେ ଏହି କୀର୍ତ୍ତନରେ ମତ୍ତ ହୋଇ ପାଗଳ ପରି ଛଟକରି ନାଚ କରନ୍ତି । ସାଧାରଣତଃ ମୂର୍ଖମାନେ ଏହି କୀର୍ତ୍ତନ ଆଖଡ଼ାରେ ଯୋଗ ଦେଇଥାନ୍ତି । ଏହି କୀର୍ତ୍ତନଲାଗି ଅନେକ ସ୍ଥାନରେ ଗ୍ରାମ-ଲୋକେ ଦୁଇ ଦଳରେ ବିଭକ୍ତ ହୋଇଥାନ୍ତି । ଏମାନେ ପରସ୍ପର ସଂପୂର୍ଣ୍ଣ ବିରୋଧୀ । ପରସ୍ପର ପ୍ରତି ଦ୍ୱେଷ ହିଂସାର ସୀମା ନଥାଏ । ଏକ ଗ୍ରାମରେ ପ୍ରଥମେ କୀର୍ତ୍ତନ ଆଖଡ଼ା ଗୋଟିଏ ସ୍ଥାପିତ ହେଲା । କିଛି କାଳ ପରେ ଉକ୍ତ କୀର୍ତ୍ତନଦଳ ଦୁଇଭାଗରେ ବିଭକ୍ତ ହେଲା । ଦୁଇ ଦଳ ଦୁଇ ଗୋଷ୍ଠ ଦେବ ମନ୍ଦିରର ପକ୍ଷ ଗ୍ରହଣ କଲେ, ଯଥା ଜଗନ୍ନାଥ ବାଡ଼ ଓ ଗୋପୀନାଥ ବାଡ଼ । ଏମାନଙ୍କ ମଧ୍ୟରେ ଏତେଦୂର ଦ୍ୱନ୍ଦ୍ୱ କଳହ ଜାତ ହେଲାଯେ, ପରିଶେଷରେ ଦେବତାଙ୍କର ନୀତି କର୍ମ ସବୁ ବନ୍ଦ ହେଲା ପୁଣି ଉଭୟ ଦଳ ମଧ୍ୟରେ ଗଣ୍ଡଗୋଳ ମାରପିଟ ହୋଇ ମାମଲା ମକଦ୍ଦମା ଚଳି ନିଜର ଧନ ଅଯଥା ଅପବ୍ୟୟ ହୋଇଗଲାଣି । ତଥାପି ଏହି ଦୁଇ ଦଳ ମଧ୍ୟରେ କଳହାଗ୍ନି ଏପର୍ଯ୍ୟନ୍ତ ନିର୍ବାପିତ ହୋଇନାହିଁ ।

ଅନ୍ୟ ଏକ ଗ୍ରାମରେ କୀର୍ତ୍ତନ ଦୁଇ ଦଳରେ ଦୁଇ ଭାଗ ଥାଇ ପରସ୍ପର ଧସ୍ତାଧସ୍ତି ପିଟାପିଟି ହେଉଥିଲେ । ଗତ କାର୍ତ୍ତିକ ପୂର୍ଣ୍ଣିମା ଦିନ ପୁରୁଷୋତ୍ତମପୁର ଠାରେ ଦିନ ଦୁଇ ପହରରେ ଦେଖାଗଲା ଯେ, ପ୍ରାୟ ୧୦ । ୧୫ ଜଣ କାନ୍ଦିକାନ୍ଦି ଦଉଡ଼ି ଆସିଲେ, ଏହାଙ୍କ ପଛେ ଅନ୍ୟ ଲୋକେ ଜଣ ମଧ୍ୟ ଦଉଡ଼ିଆସିଲେ । ପ୍ରାୟ ସମସ୍ତଙ୍କ ଶରୀର ଯଷ୍ଟି ପ୍ରହାର ଶବ୍ଦରେ ଆଘାତ ପ୍ରାପ୍ତ ହୋଇଅଛି । ତା' ପରେ ବୁଝାଗଲା ଯେ ଏହି ମାରପିଟର କାରଣ କୀର୍ତ୍ତନ ବାଡ଼, ଅନ୍ୟ କିଛି ନୁହେ । ଆଜି ପୁଣି ଶୁଣା ଯାଉଛି ଯେ ଏକ ଗ୍ରାମରେ ଜଣେ ବ୍ରାହ୍ମଣ ଆପଣାର ସାରୁବାଡ଼ି ଠାରେ ଗୋଟିଏ ଲୋକଙ୍କୁ ଖଣ୍ଡ ୨ କରି ହାଣି ପକାଇଅଛି । ଦୁର୍ଭାଗ୍ୟର ଏହି ପିଶାଚ କର୍ମମୂଳରେ ସେହି ସଂକୀର୍ତ୍ତନ ବିବାଦ ବିଦ୍ୱେଷ ନିହିତ ଅଛି । ସେହି ହରିନାମ କୀର୍ତ୍ତନର ପରିଣାମ ଫଳ ଏବେ ଦେଖନ୍ତୁ । ମହାତ୍ମା ଚୈତନ୍ୟ ଯେଉଁ ଠାକୁର ବୋଲି ଲୋକରେ ଅତି ପ୍ରଖ୍ୟାତ, ତାଙ୍କର ପ୍ରବର୍ତ୍ତିତ ଧର୍ମାବଲମ୍ବୀମାନେ ତାଙ୍କର ହରିନାମ କୀର୍ତ୍ତନକୁ କିପରି କଳଙ୍କିତ କରି ପକାଇ ଅଛନ୍ତି । ସେ ଯେତେବେଳେ ଈଶ୍ୱରେ-

ସାଧନା କରୁଥିଲେ ସେତେବେଳେ ବ୍ରାହ୍ମଣ ପଠାଣ ପ୍ରଭେଦ ନରଖି ଭକ୍ତି ପ୍ରେମ ଭାବରେ ବିଭୋର ହୋଇ ହରିନାମ କୀର୍ତ୍ତନ କରୁଥିଲେ । ଅଜ ତାହାଙ୍କର ଶିଷ୍ୟମାନେ ଭାଇଭାଇ ମଧ୍ୟରେ ଦ୍ୱେଷ ହିଂସାକର କୀର୍ତ୍ତନକୁ କଳହର ମୂଳ କରିଛନ୍ତି ଏବଂ ଚୈତନ୍ୟଙ୍କ ପବିତ୍ର ନାମରେ ଘୋର ପାପ କରୁଅଛନ୍ତି ।

ଏହିପରି ପୂର୍ବ ବ୍ୟବସ୍ଥାପକ ଋଷି ମୁନିମାନଙ୍କ ଶ୍ରୁତି, ସ୍ମୃତି, ପୁରାଣାଦି ଗ୍ରନ୍ଥାବଳୀ ଏହିରୂପେ ପଦେ ପଦେ ପଦଦଳିତ ହେଉଅଛି । ଆଜି ଲୋକେ ଉକ୍ତ ମହାତ୍ମାମାନଙ୍କର ବ୍ୟବସ୍ଥାର ମର୍ମ ବୁଝିନପାରି ଅଥବା ବୁଝିଲେହେଁ ସ୍ୱାର୍ଥପରତା ଓ ଔଦାସୀନ୍ୟ ବଶତଃ ତାହାକୁ କାର୍ଯ୍ୟ ପରିଣତ କରିବା ଚେଷ୍ଟା ନକରି ଲୋକାଚାର ନାମରେ ପାପାଚରଣ କରୁଛନ୍ତି ପୁଣି ଏହିପରି ପୂର୍ବ ସିଦ୍ଧାନ୍ତ ବିସ୍ମୃତ ହୋଇ ପରମାର୍ଥ ପରିତ୍ୟାଗ କରି କୁତ୍ସିତ ସ୍ୱାର୍ଥ ହେତୁ ଲୋକର ଉପକାର ବଦଳରେ ଉପଦ୍ରବ ସଂପାଦନ କରୁଛନ୍ତି ।

# ଅହିଂସା ଧର୍ମ ।

ଅହିଂସା ପରମ ଧର୍ମ—ଏହାହିଁ ଥିଲା ଆର୍ଯ୍ୟମାନଙ୍କର ଧର୍ମ ଏବେ ହିଂସାହିଁ ହିନ୍ଦୁମାନଙ୍କର ପରମ ଧର୍ମ ହୋଇଅଛି । ଦେବ ଦେବୀ ପୁଷ୍ପ ଫଳରେ ପରିତୃପ୍ତ ହେଉଥିଲେ, ଏବେ ରକ୍ତ ମାଂସ ନ ହେଲେ ଦେବୀମାନେ ତୃପ୍ତ ହେଉ ନାହାନ୍ତି । ଏହି ଦେବୀପୂଜା ସକାଶେ ସର୍ବତ୍ର ଜୀବହତ୍ୟା କରାଯାଉ ଅଛି । ଚୈତ୍ରମାସ ମଙ୍ଗଳବାରରେ ପୁଣି ସଂକ୍ରାନ୍ତି ଦିନରେ ଦେବୀ ପୀଠରେ ଠାକୁରାଣୀ ମନ୍ଦିରରେ ପଶୁହତ୍ୟା କରାଯାଉ ଅଛି । ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀ ରହିଛନ୍ତି । ଗ୍ରାମଦେବୀ ଠାରେ ପୁଷ୍ପ ପୂର୍ଣ୍ଣିମା, ଗହ୍ମାପୂର୍ଣ୍ଣିମା, ଆଶ୍ୱିନମାସର ଦଶହରା ପର୍ବରେ ପଶୁବଧ କରାଯାଏ । ଏବେ ଯେବେ ଇଚ୍ଛା ତେବେ ଠାକୁରାଣୀ ନାମରେ ପଶୁବଧ କରାଯାଉ ଅଛି । ଦେବୀ ସନ୍ତୁଷ୍ଟ ହୁଅନ୍ତୁ ବା ନ ହୁଅନ୍ତୁ ଜିହ୍ୱା ଲାଳସା ଚରିତାର୍ଥ କରିବା ପାଇଁ ଜୀବହତ୍ୟା କରାଯାଉ ଅଛି ।

ଲୋକଙ୍କର ବିଶ୍ୱାସଯେ ଦେବୀ, ଠାକୁରାଣୀ, କାଳୀ, ଦୁର୍ଗା ଇତ୍ୟାଦିଙ୍କ ଆଗରେ ଅବା ସେମାନଙ୍କ ନାମରେ ପଶୁ ବଧକଲେ ସେମାନେ ସନ୍ତୁଷ୍ଟ ହୋଇ ବର ପ୍ରଦାନ କରନ୍ତି, ବସନ୍ତ, ବିସ୍ଫୋଟକ, ମହାମାରୀ ଆଦି ସଂକ୍ରାମକରୋଗ ନିବାରଣ କରନ୍ତି, ଗ୍ରାମ୍ୟ ପଶୁମାନଙ୍କୁ ସୁରକ୍ଷା କରନ୍ତି, କ୍ଷେତ ବାଡିରେ ଶସ୍ୟାଦି ଉତ୍ପନ୍ନ କରନ୍ତି । ଏହି ଅନ୍ଧ ବିଶ୍ୱାସ ଓ ମୂର୍ଖ ପରମ୍ପରାର ବଶବର୍ତ୍ତୀ ହୋଇ ପ୍ରତ୍ୟେକ ଦେବୀଙ୍କ ପାଖରେ ପଶୁ ବଧ କରାଯାଏ । ଶ୍ରାବଣ ପୂର୍ଣ୍ଣିମା ବା ଗହ୍ମା ପୂର୍ଣ୍ଣିମା ଦିନ ଗ୍ରାମ ଦେବୀଠାରେ ଗ୍ରାମରେ ପଶୁ ଛେଳି ବା ମେଣ୍ଢା ବଧ କରାଯାଏ । ଦେବୀ ପ୍ରସାଦ ସ୍ୱରୂପ ଏହି ରକ୍ତମାଂସକୁ ଟିକିଏ ଟିକିଏ ନେଇ ପ୍ରତ୍ୟେକ କୃଷକ ନିଜ ଧାନ୍ୟ କ୍ଷେତ୍ରରେ

ଦେଖାଦେଇଅଛି । ଅବଶିଷ୍ଟ ମାଂସ ଗ୍ରାମ ଲୋକେ ଯେଝା ଅଂଶ ଅନୁସାରେ ବାଣ୍ଟି ନେଇ ଖାଆନ୍ତି । ଏହି ବଳି ଅନେକ ଗ୍ରାମରେ ବହୁ କାଳରୁ ଚଳି ଆସୁଅଛି । ଗ୍ରାମ ଲୋକେ ଗୃହାଳୀର କିମ୍ବା କୋଠ ଧନରୁ ମେଣ୍ଢାଟିଏ କିଣିଆଣି ଏହି ବଳି ପାଳନ୍ତି । ପୂର୍ବ ରୀତି ଆଉ ନାହିଁ, ଆଜି ଯେଝାର ରୁଚି ଓ ଅବସ୍ଥାନୁସାରେ ମାଂସ ଲୋଭରେ ଦେବୀ ଉପାସନା କରନ୍ତି । ସେଦିନ ଶ୍ରାବଣ ପୂର୍ଣ୍ଣିମାଦିନ ଦେଖାଗଲା ଯେ କୌଣସି ପଲ୍ଲି ଗ୍ରାମରେ ଗ୍ରାମ ଦେବୀ ଆଗରେ ବାରଟା ବା ପନ୍ଦରଟା ମେଣ୍ଢା ମୁଣ୍ଡ ଗଡ଼ିଗଲା । ଗ୍ରାମର କୋଠ ବୋଦା ବାହାରେ ଆଉ ଦଶ ବାରଟା ମେଣ୍ଢା ନସିଗଲା । କାହାର କେବେ ଦେହ ବେମାରି ହୋଇଥିଲା ସେ ସେ ଗୋଟିଏ ବୋଦା ସହିଥିଲା, କେହି ମାଂସ ଖିଆ ଲୋଭ କରିବାପାଇଁ ଗୋଟିଏ ଛେଳି ମାରିଲା, କେହିବା ମାଂସ ଲୋଭରେ ମେଣ୍ଢାଟିଏ ବଧକଲା— ଏହିପରି ନାନାଲୋକ ନାନା ପ୍ରକାର ଏହିପର୍ବ ପାଳନ କରିଥିଲେ । ଠାକୁରାଣୀ ମନ୍ଦିର ବା ଗ୍ରାମମଧ୍ୟରେ କ୍ଷୁଦ୍ର ମନ୍ଦିରଟା ମେଣ୍ଢା ମୁଣ୍ଡମୟ ହୋଇଗଲା, ଚତୁର୍ଦ୍ଦିଗ ଲୋମ, ଚର୍ମ, ରକ୍ତ, ମାଂସ, ଅସ୍ଥି ଇତ୍ୟାଦିରେ ପୂର୍ଣ୍ଣ ହୋଇ କଂସେଇଖନା ଠାରୁ ଅଧିକ କଦର୍ଯ୍ୟ ଦେଖାଗଲା । ଏହି ଜଘନ୍ୟ ପୈଶାଚିକ ଦୃଶ୍ୟ ଦେଖି ଏହାକୁ କିଏବା ଦେବୀ ମନ୍ଦିର କହିବ ? ଭାଦ୍ରବ ମାସରେ ଧାନଗଛ କଲା ମଉମଉ ହୋଇ ବଢ଼ିଅସେ । ଏହି ସମୟରେ ଧାନ ଗଛ "କାଅବୁଦା" ହେବବୋଲି କୌଣସି ୨ ଗ୍ରାମରେ " କଲା ଭୂଆ " ଭୋଜି ନାମରେ ଗ୍ରାମଦେବୀ ନିକଟରେ ଗୋଟିଏ ଭୋଜି ହୁଏ । ଏଥିରେ ମଧ୍ୟ ପଶୁବଧ କରାଯାଏ । କୌଣସି ୨ ଗ୍ରାମରେ " ଜନ୍ତାଲ "ନାମରେ ଏକ ଭୋଜି ହୁଏ । କେବଳ ଗ୍ରାମ ଦେବୀ ଠାରେ ଏହିସବୁ ଜନ୍ତାଲ ଭୋଜିହୁଏ । ଜନ୍ତୁ ହତ୍ୟା ହେବା ଯୋଗୁଁ ଏହି ସବୁ ଭୋଜିକି ଜନ୍ତାଲ କହନ୍ତି । ଅନ୍ୟାନ୍ୟ ଦେବ ମନ୍ଦିର ଥାଉ ବା ନଥାଉ ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀ ପ୍ରତିଷ୍ଠିତ । ଯହିଁ ଗ୍ରାମଦେବୀ ତହିଁ ଏହି ପୈଶାଚିକ କାଣ୍ଡ, ଏହି ରାକ୍ଷସୀ ଲୀଳା ।

ଶିଶ୍ନୋଦରମୂଢ଼ ପାଷଣ୍ଡ ବ୍ରାହ୍ମଣମାନେ ଦେବୀ ଉପାସନା ନାମରେ ପ୍ରଥମେ ଗୋପନୀୟ ଭାବରେ ଏହିପୈଶାଚିକ କର୍ମକାଣ୍ଡର ଉଦ୍ଭାବନ କଲେ । ଏବେ ସେହି ନାମରେ ନିର୍ଭୀତ ଆଶାରେ ସର୍ବତ୍ର ପ୍ରକାଶ୍ୟ ଭାବେ ଏହି ରାକ୍ଷସୀ ଲୀଳା ଅନୁଷ୍ଠିତ ହେଉଛି ।



## ମହନ୍ତ ଓ ଗୃହସ୍ଥ ।

ଅନେକ ମହନ୍ତ ଏବଂ ଗୃହସ୍ଥ ମଧ୍ୟରେ ପ୍ରଭେଦ ଅତ୍ୟଳ୍ପ ମାତ୍ର । ଗୃହସ୍ଥ ମାନଙ୍କର ଗୃହିଣୀ ରହନ୍ତି କିନ୍ତୁ ମହନ୍ତ ମାନଙ୍କର କୌଣସି ବିବାହିତା ସ୍ତ୍ରୀ ନଥାଏ । ମହନ୍ତ ମାନଙ୍କର

ଗୃହସ୍ଥଙ୍କ ପରି ଘର ବାଡ଼ି,ଜମିବାଡ଼ି ଥାଏ । ଏମାନେ କୃଷି କରନ୍ତି; ପଶୁ ପକ୍ଷୀ ପୋଷି ପାଳନ୍ତି; ସାହୁକାର ହୋଇ ଋଣ ଦିଅନ୍ତି; ବାଣିଜ୍ୟ କରନ୍ତି,ଋଣ ଗ୍ରହଣ କରନ୍ତି, ଦଲିଲ ପତ୍ର ରେଜେଷ୍ଟରି କରନ୍ତି; ମାଲି ମୋକଦ୍ଦମା କରନ୍ତି, ମାଡ଼ ଗୋଳ କଳି କଜିଆ କରନ୍ତି; ଅଦାଲତ ଫୌଜଦାରୀ ମୋକଦ୍ଦମାରେ ପ୍ରାୟ ସର୍ବଦା ବ୍ୟସ୍ତ ରହନ୍ତି; କେୟୂର କୁଣ୍ଡଳ ପ୍ରଭୃତି ଅଳଂକାର ଧାରଣ କରନ୍ତି; ବହୁ ମୂଲ୍ୟବାନ ବସ୍ତ୍ର ବ୍ୟବହାର କରନ୍ତି; ରତ୍ନ ଖଚିତ ସେବିତହୋଇ ଦୁଗ୍ଧଫେନନିଭ କୋମଳ ଶଯ୍ୟାରେ ଶାୟିତ ହୁଅନ୍ତି; ଦାସ ଦାସୀ; ଚାକର ନୌକର, କରିନ୍ଦା, ଏଜେଣ୍ଟ ପ୍ରଭୃତି କର୍ତ୍ତୃକ ପରିବେଷ୍ଟିତ ହୋଇ ଆଧିପତ୍ୟ କରନ୍ତି; ଶାଲ୍ୟନ୍ନ, ଘୃତ, ଦଧି, ଦୁଗ୍ଧ ପ୍ରଭୃତି ପୁଷ୍ଟିକର ଆହାର କରି ଅତିଶୟ ଇନ୍ଦ୍ରିୟାସକ୍ତ ରହନ୍ତି ପୁଣି ଦାସୀ, କାମିନୀ, ଓ ବେଶ୍ୟା ମାନଙ୍କ ସହିତ ଗୁପ୍ତ ପ୍ରେମ କରି ଆପଣାର ଶରୀର ଏବଂ ମନକୁ କଳୁଷିତ କରନ୍ତି । ଇତ୍ୟାଦି ଇତ୍ୟାଦି ।

କୌପୀନ ଧାରଣ ମାତ୍ରେ ବୈରାଗ୍ୟ ସମ୍ପାଦିତ ହୁଏ, ଏହା କଦାଚ ବୋଲାଯାଇ ନପାରେ । ଭେକ ମାତ୍ରେ କେହି ବାବାଜୀ ବା ମାତାଜୀ ହୋଇ ପାରନ୍ତି ନାହିଁ । ସେହିପରି ଏହି ଅବିବାହିତାବସ୍ଥା ମହନ୍ତ ମାନଙ୍କୁ ମହାନ୍ କରି ଦେଇ ନପାରେ । ବିବାହ ନକରିବା ମାତ୍ରେ ଯଦି କେହି ମହନ୍ତ ବନି ଯାଇ ପାରନ୍ତା ତାହାହେଲେ ଆମ୍ଭମାନଙ୍କ ମଧ୍ୟରେ ପଣ ୨ ମହନ୍ତ ବିଚରଣ କରନ୍ତେ, କେହି ଧନୀ ଏବଂ କେହି ଗରିବ । କିନ୍ତୁ ଗରିବ ଲୋକ ମହନ୍ତ ଗିରି ଚଳାଇ ପାରନ୍ତି ନାହିଁ ଯେହେତୁ ମହନ୍ତ ଗିରି ଅଜ୍ଞ କାଳ ଧନ ସାପେକ୍ଷ ।

ବିଳାସିତା ଓ ବୈରାଗ୍ୟ ଏକତ୍ର ରହି ପାରେ ନାହିଁ । ମହନ୍ତ ମାନଙ୍କର ଭୋଗ ବିଳାସ ସାଧାରଣ ଜମିଦାର ଅପେକ୍ଷା ବହୁଗୁଣ ବେଶି ଦେଖାଯାଏ । ଏମାନେ ଯେ ଇନ୍ଦ୍ରିୟ ନିଗ୍ରହ କରି ସ୍ତ୍ରୀ ଗ୍ରହଣ କରନ୍ତି ନାହିଁ, ଏହା ଅସମ୍ଭବ । ଏହି ମହନ୍ତ ମାନଙ୍କୁ ଏକ ପ୍ରକାର ଗୃହସ୍ଥ ବା ଅତ୍ୟାକୃଷ୍ଟ ଗୃହସ୍ଥ ବୋଲିବାକୁ ହେବ ।

## ଜୀବନ ଓ ଆହାର

ଜୀବନ ଓ ଆହାର ମଧ୍ୟରେ ପରସ୍ପର ଘନିଷ୍ଠ ସମ୍ବନ୍ଧ ଥିଲେହେଁ ଉଭୟର ଉଦ୍ଦେଶ୍ୟ ପୃଥକ୍ । ଜୀବନ ରକ୍ଷା ନିମନ୍ତେ ଆହାରର ପ୍ରୟୋଜନ, କିନ୍ତୁ ଆହାର ପାଇଁ ଜୀବନର ସୃଷ୍ଟି ହୋଇ ନାହିଁ । ଜୀବନ ଏକ, କିନ୍ତୁ ଆହାର ନାନାବିଧ । ଅନ୍ନ, ପତ୍ର, ଫଳ, ମୂଳ, ଜଳ ବା ବାୟୁ ମଧ୍ୟ ଆହାର ହୋଇପାରେ । ଆହାରର ପ୍ରଭାବ ଉପରେ ଜୀବନର ସ୍ୱଭାବ, ଚରିତ୍ର ଓ କର୍ମକାଣ୍ଡ କେତେ ପର୍ଯ୍ୟନ୍ତ ନିର୍ଭର କଲେହେଁ ସଙ୍ଗ, ଶିକ୍ଷା ଓ ଆଦର୍ଶ ଦ୍ୱାରା ଜୀବ ଆହାରର ଫଳାଫଳକୁ ଅତିକ୍ରମ କରି ପାରେ । ଜୀବନର ଉଦ୍ଦେଶ୍ୟ ପବିତ୍ର ଏବଂ

ସନ୍ତାନ୍ । ତଥାପି ଜୀବନ ସହିତ ସାଧାରଣତଃ ଆହାରର ଘନିଷ୍ଠ ସମ୍ବନ୍ଧ ଥିବା ହେତୁ ଏହି ସଂସାରରେ ଆହାର ନିମନ୍ତେ ଜୀବନ ସୃଷ୍ଟି ହୋଇ ଅଛି ବୋଲି ଲୋକ ସାଧାରଣ ବୁଝନ୍ତି । "ପେଟ ଖଣ୍ଡିକ ପାଇଁ ଏତେ ନାଟ" "ଉଦର ନିମତ୍ତଂ ବହୁକୃତ ବେଶଂ" ଏହିପରି ଅନେକ ପ୍ରବାଦ ଅଛି । ପେଟପାଇଁ ସବୁ କଷ୍ଟରେ ପଡ଼ିବାକୁ ହୁଏ, ଯଦି ପେଟକୁ ନଖାଇବ, ତେବେ ଏତେ କଷ୍ଟ ସହ୍ୟ କରି ଏତେ ଉପାର୍ଜନ କରିବାର ପ୍ରୟୋଜନ କଣ ? ପେଟ ଚିନ୍ତା ଯଦି ନଥାନ୍ତା ତେବେ କେହି କାହାକୁ ମାନନ୍ତା ନାହିଁ । ଆପଣାର ଭରଣ ପୋଷଣ ନିମନ୍ତେ ଲୋକେ ନାନାବିଧ କର୍ମ କରନ୍ତି, ଚାକିରି କରନ୍ତି, ଛଳ କପଟ କରନ୍ତି । ଲୋକେ ଏହିପରି ଅନେକ କଥା କହିଥାନ୍ତି । ଦୁଗ୍ଧ, ଘୃତ, ମିଷ୍ଟାନ୍ନ ଏବଂ ଆମିଷ ଭୋଜୀମାନଙ୍କ ପକ୍ଷେ ମତ୍ସ୍ୟ ମାଂସ ପ୍ରଭୃତି ଉତ୍କୃଷ୍ଟ ଖାଦ୍ୟ ବୋଲି ଗୃହୀତ ହୁଏ । ଉଦର ପୂର୍ଣ୍ଣ ଥିଲେହେଁ, କ୍ଷୁଧା ନଥିଲେହେଁ, କୌଣସି ଉତ୍କୃଷ୍ଟ ବା ଅପୂର୍ବ ଖାଦ୍ୟ ମିଳିଲେ ଅନେକେ ଆଉ ଥରେ କିଛି ଖାଇବା ଇଚ୍ଛା କରନ୍ତି । ପେଟ ପୂରି ଯାଇ ଥିଲେହେଁ, ଆଉ ବେଶି ଖାଇଲେ ଅଜୀର୍ଣ୍ଣ ହେବା ଆଶଙ୍କା ଥିଲେହେଁ କେହି କେହି ବହୁ ମୂଲ୍ୟବାନ ବା ରୁଚିକର ଖାଦ୍ୟ ପରିତ୍ୟାଗ କରି ପାରନ୍ତି ନାହିଁ । ପିଲାମାନେ ଶୀଘ୍ର ବଢ଼ିବେ ଏବଂ ଅଧିକ ବଳଶାଳୀ ହେବେ ବୋଲି ମାଆମାନେ ଅନେକ ସମୟରେ ଆପଣା ପିଲାମାନଙ୍କୁ ଅତିରିକ୍ତ ଖାଇବାକୁ ଦିଅନ୍ତି । ଅଜୀର୍ଣ୍ଣ ହେତୁ ସନ୍ତାନମାନେ ପୀଡ଼ିତ ହେଉଥିଲେ ସୁଦ୍ଧା ମାତାମାନେ ଅତିରିକ୍ତ ଖାଦ୍ୟ ଦେବାରୁ ନିବୃତ୍ତ ହୁଅନ୍ତି ନାହିଁ । ମାଇପି ଲୋକେ ସମୟେ ୨ କହନ୍ତି ଯେ, ଅଉ ଅଇଁଠା ଖାଇବାକୁ କିଏ ନାହିଁ, ଦୁଧ ଟିକକ ବା ମାଛ ଖଣ୍ଡିକ ଛାଡ଼ି ଯାଅ ନା, ଖାଇ ଦିଅ, ପୁଣି ଏତେ ପଇସା ଖରଚ କରି ଏତେ ଶ୍ରମ କରି ଯାହା ତିଆରି ହେଲା, କିଛି ନ ଖାଇ ତାହା କିପରି ଇତର ଲୋକଙ୍କୁ ଦେଇଦେବା ବା କାଉ କୁକୁରକୁ ଫିଙ୍ଗି ଦେବା । ଯେଉଁମାନେ ବେଶି ଖାଇ ପାରନ୍ତି, ସେମାନେ ସମୟେ ୨ ଭଲ ଖାଇ ପାରନ୍ତି ବୋଲି ପ୍ରଶଂସା ପାଆନ୍ତି । ଅମୁକ ଲୋକ ଖାଇବା ବିଷୟରେ ବୀର । ଯେଉଁମାନେ ପୂର୍ବ ଜନ୍ମରେ ଦେଇଥାନ୍ତି ସେମାନେ ଏହି ଜନ୍ମରେ ଖାଇ ପାରନ୍ତି । ଯେଉଁମାନେ ବେଶି ଖାଇ ପାରନ୍ତି ନାହିଁ ସେମାନଙ୍କୁ ଉପହାସ କରାଯାଏ, ଯଥା ବେଙ୍ଗ ପେଟରେ କି ଘିଅ ଘାରି ଯିବ ଇତ୍ୟାଦି । ଇହ ଜନ୍ମର ମହତ୍ କର୍ମ ମଧ୍ୟରେ ଖାଇବାଟା ଗୋଟିଏ ମହତ୍ କର୍ମ । ଯାହା ଖାଇଥିବ ପେଟକୁ ଏବଂ ଯାହା ଦେଇ ଥିବ ବାଟକୁ ବୋଲି ଗୋଟିଏ ପ୍ରବାଦ ଅଛି ।

ଆମ୍ଭେମାନେ ଖାଇବା ପାଇଁ ବଞ୍ଚିଅଛୁଁ, ଲୋକଙ୍କ ମନରେ ଏହି ଧାରଣା ଦୃଢ଼ୀଭୂତ ହେବାରୁ ଲୋକେ ଖାଇବାଟାକୁ ଜୀବର ଏକ ପ୍ରଧାନ କାର୍ଯ୍ୟ ବା ଜୀବନର ପ୍ରଧାନତମ କର୍ମ ବୋଲି ଜ୍ଞାନ କଲେ । ଏମାନେ ଆଉ ସ୍ୱଚ୍ଛନ୍ଦ ବନଜାତ ଶାକ, ଫଳ, ମୂଳରେ ତୃପ୍ତି ଲାଭ କଲେ ନାହିଁ, ନାନା ପ୍ରକାର ଜୀବ ହତ୍ୟା କରିବାର ଆରମ୍ଭ କଲେ । ନବ ନବ ରନ୍ଧନ ପ୍ରଣାଳୀର ଉଦ୍ଭାବନ ହେଲା, ଉଦର ନିମିତ୍ତ ବହୁବେଶ ଧାରଣ କରିବାକୁ ହେଲା,

କପଟାଚରଣ କରିବାକୁ ହେଲା, ଦାସତ୍ୱ ସ୍ୱୀକାର କରିବାକୁ ହେଲା, ବଧ କାର୍ଯ୍ୟ କରିବାକୁ ହେଲା ପୁଣି ଅନ୍ୟର ଅନିଷ୍ଟ କରିବାକୁ ହେଲା । ଏହି ଖାଦ୍ୟ କେବଳ ଜୀବନ ଧାରଣ ଉପାୟ ହୋଇ ରହିଲା ନାହିଁ, ଏହା ବିଳାସିତା ବର୍ଦ୍ଧନ କଲା । ଏହି ଖାଦ୍ୟ ସଂଗ୍ରହରେ ବହୁଧନ ବ୍ୟୟ ହେବାକୁ ଲାଗିଲା, ବହୁ ସମୟ, ବହୁ ଚିନ୍ତା ଏବଂ ବହୁ ଶ୍ରମ କରିବାକୁ ପଡ଼ିଲା । ଏହି ଧନ, ଏହି ସମୟ ଅନ୍ୟ କାର୍ଯ୍ୟରେ ଲଗାଇଲେ ଜଗତର ଅଶେଷ ଉପକାର ହୁଅନ୍ତା ।

ଅଳ୍ପାହାରମାନେ ହିଁ ପ୍ରକୃତ ସୁଖୀ । ସ୍ୱଳ୍ପ ଏବଂ ସହଜ ଖାଦ୍ୟ ଦ୍ୱାରା ଅଜୀର୍ଣ୍ଣାଦି ରୋଗର ଉପଦ୍ରବ ହୁଏ ନାହିଁ, ସାଧାରଣତଃ ସ୍ୱାସ୍ଥ୍ୟ ଭଲ ରହେ ଏବଂ ଦୀର୍ଘ ଜୀବନ ଲାଭ ହୁଏ । ଯଦିଚ ପୂର୍ବ କାଳର ଋଷିମୁନି ଓ ବ୍ରହ୍ମଚାରୀମାନଙ୍କ କଥା ବିଶ୍ୱାସ ନ କର ତେବେ ଦେଖିବ ଯେ ବୃକ୍ଷର ଫଳ ମୂଳ ଖାଇ ଏବଂ ଝରଣାର ଜଳ ପାନ କରି ସେମାନେ କିପରି ତେଜୋବନ୍ତ, ବୀର୍ଯ୍ୟବାନ ଓ ଶୌର୍ଯ୍ୟଶାଳୀ ଥିଲେ । ରାମଚନ୍ଦ୍ର ବନର ଫଳ ମୂଳ ଖାଇ ମତ୍ସ୍ୟ ମାଂସ ଭୋଜୀ ରାକ୍ଷସ ମାନଙ୍କୁ ଯୁଦ୍ଧରେ ନିହତ କରିଥିଲେ । ପୁଣି ଅତିରିକ୍ତ ଏବଂ ଗରିଷ୍ଠ ଭୋଜନ ଦ୍ୱାରା ରୋଗ ଉତ୍ପନ୍ନ ହେବାର ଏବଂ ସ୍ୱାସ୍ଥ୍ୟ ଭଙ୍ଗ ହେବାର ବର୍ତ୍ତମାନ ଦେଖା ଯାଉଅଛି । ଯେଉଁ ଆହାରକୁ ଲୋକେ ଆପଣାର ଜୀବନ ସର୍ବସ୍ୱ ଜ୍ଞାନ କରନ୍ତି ପୁଣି ଯାହା ଦେଇ ଜୀବନ ଧାରଣ କରିବାକୁ ଚାହାନ୍ତି, ସେହି ଅନ୍ନ ମାରାତ୍ମକ ରୋଗ ଉତ୍ପାଦନ କରି ପ୍ରାଣ ନଷ୍ଟ କରୁଅଛି । ଲୋକେ ଯେପରି ସ୍ୱାର୍ଥପର ହୋଇ ପରର ଅନିଷ୍ଟ କରିବା ଦ୍ୱାରା ଆପଣାର ସ୍ୱାର୍ଥ ନଷ୍ଟ କରନ୍ତି, ସେହିପରି ଲୋକେ ପ୍ରାଣ ରକ୍ଷା କରିବାକୁ ଯାଇ ମିଥ୍ୟା ଏବଂ ଅତିରିକ୍ତ ଆହାର ଦ୍ୱାରା ଆପଣାର ଜୀବନ ନଷ୍ଟ କରନ୍ତି । କେହି ଯଥାର୍ଥ କହିଅଛନ୍ତି । “Plain living and high thinking” ଅର୍ଥାତ୍ ସାମାନ୍ୟ ଆହାର ଓ ଉଚ୍ଚଚିନ୍ତା ଦ୍ୱାରା ଏହି ପବିତ୍ର ଜୀବନର ମହଦୁଦ୍ଦେଶ୍ୟ ସାଧିତ ହୁଏ ।



## ଧର୍ମ ଧାରଣା ଓ ଦାରିଦ୍ର୍ୟ

ପଶୁ ଜାତି ଓ ମାନବ ଜାତି ମଧ୍ୟରେ ଆହାର, ନିଦ୍ରା, ମୈଥୁନ ସମାନ ଧର୍ମ ହେଲେ ହେଁ ଉଭୟ ଜାତି ଭିନ୍ନ ଧର୍ମ ବିଶିଷ୍ଟ । ମାନବ ଜାତି ମହାଜୀବ ନାମରେ ଅଭିହିତ । ଜ୍ଞାନ ପିପାସା ମାନବ ଜାତିର ଧର୍ମ, ଅନନ୍ତ ଉନ୍ନତି ପ୍ରୟାସ ମାନବ ଜାତିର ଧର୍ମ, ଅହିଂସା ପରୋପକାର ପ୍ରଭୃତି ମାନବ ଜାତିର ଧର୍ମ । ଏହି ଧର୍ମ ସାଧନ ଦ୍ୱାରା ମାନବ ଜାତି ଅନନ୍ତ ଉନ୍ନତି ଦିଗରେ ପ୍ରଧାବିତ ହୁଏ । ଏହି ଧର୍ମ ସାଧନ ଉଦ୍ଦେଶ୍ୟରେ ଯେଉଁ କର୍ମମାନ କରାଯାଏ ତାହାକୁ ସତ୍କର୍ମ କୁହାଯାଏ । ଜ୍ଞାନ ସମ୍ପାଦନ କରିବା, ସତ୍ୟ ଭାଷଣ କରିବା, ଅସହାୟକୁ

ସାହାଯ୍ୟ ଦାନ କରିବା, ମୂର୍ଖଙ୍କୁ ବିଦ୍ୟାଶିକ୍ଷା ଦେବା, କ୍ଷୁଧାର୍ତ୍ତଙ୍କୁ ଅନ୍ନଦେବା, ବସ୍ତ୍ରହୀନଙ୍କୁ ବସ୍ତ୍ର ଦେବା, ଭିକ୍ଷୁକୁ ଭିକ୍ଷା ଦେବା ଇତ୍ୟାଦି କର୍ମମାନ ପୁଣ୍ୟ କୋଟିରେ ଭୁକ୍ତ । ମୂଳ ଉଦ୍ଦେଶ୍ୟ ଅନନ୍ତ ଉନ୍ନତି ସାଧନ ମନୁଷ୍ୟତ୍ୱ ଦିଗକୁ ଏହିସକଳ ସତ୍କାର୍ଯ୍ୟ--ସ୍ରୋତସ୍ୱତୀ ପ୍ରଧାବିତ ହୁଏ । ମୂଳ ଲକ୍ଷ୍ୟ ଭ୍ରଷ୍ଟ ହେଲେ ବ୍ରାହ୍ମଣ ନାମାମାନେ ବ୍ରାହ୍ମଣ ହେଲା ନ୍ୟାୟରେ ଏହି ସକଳ ସତ୍କାର୍ଯ୍ୟ ଅକାର୍ଯ୍ୟରେ ପରିଣତି ଲାଭକରେ ।

ଭିକ୍ଷା ଦେବା ଆଜି, ଧର୍ମ ନାମରେ କଥିତ, ବିଶେଷତଃ ଭିକ୍ଷୁକୁ ଭିକ୍ଷା ଦେବା । କିନ୍ତୁ ଭିକ୍ଷୁ କିଏ ? ଏହା ବୁଝିବାର ଆବଶ୍ୟକ । ଭିକ୍ଷୁକୁ ନବୁଝି ଅପାତ୍ରରେ ଭିକ୍ଷାଦେଲେ ତାହିଁରୁ ଅକାର୍ଯ୍ୟ ହେଉଅଛି । ଅନ୍ନ ବସ୍ତ୍ର, ଟଙ୍କା ସୁନା ପ୍ରଭୃତି ପଦାର୍ଥ ଦେବାକୁ ଧର୍ମ କୁହାଯାଏ । ଗରିବ, ଅଙ୍ଗହୀନ, ଅକର୍ମଣ୍ୟ, ଉଦାସୀନ, ଅଳସୁଆ ପ୍ରଭୃତି ଲୋକମାନେ ଏହି ଦାନ ଗ୍ରହଣ କରନ୍ତି । ଏହିଦାନ ପାତ୍ରାପାତ୍ର ବିବେଚନା ରହିତ ହେବା ହେତୁ ଅପାତ୍ର ହେଲେହେଁ, ଅନେକେ ଭିକ୍ଷାର୍ଥୀ ହୋଇ ବୁଲନ୍ତି ବା ଦାନ ଦେବାକୁ ଦାନ ନାମରେ ଅନେକ ଲୋକ ବାହାରନ୍ତି । ଆଜି ଆମ୍ଭଦେଶରେ ଭିକ୍ଷୋପଜୀବୀ ସଂଖ୍ୟା ଅନେକ ପରିମାଣରେ ବଢିଯାଇ ଅଛି । ଭାରତରେ ଏହି ଭିକ୍ଷୋପଜୀବନର ଅନ୍ୟାନ୍ୟ କାରଣମାନ ବିଦ୍ୟମାନ । ଏକାନ୍ନବର୍ତ୍ତୀ ପରିବାର ପ୍ରଥା ଏହାର ଅନ୍ୟତମ କାରଣ । ଘରେ ଜଣେ ଦୁଇ ଜଣ ଅର୍ଜ୍ଜକ ଥାଆନ୍ତି ପୁଣି ଅନ୍ୟ କେହି ଉଦାସୀନ ଓ ଆଳସ୍ୟ ପରାୟଣ ହୋଇ ସେମାନଙ୍କ ଉପରେ ଏକାନ୍ତ ନିର୍ଭର କରନ୍ତି । କୌଣସି ଧନୀ ପରିବାର କାଳକ୍ରମେ ଦରିଦ୍ର ଓ ପଦ ଭ୍ରଷ୍ଟ ହେଲେ ସେହି କୁଟୁମ୍ବର ଅଳସୁଆମାନେ ଭିକ୍ଷା ବୃତ୍ତି ଅବଲମ୍ବନ କରନ୍ତି । ଦାରିଦ୍ର୍ୟ ଏକ ଅପରାଧ ବୋଲି ଆମ୍ଭ ଦେଶରେ ଗୃହୀତ ହୁଏ ନାହିଁ । ଦରିଦ୍ର ମାନଙ୍କ ନିମନ୍ତେ ଆମ୍ଭ ଦେଶରେ ଗଭର୍ଣ୍ଣମେଣ୍ଟ ଆଇନ ନାହିଁ । ଗରିବ ଲୋକମାନେ ମାଗିଖାଇ ଜୀବନ ନିର୍ବାହ କରନ୍ତି । ଛୋଟା, ଖଞ୍ଜା, ଛେମ୍ପା, ଅନ୍ଧ, ରୁଗ୍ଣ ପ୍ରଭୃତି ଅକ୍ଷମ ଏବଂ ଅକର୍ମଣ୍ୟ ଲୋକମାନେ ବଞ୍ଚିବା ପାଇଁ ଅନ୍ୟର ଉପରେ ନିର୍ଭର କରନ୍ତି । ସୁତରାଂ ଏମାନଙ୍କୁ ସାହାଯ୍ୟ କରିବା ଧର୍ମ ବୋଲି ଗୃହୀତ ହୁଏ, ବିଶେଷତଃ ଭାରତ ଦେଶରେ ହିନ୍ଦୁମାନଙ୍କର ଏହା ଏକ ପ୍ରଧାନ ଧର୍ମ । ହିନ୍ଦୁମାନଙ୍କର ଜାତି ନିବନ୍ଧନ ହେତୁ ଅନେକ ଲୋକ କାଳ କ୍ରମେ ଅକର୍ମଣ୍ୟ ହୋଇ ଉଠିଲେ । ଯାହାର ଯେଉଁ ଦିଗରେ ପ୍ରତିଭା ଏବଂ ସ୍ୱାଭାବିକ ପ୍ରବଣତା ଥାଏ ସେହି ଦିଗରେ ସେହି ଲୋକ କାର୍ଯ୍ୟ କରିବାକୁ ସକ୍ଷମ ହୁଏ ନାହିଁ, ଯେହେତୁ ଏହି ଜାତିଭେଦ ହେତୁ ଅନେକ ଲୋକଙ୍କୁ ଆପଣା ଇଚ୍ଛା ଓ ସାମର୍ଥ୍ୟ ଅନୁସାରେ କାର୍ଯ୍ୟ କରିବାକୁ ହୁଏ ନାହିଁ, ଆପଣାର କୌଳିକ ନିୟମ ଓ ବଂଶ ପାରମ୍ପର୍ଯ୍ୟ ରୀତି ଅନୁସାରେ କାର୍ଯ୍ୟ କରିବାକୁ ପଡେ । ପ୍ରକୃତି ବିରୁଦ୍ଧ କାର୍ଯ୍ୟ ହେତୁ ପ୍ରତିଭା ବିକାଶ ପ୍ରାପ୍ତ ହୋଇ ପାରେ ନାହିଁ । ସୁତରାଂ ଲୋକରେ ଅକର୍ମଣ୍ୟତାର ମାତ୍ରା ବୃଦ୍ଧି ଲାଭକରେ । କୃଷି ବ୍ୟବସାୟ ନୀଚ ଲୋକ ହାତରେ ରହିଲା, ଶିଳ୍ପ ବାଣିଜ୍ୟ ଉପେକ୍ଷିତ ହେଲା; ବିଦ୍ୟା ସମସ୍ତଙ୍କ ଆୟତ୍ତ ହେଲା ନାହିଁ, କେବଳ ଜାତିର ଜନ୍ୟା

ଶିକ୍ଷାରୁ ଆଜୀବନ ବଞ୍ଚିତ କରିବାକୁ ହେଲା, ଶାରୀରିକ ପରିଶ୍ରମ ପ୍ରତି ଘୃଣା ଜାତ ହେଲା । ଲୋକଙ୍କର ଏହି ଧର୍ମ ଧାରଣା ଦେଖି ଅନେକ ଲୋକ ଲାଗି ଖାଇବା ଛାଡ଼ି ମାଗି ଖାଇବାକୁ ନିଜ ବୃତ୍ତି କଲେ । ଅନେକ ଅଳସୁଆ ପରାୟଣ ଲୋକ ବୈଷ୍ଣବ ଓ ବୈରାଗୀ ନାମରେ ଦ୍ୱାରେ ଦ୍ୱାରେ ବୁଲି ମାଗି ଖାଇ ଜୀବନ କଟାଇ ନେଲେ ଏବଂ ବ୍ରାହ୍ମଣ ନାମରେ ଅନେକ ଲୋକ ଭିକ୍ଷାକୁହିଁ ଆପଣାର ସର୍ବପ୍ରଧାନ କର୍ତ୍ତବ୍ୟ ଜ୍ଞାନକଲେ । ପୁଣି ଶୁଦ୍ଧ, ଶ୍ରାଦ୍ଧ, ବ୍ରତ, ବିବାହ ପ୍ରଭୃତି ଶୁଭାଶୁଭ କାର୍ଯ୍ୟ ମାନଙ୍କରେ ବ୍ରାହ୍ମଣ ଭୋଜନ ଦେବା ରୀତି ଗୋଟିଏ ପ୍ରସିଦ୍ଧ ଧର୍ମ ବୋଲି ଚଳନ୍ତି ପ୍ରଥା ଅଛି । ଲୋକଙ୍କର ଏହି ଧର୍ମ ରକ୍ଷା ନିମନ୍ତେ ବ୍ରାହ୍ମଣମାନେ ସକଳ ଶିକ୍ଷା ଦୀକ୍ଷା ଛାଡ଼ି ଖାଇବା ନିମନ୍ତେ ଦ୍ୱାର ଦ୍ୱାର ବୁଲି ଜୀବନ ଯାପନ କରନ୍ତି । ଏହିପରି ନାନାବିଧ କାରଣରୁ ଆଜି ଅସଂଖ୍ୟ ଭିକ୍ଷୁ ଭାରତ ଦେଶର ଗଳଗ୍ରହ ହୋଇ ଅଛନ୍ତି ।

ପାଶ୍ଚାତ୍ୟ ଶିକ୍ଷା ସଭ୍ୟତା ହେତୁ ଆଜି ଅନେକ ଲୋକଙ୍କର ଧର୍ମଧାରଣାର ପରିବର୍ତ୍ତନ ଘଟିଅଛି । ଏମାନେ ଆତ୍ମନିର୍ଭର ଶିକ୍ଷା ଦେବାକୁ ଚାହାନ୍ତି, ବିଦ୍ୟା ଶିକ୍ଷାର ଯୋଗାଡ଼ କରନ୍ତି, ଶିଳ୍ପ ଏବଂ ଯୌଥ କାରବାରର ଅନୁଷ୍ଠାନ କରନ୍ତି, ବିଶାଳ କର୍ମକ୍ଷେତ୍ର ଗଢ଼ିଅଛି, ଯେ ଯାହା ସାମର୍ଥ୍ୟାନୁସାରେ କାର୍ଯ୍ୟ କର ବୋଲି ଉପଦେଶ ଦିଅନ୍ତି । କିନ୍ତୁ ଏହି ଉପଦେଶ ଶୁଣୁଛି କିଏ ? ବ୍ରାହ୍ମଣମାନେ, ବିଶେଷତଃ ଶାସନୀ ବ୍ରାହ୍ମଣମାନେ ଭିକ୍ଷାକୁ ଆପଣାର ପ୍ରଧାନ ଜୀବିକା କରି ଅଛନ୍ତି, ଏମାନେ ଶୈଶବାବସ୍ଥାରୁ ଭିକ୍ଷା ଶିକ୍ଷା କରନ୍ତି ପୁଣି ଉପନୟନ କାଳେ ଏହି ଭିକ୍ଷା ଦୀକ୍ଷା ଦୃଢ଼ୀଭୂତ ହୁଏ । ପ୍ରାୟ ପ୍ରତ୍ୟହ ପ୍ରତ୍ୟେକ ଗ୍ରାମରେ ଶାସନୀ ବ୍ରାହ୍ମଣ ଗଣ ଦଳ ଦଳ ହୋଇ ଭିକ୍ଷା ମାଗି ବୁଲୁଛନ୍ତି, କାହାଠାରୁ ଏକ ପଇସା, କାହାଠାରୁ ଚାଉଳ ତୋଳେ, କାହାଠାରୁ ନାଇଗଣ ପୁଳେ, କାହାଠାରୁ ଆମ୍ବ ଖଣ୍ଡେ, କାହାଠାରୁ ପିଆଜ ଗଣ୍ଡେ, ଏହିପରି ମାଗି ମାଗି ସଂଗ୍ରହ କରନ୍ତି, ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଦ୍ୱାର ଦ୍ୱାର ବୁଲି ଯାହା ସଂଗ୍ରହ କରନ୍ତି ତହିଁରେ କୁଟୁମ୍ବ ପରି ପୋଷଣ କରନ୍ତି । ଏମାନଙ୍କୁ ଯଦି କେହି କହିବ, ତୁମେମାନେ ସବଳ-କାୟ ଅଛ, ହୃଷ୍ଟ ପୁଷ୍ଟ ଅଛ, ପରିଶ୍ରମ କରିପାରିବ, ଯେ କୌଣସି କାମ କରି ଜୀବିକା ନିର୍ବାହ କରିପାରିବ, ତୁମ୍ଭେମାନେ ସକଳ କାର୍ଯ୍ୟ ଛାଡ଼ି ମାଗିବାକୁ ହିଁ ଆପଣାର ବୃତ୍ତି କରି-ଅଛ, ତେବେ ସେମାନେ ଏହି ଉତ୍ତର ଦିଅନ୍ତି—ମାଗିବା ହିଁ ଆମମାନଙ୍କର ପ୍ରଧାନ ବୃତ୍ତି । ଏମାନଙ୍କୁ ଯଦି କେହି କହିବ, ତୁମେ ମାନେ ଘାସ କାଟ, ମାଟି ବୁହ, ପଇସା ନିଅ, ତେବେ ଏମାନେ ରାଗାନ୍ଧ ହୋଇ ଶାପ ଦେବାକୁ ବସନ୍ତି । ସେଦିନ ଏକ ଶାସନୀ ବ୍ରାହ୍ମଣ କିଛି ମାଗିବାକୁ ଆସିଥିଲେ; ଏହାଙ୍କର କୌଣସି ଶିକ୍ଷା ଦୀକ୍ଷା ନାହିଁ, କେବଳ ମାଗି ଖାଇ ବଞ୍ଚିବା ହିଁ ଏହାଙ୍କର ପ୍ରଧାନ ଧର୍ମ । ଏହାଙ୍କୁ ମୁଁ କହିଲି, ତୁମେ ମାଟିଅଣି ଆମ ଦ୍ୱାରେ ପକାଅ, ତୁମକୁ ପଇସା ଦିଆଯିବ । ସେ କହିଲେ, ମୋତେ ବୟସ ବର୍ଷ ଅଶୀ ହେଲା, ଏପର୍ଯ୍ୟନ୍ତ ମୋତେ ଏପରି କଥା କେହି କହି ନଥିଲା, ଆଉ କେତେ ବର୍ଷ ବଞ୍ଚିବି ଏକାଳେ ମାଟି ବୋହିବି, ଜାତିକୁ ନଷ୍ଟ କରିବୁ? ଶୁଖି ୨ ପଟେ ମରିବୁ, ଆମ୍ଭେମାନେ ଏପରି ନୀଚ କର୍ମ କେବେ କରିବୁ ନାହିଁ ।

ଆପଣ ନଦେଲେ ନଦିଅନ୍ତୁ, ଏକଦ୍ୱାର ବନ୍ଦ ହେଲେ ସୁଦ୍ଧା ସଂସାର ପଡ଼ିଅଛି, ଶହେଦ୍ୱାର ଖୋଲା ଅଛି । ପ୍ରିୟ ପାଠକେ, ଦେଖନ୍ତୁ ଏହି ଭିକ୍ଷୁକମାନେ ନାନାପ୍ରକାର ଲାଞ୍ଛନା ଭୋଗ କରିବେ, ଅନାହାରରେ ପ୍ରାଣତ୍ୟାଗ କରିବେ କିନ୍ତୁ କାମ କରିବେ ନାହିଁ ।

ଆଜିକାଲି ଇଂରାଜୀ ଶିକ୍ଷା ଓ ସଭ୍ୟତା ପ୍ରଭାବରେ ଶିକ୍ଷିତ ଲୋକଙ୍କର ଧର୍ମ ଧାରଣାର ପରିବର୍ତ୍ତନ ଘଟିଅଛି । ଏହିପରି ଭିକ୍ଷା ଦେବାକୁ ଅନେକେ ପୁଣ୍ୟକାର୍ଯ୍ୟ ମନେ କରନ୍ତି ନାହିଁ । ଏମାନେ ଭିକ୍ଷୁକ ମାନଙ୍କୁ କାମ କରି ଉପାର୍ଜ୍ଜନ କରିବାକୁ କହନ୍ତି, କିନ୍ତୁ ବ୍ରାହ୍ମଣ ନାମା ଭିକ୍ଷୁକ ମାନେ ଏବଂ ବେଶଧାରୀ ବୈଷ୍ଣବମାନେ ଶୁଣିବା ଲୋକ ନୁହନ୍ତି । ଏମାନେ ଅନାହାରରେ ଶୁଖି ଶୁଖି ମରିବେ ସିନା କାମକରି ପେଟ ପୋଷିବାକୁ ଚାହାନ୍ତି ନାହିଁ । ନାମଧାରୀ ବ୍ରାହ୍ମଣ ମାନଙ୍କ ଲୋଭାତିଶଯ୍ୟ ଏବଂ ବୈରାଗୀମାନଙ୍କର ଛଦ୍ମ ବେଶ ଲୋକସାଧାରଣ ବୁଝିପାରି ଭିକ୍ଷା ଦେବାକୁ ଆଉ ଅଗ୍ରସର ହୁଅନ୍ତି ନାହିଁ, ତଥାପି ଲୋକମାନଙ୍କର ଏହିଧର୍ମ ଧାରଣା ସମ୍ପୂର୍ଣ୍ଣ ଦୂର ହେବା ପର୍ଯ୍ୟନ୍ତ ଏହି ଭିକ୍ଷୋପଜୀବୀମାନେ ଯେନତେନ ପ୍ରକାରେଣ ଆପଣା ଜୀବିକା ନିର୍ବାହ କରୁଥିବେ । ସେ ଯାହାହେଉ, ଆଜି ଏହି ଭିକ୍ଷୋପଜୀବିମାନେ ବିଷମ ସମସ୍ୟାରେ ପଡ଼ି ଅଛନ୍ତି ।

ଏହି ଅଭେଦ ଭିକ୍ଷାଦାନ ଦ୍ୱାରା ପୁଣ୍ୟ ବା ପାପ ହୁଏ, ବର୍ତ୍ତମାନ ଏହାର ବିଚାର କରାଯାଉ । ଭିକ୍ଷାଦେବା ଦ୍ୱାରା ଭିକ୍ଷୁକ ସଂଖ୍ୟା ଦିନକୁଦିନ ବୃଦ୍ଧି ଲାଭ କରେ । ଜୀବିକୋପାୟ ସହଜରେ ନିର୍ବାହ ହେବାହେତୁ ଅନେକଲୋକ ଭିକ୍ଷାର୍ଥୀ ହୁଅନ୍ତି ଏବଂ ଅକର୍ମଣ୍ୟ ହୋଇ ପଡ଼ନ୍ତି । ସମାଜର ସମ୍ପଦ ଉପାର୍ଜ୍ଜନ ଶକ୍ତି କମିଯାଏ ପୁଣି ଏମାନେ ପରିଶ୍ରମୀ ଗୃହସ୍ଥର ଗଳଗ୍ରହ ହୁଅନ୍ତି । ଆଳସ୍ୟପରାୟଣ ଭିକ୍ଷୁକଙ୍କୁ ଭିକ୍ଷାଦେବା ଦ୍ୱାରା ଦାତାର କ୍ଷତି ହୁଏ, ଗ୍ରହୀତାର କ୍ଷତି ହୁଏ, ଏବଂ ସମାଜର କ୍ଷତିହୁଏ । ଗ୍ରହୀତାର ସଦ୍ୟଲାଭ ହେଲେହେଁ ପରିଣାମରେ ତାହାର କ୍ଷତିହୁଏ । ଦେବାଲୋକର କ୍ଷତିହୁଏ ଯେହେତୁ ତାହାର ଧନ ବୃଥାବ୍ୟୟ ହୁଏ, ପାପହୁଏ ଯେହେତୁ ଏପରି ଦେବାହେତୁ ଲୋକେ ଆଳସ୍ୟପରାୟଣ ଏବଂ ଅକର୍ମଣ୍ୟ ହୋଇ ପଡ଼ନ୍ତି ପୁଣି ଏହି ଭିକ୍ଷାର୍ଥୀମାନେ ଆପଣାର ଜୀବନ ନିର୍ବାହ ନିମନ୍ତେ ପର ଉପରେ ଏକାନ୍ତ ନିର୍ଭର କରି ଅନ୍ୟର ପରିଶ୍ରମାର୍ଜ୍ଜିତ ଅନ୍ନ ଧ୍ୱଂସକରି ସମାଜର ଗଳଗ୍ରହ ହୁଅନ୍ତି । ଏହି ଭିକ୍ଷାର୍ଥୀମାନଙ୍କୁ ଭିକ୍ଷା ଦେବା ରୋଗୀଙ୍କୁ ଅପଥ୍ୟ ଖୁଆଇବା ନ୍ୟାୟ ପରିଣାମରେ ଦାତା ଓ ଗ୍ରହୀତା ଉଭୟଙ୍କର ଅପକାର ସାଧନ କରେ । ବ୍ରାହ୍ମଣ ଓ ବୈଷ୍ଣବ ନାମଧାରୀ ଭିକ୍ଷୋପଜୀବିମାନେ, କୌଣସି ଶାରୀରିକ ପରିଶ୍ରମ ପୂର୍ବକ ଧନୋପାର୍ଜ୍ଜନ କରିବାକୁ ଅସମ୍ମାନ ବୋଧକରନ୍ତି । ଅନେକେ ଅନାହାରରେ ପ୍ରାଣନଷ୍ଟ କରିବେ ପଛେ କାମ କରିବେ ନାହିଁ । ଏମାନେ ମରିବା ଦ୍ୱାରା ସମାଜର କୌଣସି କ୍ଷତି ନାହିଁ ବରଂ ଶ୍ରେୟଃସାଧିତ ହେବ ।

ଆମ୍ଭମାନଙ୍କର ଏହି ଧର୍ମ ଧାରଣା ଭାରତରେ ଦାରିଦ୍ର୍ୟର ଏକପ୍ରଧାନ କାରଣ । ଏହି ଧର୍ମ ଧାରଣା ମନୁଷ୍ୟର ମନୁଷ୍ୟତ୍ୱ ଅପହରଣ କରୁଅଛି । ପୁରୋହିତ ବ୍ରାହ୍ମଣମାନଙ୍କ

ଏହିଧର୍ମ, ଏହି ଦାରିଦ୍ର୍ୟର ପ୍ରଧାନ ପ୍ରବର୍ତ୍ତକ । ପାଶ୍ଚାତ୍ୟ ଶିକ୍ଷା ଆଲୋକରେ ଏହି ତାମସିକ ଧର୍ମ ଦିନକୁଦିନ ତିରୋହିତ ହେଉଛି ।

## ଭାରତ ଜାତି ଓ କାଉଣ୍ଟ ଓକୁମା

ରାଜନୀତି ନିପୁଣ ଜାପାନର ଜଣୈକ ପ୍ରଧାନ ରାଜମନ୍ତ୍ରୀ ଯାହାଙ୍କର ଭାରତ ପ୍ରତି ପ୍ରଗାଢ଼ ସ୍ନେହ ଓ ଭକ୍ତି ଅଛି, ଜାପାନ ଓ ଭାରତ ସମ୍ପ୍ରଦାୟର ପ୍ରଥମ ଅଧିବେଶନ ସମୟରେ ସେଦିନ ସଭାପତି ଆସନ ଗ୍ରହଣ ପୂର୍ବକ କହିଥିଲେ କି ଭାରତ ପ୍ରାଚୀନ ସଭ୍ୟତାର ମୂଳାଧାର ଥିଲା । ପୂର୍ବ କାଳରେ ଧର୍ମରେ, ସାହିତ୍ୟରେ, କୃଷି ବାଣିଜ୍ୟାଦି ବ୍ୟବସାୟରେ ମଧ୍ୟ ଭାରତ ଅନ୍ୟାନ୍ୟ ଦେଶର ଆଦର୍ଶ ସ୍ଥାନୀୟ ହୋଇଥିଲା । ଏପରି କୌଣସି ପ୍ରାଚ୍ୟ ବା ପାଶ୍ଚାତ୍ୟ ଦେଶ ନାହିଁ ଯେଉଁ ଭାରତ ସଭ୍ୟତାରୁ କିଛି ଶିକ୍ଷା କରି ନାହିଁ । ଆଜି ଭାରତର ଜାତି ପ୍ରଣାଳୀ, ସାଧାରଣ ଧର୍ମ ଓ ବିଭିନ୍ନ ଭାଷାକୁ ଭାରତ ପତନର କାରଣ ବୋଲି ନିର୍ଦ୍ଦେଶ କରିବାକୁ ହେବ । ପ୍ରାୟ ୫୦ ବର୍ଷ ପୂର୍ବେ ଜାପାନ ପାଶ୍ଚାତ୍ୟ କ୍ଷମତାର ସଂସ୍ରବରେ ଆସିଲା, ପୁଣି ନିଜର ତ୍ରୁଟି, ନିଜର ଦୋଷ ଜାଣି ପାରିବା ମାତ୍ରେ ଅନ୍ୟାନ୍ୟ ଜାତିର ସକଳ ସଦ୍‌ଗୁଣ, ସଦ୍ ବିଷୟ ଓ ସଭ୍ୟୋଚିତ ନୀତିସବୁ ଶିକ୍ଷାକରି ଏବଂ ତାହା ହୃଦୟଙ୍ଗମ କରି ଆତ୍ମସାତ୍ କଲା । ୫୦ ବର୍ଷ ପୂର୍ବେ ଭାରତ ପରି ଜାପାନରେ ମଧ୍ୟ ତାହାର ଏକ ରକମ ଜାତି ଥିଲା । ଏହି ଜଟିଳ ଜାତି ଏକାବେଳକେ ପରିତ୍ୟାଗ କରି ୟୁରୋପୀୟ ଉତ୍କୃଷ୍ଟ ସାମାଜିକ ରୀତିନୀତି ଜାପାନୀ ମାନେ ଶିକ୍ଷାକଲେ । ଭାରତବାସୀମାନେ ଆଜି ସେପରି କରିବାକୁ ଧୈର୍ଯ୍ୟଶାଳୀ ହେବେକି ? ଯେତେବେଳେ ଭାରତୀୟ ପ୍ରଧାନ ଚାରିଜାତି ମଧ୍ୟରୁ ଏକ ଜାତିର ଶାଖା ପ୍ରଶାଖା ମାନଙ୍କ ମଧ୍ୟରେ ପରସ୍ପର ଘରେ ଭୋଜନ ସମ୍ବନ୍ଧ ରଖାଯାଇ ପାରୁନାହିଁ ତେବେ ଭାରତ ଆଉ କିପରି ଏହି ପତନରୁ ଉଠି ଉନ୍ନତି ସାଧନ କରିବ ? ବର୍ତ୍ତମାନ ଅବସ୍ଥାରେ ଇଂରାଜ ଗବର୍ଣ୍ଣମେଣ୍ଟ ଭାରତବାସୀଙ୍କ ପକ୍ଷେ ଅତି ଉତ୍ତମ ବ୍ୟବସ୍ଥା କରି ଅଛନ୍ତି । ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ସହିତ ବିରୁଦ୍ଧାଚରଣ କରିବା ଭାରତର ଆତ୍ମ ବିନାଶ ବ୍ୟାପାର ଅଟେ । ଯେଉଁ ଜାତିର ଆତ୍ମ ପରୀକ୍ଷା ନାହିଁ, ଆତ୍ମ ବିଚାର ନାହିଁ, ଯେଉଁ ଜାତି ନିଜର ଅଭାବ, ତ୍ରୁଟି, ଦୋଷ, ଗୁଣ ଓ କ୍ଷମତା ବୁଝିପାରି ନାହିଁ ସେହି ଜାତି କଦାପି ଉନ୍ନତି ଲାଭ କରି ନାହିଁ ।

ହେ ଭାରତବାସୀ ଜାତି ନେତୃବୃନ୍ଦ, କାଉଣ୍ଟ ଓକୁମାଙ୍କର ଉପରୋକ୍ତ ବାକ୍ୟ ମୂଲ୍ୟବାନ ଭାବ ଗୁଡ଼ିକର ସାରସାର ନିଜ ହୃଦୟରେ ଗ୍ରଥିତ କରନ୍ତୁ ।

# ବୈଦିକ କର୍ମକାଣ୍ଡ ।

ମର୍ମ ନବୁଝି କର୍ମ କଲେ ବିଷମ ଭ୍ରମରେ ପଡ଼ିବାକୁ ହୁଏ । ଅନେକ ସମୟରେ ମନୋଗତ ଭାବ ଅଭିନୟ ବା ଠାର ଦ୍ୱାରା ବ୍ୟକ୍ତ କରାଯାଏ । କୌଣସି ବ୍ୟକ୍ତିକି ଏଠେ ଆସ ବୋଲି ଡାକିବା ବଦଳରେ ହାତରେ ଠାର ଦେବାକୁ ହୁଏ । ଏହି ଠାର ଦେଖି ସେହି ଲୋକ ଆସିଯାଏ, କିନ୍ତୁ ଆସିବା ବେଳେ ନିଜ ହାତରେ ସେହି ଠାର କରି ଆସେ ନାହିଁ । ଶ୍ରୁତି, ସ୍ମୃତି ଓ ବ୍ୟବସ୍ଥାଦିରେ ମଧ୍ୟ ଅଭିନୟର ଅର୍ଥ ନବୁଝି ଅନର୍ଥରେ ପଡ଼ିବାକୁ ହୁଏ । ହିନ୍ଦୁ ମାନଙ୍କର ବୈଦିକ କର୍ମକାଣ୍ଡ ଆଜି ବିଷମ ଭ୍ରମ ଘୂର୍ଣ୍ଣିରେ ପରିଣତି ଲାଭ କରିଅଛି । ଗାୟତ୍ରୀ ଜପ ବିଧାନ ଦେଖନ୍ତୁ । "ଗାୟତ୍ର୍ୟାଃ, ବିଶ୍ୱାମିତ୍ର ଋଷିଃ, ଗାୟତ୍ରୀ ଛନ୍ଦଃ, ସବିତା ଦେବତା, ଜପେ ବିନିଯୋଗଃ" ଗୁରୁଦେବ ଶିଷ୍ୟଙ୍କୁ ଗାୟତ୍ରୀ ଉପଦେଶ ଦେଲାବେଳେ ଏହି କଥା କହନ୍ତି—ଗାୟତ୍ରୀନାମ ସ୍ମରଣ ବା ଶ୍ରବଣ ମାତ୍ରେ ଭକ୍ତି ପୂର୍ବକ କୃତାଞ୍ଜଳି ପ୍ରଣତ ହେବାକୁ ହୁଏ; ଏଣୁ "ଗାୟତ୍ର୍ୟାଃ" କହିବାବେଳେ ନମସ୍କାର କର । ଏହି ଆଦେଶ ଦେବା ବଦଳରେ ଗୁରୁଦେବ "ଗାୟତ୍ର୍ୟାଃ" ବୋଲିବା ସଙ୍ଗେ ସଙ୍ଗେ ଆପଣା ହାତଯୋଡ଼ି ଶିଷ୍ୟଙ୍କୁ ଦେଖାଇ ଦିଅନ୍ତି । ଏହି ଗାୟତ୍ରୀ ମନ୍ତ୍ରର ପ୍ରକାଶକ ଅଟନ୍ତି ବିଶ୍ୱାମିତ୍ର ଋଷି । ଏହି ଋଷିଙ୍କି ଶିରୋଧାର୍ଯ୍ୟ କରିବାକୁ ହେବ—ଏହି ଆଦେଶ ବଦଳରେ ହସ୍ତଦ୍ୱାରା ଆପଣାର ଶିର ସ୍ପର୍ଶ କରି ଠାର ଦିଅନ୍ତି । ଗାୟତ୍ରୀ ଛନ୍ଦ ( ୨୪ ଅକ୍ଷର ଯୁକ୍ତ, ୩ ପାଦରେ ବିଭକ୍ତ ଛନ୍ଦ ) ରେ ଏହି ମନ୍ତ୍ର ପାଠ କରିବାକୁ ହେବ—ଏହି କଥା ନକହି ହସ୍ତକୁ ଆପଣା ମୁଖାଗ୍ରରେ ରଖି ଠାର ଦିଅନ୍ତି । ସବିତା ଅଟନ୍ତି ଏହି ମନ୍ତ୍ରର ଦେବତା ( ଅର୍ଥାତ୍ ସବିତାଙ୍କ ଉଦ୍ଦେଶ୍ୟରେ ପ୍ରକାଶିତ, ସବିତା ଦ୍ୱାରା ଏହି ମନ୍ତ୍ରରେ ପରମେଶ୍ୱରଙ୍କ ଆରାଧନା କରାଯାଏ ) ଏହାଙ୍କୁ ଆପଣା ହୃଦୟରେ ରଖ—ଏହି ଆଦେଶ ବଦଳରେ ଆପଣା ହସ୍ତଦ୍ୱାରା ନିଜ ହୃଦୟ ସ୍ପର୍ଶ କରି ଶିଷ୍ୟଙ୍କୁ ଆପଣା ମନୋଗତ ଭାବ ଜଣାଇ ଦିଅନ୍ତି । କିନ୍ତୁ ଆଜି ଲୋକେ ଉକ୍ତ ହସ୍ତାଭିନୟର ଉଦ୍ଦେଶ୍ୟ ବୁଝି ନପାରି ସେହି ଠାର ଗୁଡ଼ିକୁ ମନ୍ତ୍ରାଙ୍ଗ ରୂପ ଗ୍ରହଣ କରି କେବଳ ନିଜ ପାଇଁ ଅଭିନୟ କରି ବସନ୍ତି ।

ଅଙ୍ଗନ୍ୟାସ, କରନ୍ୟାସ ଓ ପ୍ରତ୍ୟକ୍ଷରନ୍ୟାସ—କୌଣସି ମନ୍ତ୍ରକୁ ଆପଣା କରରେ ଅଙ୍ଗରେ ଏବଂ ଉକ୍ତ ମନ୍ତ୍ରର ପ୍ରତ୍ୟକ୍ଷରକୁ ସୁଦ୍ଧା ଅଙ୍ଗର ବିଭିନ୍ନ ଅଂଶରେ ସ୍ଥାପନ କରିବାକୁ ହୁଏ । ଶରୀରକୁ ମନ୍ତ୍ରମୟ କରିବା ଏବଂ ମନ୍ତ୍ରକୁ ଶରୀରସ୍ଥ କରିବା—ଅର୍ଥାତ୍ ମନୋବାକ୍‌କାୟରେ ମନ୍ତ୍ରର କି ସ୍ଥାନ, ସ୍ଥିର କରିବା ହିଁ ଏହି ନ୍ୟାସର ଉଦ୍ଦେଶ୍ୟ । ଏହି ଉଦ୍ଦେଶ୍ୟ ନବୁଝି ଅନେକ ଲୋକ ଏକାନ୍ତ ଅନ୍ୟମନସ୍କ ଥିଲେହେଁ ମନ୍ତ୍ରୋଚ୍ଚାରଣ ପୂର୍ବକ ତାହାକୁ ଜଙ୍ଘା ପର୍ଯ୍ୟନ୍ତ ଛୁଇଁ ଯାଆନ୍ତି ।

ଉକ୍ତ ବିଷୟମାନ ହେତୁରୁ କର୍ମ କାଣ୍ଡରେ ବିପର୍ଯ୍ୟୟ ଘଟୁଥାଏ । "ଗନ୍ଧ ପୁଷ୍ପଂ ଭୂଷ୍ଣୀ"

ଲିପ୍ତ ପିଣ୍ଡୋପରି ଗନ୍ଧ ପୁଷ୍ପ ଦାନ ବେଳେ ଭୂଙ୍ଗ ହୋଇ ଦେବା ପାଇଁ ଆଦେଶ ଥିଲା । ଏହି ଆଦେଶର ଅର୍ଥ ନବୁଝି ପୁରୋହିତ ମାନେ ଉଚ୍ଚ ସ୍ୱରରେ " ଗନ୍ଧ ପୁଷ୍ପଂ ଭୂଷ୍ଣାଂ " ବୋଲି ବୋଲି ପିଣ୍ଡ ଉପରେ ଗନ୍ଧ ପୁଷ୍ପ ଦେଉଛନ୍ତି । ପୁଣି ଆଉ ଏକ ଦୃଷ୍ଟାନ୍ତ ଦେଖନ୍ତୁ — ଦଦାମି--ଦେଉଛି, ଦଦସ୍ୱ--ଦିଅ । କିନ୍ତୁ ନେବା ଲୋକମାନେ ଅନେକ ସମୟରେ " ଦଦାନି" ବୋଲି କହନ୍ତି । ବୈଶ୍ୟଦେବ ବିଧାନ ଦେଖନ୍ତୁ — କୁଶ ହସ୍ତଂ, ଗୋମୟଂ, ଉଦକ ପାର୍ଶ୍ୱଂ ଇତ୍ୟାଦି ବାକ୍ୟ ବୋଲିବାକୁ ହୁଏ । କୁଶ, ପାଣି ଓ ଗୋବର ରଖିବାର କଥା । କିନ୍ତୁ ଏହି ବାକ୍ୟ ପ୍ରତି ଯେତେ ଦୃଷ୍ଟି, ପଦାର୍ଥ ପ୍ରତି ସେତେ ଦୃଷ୍ଟି ନଥାଏ । ପୁଣି ସ୍ଥାନ ଲେପନ ସଂକାଶେ ସିନା ଗୋମୟର ପ୍ରୟୋଜନ, ଲିପା ପୋଛା ହୋଇ ପରିଶୁଦ୍ଧ ଥିବା ସ୍ଥାନରେ ଗୋବର ମେଞ୍ଚେ ଆଣି ଥୋଇବା ପ୍ରୟୋଜନ କଣ ? ବିଶ୍ୱଦେବତା ମାନଂକୁତ ଗୋମୟରେ ପୂଜା ହୁଏ ନାହିଁ ।

ଏଉ ଏକ ଅନୁଷ୍ଠାନ— ସର୍ବାଙ୍ଗ ସ୍ନାନ ଶୁଦ୍ଧିର ଅବ୍ୟବହିତ ପରେ ପୁଣିରେ ଅଙ୍ଗ ମାର୍ଜନ କରିବା ବା ଜଳ ଟିକିଏ ନେଇ ଇନ୍ଦ୍ରିୟାଦି ସ୍ପର୍ଶ କରିବାର ପ୍ରୟୋଜନ କଣ ? ସ୍ନାନ ପରି ଯଦି ଭ୍ରମଣାଦି ଅନ୍ୟ କୌଣସି କାର୍ଯ୍ୟରେ କିଛି କାଳ ନିଯୁକ୍ତ ହେବାକୁ ପଡ଼ିଥାଏ ବା ନିଦ୍ରା, ତନ୍ଦ୍ରା, ଆଳସ୍ୟ ଇତ୍ୟାଦି ଉପସ୍ଥିତ ହୋଇଥାଏ, ତେବେ ପୃଥକ ଭାବରେ ଅଙ୍ଗ ମାର୍ଜନ ବା ଜଳରେ ଇନ୍ଦ୍ରିୟମାନ ଧୌତ କରିବା ଆବଶ୍ୟକ । ଏହିପରି ଅନେକ ଅନୁଷ୍ଠାନର ମର୍ମ — ଉଦ୍ଦେଶ୍ୟ ନଜାଣି ବୃଥାରେ କାନ ନାକ ଛୁଇଁ ସମୟ ନଷ୍ଟ କରିବାକୁ ହୁଏ ।



## ଜୀବନ ଓ କର୍ତ୍ତବ୍ୟ ।

ଜୀବନ ଅଟେ ଅନନ୍ତ, ଅସୀମ । ଏହାର ପରମାୟୁ କଳି ସତ୍ୟ ଷାଠିଏ ନୁହେ କିବା ଶତ ବର୍ଷର ପରିମିତ ନୁହେ । ଏହି ଜୀବନର ଅସୀମତାର କିଛି ଉପଲବ୍ଧି କରିବାକୁ ହେଲେ ଏହାକୁ ଅନନ୍ତ ମହାର୍ଣ୍ଣବ ସହିତ ତୁଳନା କରାଯାଇପାରେ । ଏହି ମହାର୍ଣ୍ଣବର ପ୍ରତ୍ୟେକ ଜଳ କଣାର ପ୍ରତ୍ୟେକ ପରମାଣୁ ଏକ ଏକ ପ୍ରାଣୀ ବିଶେଷ । ପ୍ରତ୍ୟେକ ଜଳକଣା ଏହି ମହାର୍ଣ୍ଣବ ବକ୍ଷକୁ ସର୍ବଦା ପ୍ରବାହିତ ହୁଏ । ପ୍ରତ୍ୟେକ ଜୀବ ଏକ ଏକ ଜଳ କଣା ରୂପେ ଆବିର୍ଭୂତ ହୁଏ ଏବଂ କାଳ କ୍ରମେ ବିଯୋଗ ପ୍ରାପ୍ତ ହେଲେ ଏହି ଅନନ୍ତ ଜୀବନରେ ବିଲୀନ ହୁଏ । ପ୍ରବାହିତା ଜଳର ଏକ ଊର୍ମି । ପ୍ରତ୍ୟେକ ସ୍ରୋତସ୍ୱତୀ ଯେପରି ସାଗରରେ ବିଳୟ ପ୍ରାପ୍ତ ହୁଏ, ପ୍ରତ୍ୟେକ ଜୀବ ବିଯୁକ୍ତ ହେଲେ ଅର୍ଥାତ୍ ପଞ୍ଚତ୍ୱ ପ୍ରାପ୍ତହେଲେ ଅନନ୍ତ ଜୀବନରେ ଆତ୍ମ ବିସର୍ଜନ କରେ । ଯେଉଁ ଅନନ୍ତ ଜୀବନ ଗର୍ଭରୁ ପ୍ରାଣୀର ଉତ୍ପତ୍ତି, ଅନ୍ତକାଳେ ପ୍ରାଣିମାନେ ଯାଇ ତହିଁରେ ପ୍ରବେଶ କରନ୍ତି । ଏହି କ୍ଷୁଦ୍ର ପ୍ରାଣୀ ଏକ ଭାବରେ

କ୍ଷଣ ସ୍ଥାୟୀ ହେଲେ ମଧ୍ୟ ଅନ୍ୟ ଭାବରେ ଚିର ସ୍ଥାୟୀ ଅଟେ । ନଦୀର ଜଳ ବିନ୍ଦୁ ବହି ଯାଉଅଛି, କିନ୍ତୁ ପ୍ରତ୍ୟେକ ବିନ୍ଦୁ ଚିହ୍ନ ରଖି ଦେଇ ଯାଉଅଛି ! ଯେଉଁ ଅଲଙ୍ଘ୍ୟ ନିୟମାନୁସାରେ କର୍ମର ଫଳ ଅଛି, ଉତ୍ପତ୍ତିର ବିନାଶ ଅଛି, ସେହି ନିୟମାନୁଯାୟୀ ଜୀବର କର୍ମଅଛି ଏବଂ ଜ୍ଞାନ ଅଛି । ପ୍ରବାହର ଯେପରି ଚିହ୍ନ ରହିଯାଏ କର୍ମର ସେହିପରି ଫଳ ରହିଯାଏ । ପ୍ରାଣୀ ଯାହା କରିଯାଏ ତାହାର ଫଳ ଚିରକାଳ ଲୋକର ଅନୁଭୂତ ହୁଏ । କର୍ମ ଅନୁଭୂତିର କର୍ମ ଜାତ ହୁଏ । Life begets life—ଜୀବରୁ ଜୀବର ଉତ୍ପତ୍ତି । ଜୀବର ଉତ୍ପତ୍ତି ଯେପରି ଅନିବାର୍ଯ୍ୟ, ଜୀବର ମୃତ୍ୟୁ ତଦ୍ରୂପ ଅପରିହାର୍ଯ୍ୟ ।

ମୃତ୍ୟୁ—କୌଣସି କୌଣସି ମହାତ୍ମା ମାନବ ଲୀଳା ଶେଷ କରି ଆମ୍ଭମାନଂକୁ ଛାଡ଼ି ଚାଲି ଯାଇ ଅଛନ୍ତି । ସେ ସ୍ୱର୍ଗ ରାଜ୍ୟକୁ ଚାଲିଯାଇ ଅଛନ୍ତି ସତ୍ୟ, କିନ୍ତୁ ଆଂଭମାନଂକ ପାଇଁ ତାହାଙ୍କର ନାମ ଓ କାମ ତାଙ୍କ ଆଦର୍ଶ ରୂପେ ଛାଡ଼ି ଯାଇ ଅଛନ୍ତି । ଏହିପରି ମହାତ୍ମା ମାନଙ୍କ ନାମର ସ୍ମୃତିରକ୍ଷା ପୂର୍ବକ ଏହାଙ୍କ ପଦାଙ୍କ ଅନୁସରଣକରି ଏହାଙ୍କ ପ୍ରାରବ୍ଧ କର୍ମରେ ଆମ୍ଭେ ମାନେ ପ୍ରାଣ ପଣେ ଲାଗିବା ଆମ୍ଭମାନଙ୍କର ପବିତ୍ର କର୍ତ୍ତବ୍ୟ । ଆମ୍ଭେମାନେ ଭାବୁଥାଉ ଯେ ଏ ମହାତ୍ମା ଆଉ କିଛିକାଳ ଆମ୍ଭମାନଙ୍କ ମଧ୍ୟରେ ଥା'ନ୍ତେ । କିନ୍ତୁ ସେ ଆଉ ଅଧିକ କାଳ ରହିବା ଲୋକ ନଥିଲେ । ଗୁରୁମାନେ ଶିଷ୍ୟମାନଂକୁ ଶିକ୍ଷାଦେଇ ଚାଲି ଯାନ୍ତି, ସେମାନଙ୍କର ଅପେକ୍ଷା କରନ୍ତି ନାହିଁ । କେବଳ ଶିଷ୍ୟ ମାନଂକୁ ଗୁରୁଙ୍କ ଗୁଣ ଗ୍ରହଣ ଓ କର୍ମ ସାଧନରେ ପ୍ରବୃତ୍ତ ହେବାକୁ ହୁଏ । ଯେଉଁମାନେ ଅନୁସରଣ କରନ୍ତି ନାହିଁ ସେମାନେ ପ୍ରକୃତ ଶିଷ୍ୟ ନୁହନ୍ତି, ସେମାନେ ପ୍ରତିଭାର ଆଦର କରି ଜାଣନ୍ତି ନାହିଁ । ଗୁରୁ ଯଦି ସର୍ବଦା ଶିକ୍ଷା ଦେଉଥିବେ ତେବେ ଶିଷ୍ୟମାନେ ଆଉ କେବେ ଗୁରୁ ସ୍ଥାନୀୟ ହୋଇ ଶିକ୍ଷା ଦେବେ ? ଶିକ୍ଷାର ଗୁରୁଙ୍କ ବୟସରେ ସମୟର ପରିମାଣ ସ୍ଥିର କରାଯାଇ ଥାଏ । ଚାଟଶାଳୀ ଅବଧାନ ମାନେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଶିକ୍ଷା ଦିଅନ୍ତି, ନିମ୍ନ ଶ୍ରେଣୀର ମାଷ୍ଟରମାନେ ପାଞ୍ଚ ଛ ଘଣ୍ଟା ଶିଖାନ୍ତି, ଏବଂ ହାଇ ୨ ପ୍ରୋଫେସରମାନେ ଅର୍ଦ୍ଧଘଣ୍ଟା ବା ଘଣ୍ଟେ ମାତ୍ର ଶିକ୍ଷାଦେଇ ଚାଲି ଯାନ୍ତି । ପ୍ରତ୍ୟେକ ଜୀବ ଏହି ଜଗତରେ ଏକ ୨ ଶିଷ୍ୟ ପୁଣି ଏକ ୨ ଗୁରୁ । ଅମ୍ଭେମାନେ ଶିଷ୍ୟ ଭାବରେ ଜନ୍ମ ଗ୍ରହଣ କରି ଗୁରୁ ଭାବରେ ମୃତ୍ୟୁ ଲାଭ କରି ଥାଉଁ, କିନ୍ତୁ କିଏ ଚାଟଶାଳୀ ଅବଧାନ ହୁଏ, କିଏବା ବିଶ୍ୱ ବିଦ୍ୟାଳୟର ବିଶେଷ ଅଧ୍ୟାପକ Professor । ଅନେକ ସମୟରେ ଅନେକ ମହାତ୍ମାମାନେ ଆବିର୍ଭୂତ ହୁଅନ୍ତି । ଏକ ଏକ ବ୍ୟକ୍ତି ଏକ ଏକ ବିଭାଗରେ ପ୍ରତିଭାବାନ ହୋଇ ଉଠନ୍ତି-କିଏ ଜ୍ଞାନ ଯୋଗୀ, କିଏ ସାହିତ୍ୟ ସେବକ, କିଏ କର୍ମବୀର, କିଏ ଭକ୍ତ, କିଏ ଶାନ୍ତ, କିଏ ରାଜନୀତିଜ୍ଞ, କିଏ ଧର୍ମ ପ୍ରଚାରକ, କିଏ ସମାଜ ସଂସ୍କାରକ ଇତ୍ୟାଦି । ରାମମୋହନ, ଦୟାନନ୍ଦ ରାଧାନାଥ, ମଧୁସୂଦନ, ରାମଚନ୍ଦ୍ର, ନରସିଂହ ଇତ୍ୟାଦି ମହାତ୍ମାମାନେ ଭବ ଲୀଳା ସାଙ୍ଗକରି ଚାଲି ଯାଇଛନ୍ତି ।

ଜୀବନର କର୍ତ୍ତବ୍ୟ—ମନୁଷ୍ୟାନ କର୍ତ୍ତବ୍ୟ ସାଧନ ନିମନ୍ତେ ଜୀବ ଶରୀର ଧାରଣ କରୁଅଛି । କର୍ତ୍ତବ୍ୟ ଜ୍ଞାନ ବିହୀନ ଜୀବନ ଗୋଟାଏ ଉଚ୍ଚ ହୀନତା ସଦୃଶ । ଧର୍ମ ପାଳନ କରିବା ଜୀବନର କର୍ତ୍ତବ୍ୟ ଅଟେ । ଧର୍ମ ସାଧନ ନିମନ୍ତେ ଧନୋପାର୍ଜ୍ଜନ କରାଯାଏ । ସୁତରାଂ ଏହି ସଂସାରରେ ଜୀବନ ସହିତ ଧନର ବିଶେଷ ସଂପର୍କ । କର୍ମମୟ ଜୀବନର ଧନ ଏକ ସମ୍ବଳ ମାତ୍ର । ଧନର ପ୍ରକୃତ ଉପାଦେୟତା ଲୋକେ ବୁଝି ନପାରି ଏହାକୁ ଜୀବନ ସମ ଜ୍ଞାନ କରନ୍ତି ପୁଣି ଅନେକେ ଜୀବନ ଅପେକ୍ଷା ଗୁରୁତର ଜ୍ଞାନ କରନ୍ତି, ଯେହେତୁ ଏମାନେ ନିଜ ପ୍ରାଣ ପର୍ଯ୍ୟନ୍ତ ନଷ୍ଟ କରି ଧନ ସଂଗ୍ରହ କରନ୍ତି । ଯେଉଁମାନେ ଧନର ପ୍ରକୃତ ଉଦ୍ଦେଶ୍ୟ ବୁଝି ନଥାନ୍ତି ସେମାନେ ତାହାର ସଦ୍‌ବ୍ୟୟ କରି ପାରନ୍ତି ନାହିଁ । ଲୋକରେ ବିଦ୍ୟା ଶିକ୍ଷାର ଲୋପ ସଙ୍ଗେ ସଙ୍ଗେ ଅବିଦ୍ୟାର ବହୁଳ ପ୍ରଚାର ହୁଏ । ଏହି ଅବିଦ୍ୟା ମୋହରେ ବିମୋହିତ ହୋଇ ଲୋକେ ଧନର ଉଦ୍ଦେଶ୍ୟ ଧରି ପାରନ୍ତି ନାହିଁ, ଅସତ୍ ମାର୍ଗରେ ଧନ ସମ୍ପାଦନ କରିବାକୁ ଯେପରି ପ୍ରବୃତ୍ତ ହୁଅନ୍ତି, ସେହିପରି ସଦ୍‌ବ୍ୟୟ କରିବାକୁ କୁଣ୍ଠିତ ହୁଅନ୍ତି । ଏମାନେ ଯେପରି ଜୀବନର ଅନିତ୍ୟତ୍ୱ ବୁଝି ପାରନ୍ତି ନାହିଁ ପୁଣି ଶରୀରର ବିନାଶ ଓ ବିୟୋଗ ମଧ୍ୟରେ ଏହାର ସୀମା ନିର୍ଦ୍ଦିଷ୍ଟ କରିଥାନ୍ତି, ସେହିପରି ସତ୍‌କର୍ମର ସ୍ଥାୟିତ୍ୱ ଧରି ନପାରି କ୍ଷଣସ୍ଥାୟୀ ପ୍ରଶଂସାରେ ପ୍ରୀତ ହୋଇ ନଶ୍ୱର କ୍ଷଣଭଙ୍ଗୁର ବିଳାସ ମଦରେ ଆସକ୍ତ ହୋଇ ଧନର ଅପବ୍ୟୟ କରିଥାନ୍ତି । ଆମ୍ଭେମାନେ ଶୁଦ୍ଧିରେ, ଶ୍ରାଦ୍ଧରେ, ବିବାହରେ, ବ୍ରତରେ, ବାହ୍ୟାଡମ୍ବରରେ ଏବଂ ଆମୋଦ ପ୍ରମୋଦରେ ଅଜସ୍ର ଧନ ବ୍ୟୟ କରିବାକୁ ଅଣୁମାତ୍ର କୁଣ୍ଠିତ ହେଉନାହୁଁ । ଶରୀର ସହିତ ସ୍ମୃତି ରକ୍ଷା କରିବା ନିମନ୍ତେ ବ୍ୟୟ ସାପେକ୍ଷ ଆଡମ୍ବର ବା ଆମୋଦର ପ୍ରୟୋଜନ ହୁଏ ନାହିଁ । ବହୁ ଲୋକଙ୍କୁ ଭୋଜି ଖାଇବାକୁ ଦେବା ଭଲ କଥା । ତହିଁରେ କୌଣସି ଆପତ୍ତି ରହି ନପାରେ କିନ୍ତୁ ଅନ୍ନ ସତ୍ର ସ୍ଥାପନରେ କିଛିମାତ୍ର ସାହାଯ୍ୟ ନକରି କ୍ଷୁଧାତୃଷାତୁର ଅତିଥିଙ୍କୁ କିଛି ନଦେଇ କନ୍ୟାର ବିବାହ ବା ବାପର ଶୁଦ୍ଧି ଦିବସରେ ସହସ୍ରାଧିକ ଟଙ୍କା ବ୍ୟୟ କରି ଲୋକଙ୍କୁ ଭୋଜିଦେବା ବିବେକର କାର୍ଯ୍ୟ ହୋଇ ପାରେ କି ? ନିତ୍ୟାନିତ୍ୟ ଜ୍ଞାନ ଶୂନ୍ୟ ହେବା ହେତୁ ଏହିପରି ଅପରିଣାମଦର୍ଶିତାର କାର୍ଯ୍ୟ କରିବାକୁ ହୁଏ । ଗୃହସ୍ଥ ଯେପରି ଆପଣାର ପୁତ୍ର କନ୍ୟାର କର୍ଣ୍ଣବେଧ, ବିବାହ ପ୍ରଭୃତି ଉତ୍ସବରେ ଏକ ଏକ ଭୋଜି ଦେଇ ଦେବାରେ ଆପଣାର କର୍ତ୍ତବ୍ୟ ଶେଷ କରେ ସେହିପରି ଗ୍ରାମବାସୀମାନେ ମଧ୍ୟ ଏହି ଭୋଜିକି ଆପଣାର ପ୍ରଧାନ ପ୍ରାପ୍ୟ ମନେକରି ଦାତାର ଅତିରିକ୍ତ ପ୍ରଶଂସା କରନ୍ତି ।

ଅବିଦ୍ୟାର ପ୍ରଭାବ ହେତୁ ଆମ୍ଭମାନଙ୍କର ଧର୍ମ ଧାରଣା ଆଜି ଲକ୍ଷ୍ୟ ଭ୍ରଷ୍ଟ ହୋଇ ପଡ଼ିଅଛି । ଧର୍ମ ହିଁ ସୃଷ୍ଟିର ନିୟମ, ଧର୍ମ ବିହୀନ ସୃଷ୍ଟି ଅସମ୍ଭବ । ଜାତି ଭେଦରେ ଧର୍ମର ଭେଦ ଦେଖାଯାଏ । ପଶୁଜାତି ଓ ମାନବ ଜାତି ମଧ୍ୟରେ ଆହାର, ନିଦ୍ରା, ମୈଥୁନ ସମାନ ଧର୍ମ ହେଲେହେଁ ଉଭୟ ଜାତି ବିଭିନ୍ନ ଧର୍ମ ବିଶିଷ୍ଟ । ମାନବ ଜାତି ମହା ଜୀବ ନାମରେ ଅଭିହିତ, ଜ୍ଞାନ ପିପାସା ମାନବ ଜାତିର ଧର୍ମ, ଅନନ୍ତ ଉନ୍ନତି ପ୍ରୟାସ ମାନବ ଜାତିର ଧର୍ମ, ଅହିଂସା

ପରୋପକାର ପ୍ରଭୃତି ଧର୍ମ ସାଧନ ଦ୍ୱାରା ମାନବ ଜାତି ଅନନ୍ତ ଉନ୍ନତି ଦେଶରେ ପ୍ରଧାବିତ ହୁଏ । ଏହି ଧର୍ମ ସାଧନ ଉଦ୍ଦେଶ୍ୟରେ ଯେଉଁ କର୍ମମାନ କରାଯାଏ ତାହାକୁ ସତ୍‌କର୍ମ କୁହାଯାଏ । ଜ୍ଞାନ ସମ୍ପାଦନ କରିବା, ସତ୍ୟ ଭାଷଣ କରିବା, ଅସହାୟକୁ ସାହାଯ୍ୟ ଦେବା, ବିଦ୍ୟାର୍ଥୀକୁ ବିଦ୍ୟାଦାନ ଦେବା, ସତ୍ ଶିକ୍ଷାର ବିସ୍ତାର ଓ ପ୍ରଚାର କରିବା ଇତ୍ୟାଦି କର୍ମମାନ ପୁଣ୍ୟ କୋଟି ଭୁକ୍ତ, ଯେହେତୁ ମୂଳ ଉଦ୍ଦେଶ୍ୟ — ଅନନ୍ତ ଉନ୍ନତି ସାଧନ ମହାର୍ଣ୍ଣବ ଦିଗକୁ ଏହି ସକଳ ସତ୍‌କର୍ମ ସ୍ରୋତସ୍ୱତୀ ପ୍ରଧାବିତ ହୁଏ । କିନ୍ତୁ ଦୁଃଖର ବିଷୟ ପାତ୍ରାପାତ୍ର ବିବେଚନା ନଥାଇ କିଛି ଦେଇ ଦେବାଟା ଆଜି ଧର୍ମ ନାମରେ ଅଭିହିତ । ଏହି ଦାନ ପାତ୍ରାପାତ୍ର ବିବେଚନା ରହିତ ହେବା ହେତୁ ଅପାତ୍ର ହେଲେହେଁ ଅନେକେ ଭିକ୍ଷାର୍ଥୀ ହୋଇ ବୁଲନ୍ତି, ଦାନ ଦେବାକୁ ଦାନୁଆ ନାମରେ ଅନେକ ଲୋକ ବାହାରନ୍ତି । ପୁଣି ଶୁଦ୍ଧି, ଶ୍ରାଦ୍ଧ, ବ୍ରତ, ବିବାହ, ପାରଣା, ପ୍ରାୟଶ୍ଚିତ୍ତାଦି ଶୁଭାଶୁଭ କାର୍ଯ୍ୟ ମାନଙ୍କରେ ବ୍ରାହ୍ମଣ ଭୋଜନ ଦେବା ସ୍ୱତ ଗୋଟିଏ ପ୍ରସିଦ୍ଧ ଧର୍ମ ପ୍ରଥା ହୋଇ ପଡ଼ିଅଛି । ଏହି ଧର୍ମ ରକ୍ଷା ନିମନ୍ତେ ବ୍ରାହ୍ମଣ ନାମାମାନେ ସକଳ ଶିକ୍ଷା ଦୀକ୍ଷା ଛାଡ଼ି ଖାଇବା ନିମନ୍ତେ ବାର ଦ୍ୱାର ବୁଲି ଜୀବନ ଯାତ୍ରା ନିର୍ବାହ କରନ୍ତି । ଏମାନଙ୍କର ବିଦ୍ୟା ଶିକ୍ଷା ପ୍ରତି ଯେପରି କୌଣସି ପ୍ରବୃତ୍ତି ନାହିଁ, ତଦ୍ରୂପ ବିଦ୍ୟାଳୟ ସ୍ଥାପନ ବା ଛାତ୍ର ବୃତ୍ତି ପ୍ରଦାନ, ଶିଳ୍ପ ବାଣିଜ୍ୟାଦିରେ ଉତ୍ସାହୀ ବ୍ୟକ୍ତିମାନଙ୍କ ନିୟୋଗ କରିବା ପ୍ରଭୃତି ଧର୍ମ କାର୍ଯ୍ୟରେ ଧନୀ ଗୃହସ୍ଥ ମାନଙ୍କର ଆସ୍ଥା ନାହିଁ ।

ଆଉ ଏକ ଗମ୍ଭୀର ପରିତାପର ବିଷୟ ଏହିଯେ, ଧନାଢ୍ୟ ଲୋକମାନଙ୍କର ବ୍ରତ, ବିବାହାଦି ଉତ୍ସବ ମାନଙ୍କରେ ବେଶ୍ୟା ନୃତ୍ୟ ଏକ ଅପରିହାର୍ଯ୍ୟ ଉପକରଣ ହୋଇଅଛି । ଏହି ରାକ୍ଷସୀ ଲୀଳା ଦ୍ୱାରା ଅଜସ୍ର ଧନର ଅପଚୟ ସଙ୍ଗେ ସଙ୍ଗେ ଅନେକ ଲୋକଙ୍କର ଅମୂଲ୍ୟ ପବିତ୍ର ଚରିତ୍ର ଭ୍ରଷ୍ଟ ହେଉଅଛି । ପରିଶ୍ରମୀ ଜନମାନଙ୍କର କ୍ଳାନ୍ତି ଅପନୋଦନ ନିମିତ୍ତ ମଧ୍ୟେ ମଧ୍ୟେ ଆମୋଦର ସୃଷ୍ଟି । ବିଶୁଦ୍ଧ ଆମୋଦ ଚିତ୍ତାକର୍ଷକ ଏବଂ ଉତ୍ସାହ ଜନକ ଅଟେ । କିନ୍ତୁ ବାଇନାଚ ମନୁଷ୍ୟର ତେଜ, ଓଜ, ବୀର୍ଯ୍ୟ ସଙ୍ଗେ ସଙ୍ଗେ ସକଳ ପବିତ୍ରତା ଅପହରଣ କରେ । ଆମ୍ଭମାନଙ୍କ ମଧ୍ୟରୁ ଅନେକେ କୌଣସି ସଦନୁଷ୍ଠାନରେ ସାମାନ୍ୟ ସାହାଯ୍ୟ କରନ୍ତି ନାହିଁ, କିନ୍ତୁ ଶକ୍ତ୍ୟତିରିକ୍ତ ତୋଳି, ମର୍ଯ୍ୟାଦା, ବାଣ, ବାଇନାଚ ପ୍ରଭୃତିରେ ବହୁ ଧନ ବ୍ୟୟ କରି ପରିଣାମରେ ନିଜର ପରିବାର ପୋଷଣ କରିବାକୁ ମଧ୍ୟ ଅସମର୍ଥ ହୁଅନ୍ତି ।

ଆମ୍ଭମାନଙ୍କର ଜମିଦାର ରାଜାମାନେ ଉଚ୍ଚ ଶ୍ରେଣୀର ଲୋକ ବୋଲି ଦାବି କରନ୍ତି । ଏମାନେ ଆମ୍ଭ ଦେଶର ଧନକୁବେର ଅଟନ୍ତି । କିନ୍ତୁ ଏମାନଙ୍କର ଆଦର୍ଶ ସମାଜର ଅନେକ କ୍ଷତି ସାଧନ କରୁଅଛି । ଏମାନେ କର୍ଣ୍ଣବେଧ, ବିବାହ, ଗୃହ ପ୍ରତିଷ୍ଠା କାର୍ଯ୍ୟରେ ଏବଂ ବାଇନାଚ ପ୍ରଭୃତି ଆମୋଦରେ ଅନେକ ଧନ ବ୍ୟୟ କରନ୍ତି । ଏହି ଧନ ବିଦ୍ୟା ଦାନ, ସାହିତ୍ୟ ସେବା, ପ୍ରତିଭାପୂଜା ଓ ମହାତ୍ମା ମାନଙ୍କ ସ୍ମୃତି ରକ୍ଷାରେ ବ୍ୟୟିତ ହେଉଥିଲେ ସମାଜରେ ସଦାଦର୍ଶ ସଙ୍ଗେ ସଙ୍ଗେ ଦେଶର ବହୁଳ କଲ୍ୟାଣ ସାଧିତ ହୁଅନ୍ତା । କିନ୍ତୁ ରାଜାମାନଙ୍କ ଏହି ଉପଦେଷ୍ଟା

କିଏ ଦେବ ? ଯେଉଁ ପାର୍ଶ୍ୱଚର ମାନେ ରାଜାମାନଙ୍କ ବିଳାସ ବର୍ଦ୍ଧିତ ହୃଦୟରେ ଏହି ଭାବ ଜାତ କରାନ୍ତି ସେମାନେ ସ୍ୱାର୍ଥାନ୍ୱେଷୀ, ଧନ ଲୋଲୁପ ।

ୟୁରୋପ, ଆମେରିକା, ଯାପାନ ପ୍ରଭୃତି ସଭ୍ୟ ଦେଶ ମାନଙ୍କରେ କି ରାଜା, କି ପ୍ରଜା, କି ଧନୀ, କି ଦରିଦ୍ର, କେହିହେଲେ ବିବାହର ଭୋଜରେ, ମର୍ଯ୍ୟାଦାରେ, ତମାସାରେ ଏତେ ଧନ ବ୍ୟୟ କରନ୍ତି ନାହିଁ । ଦରିଦ୍ର ଲୋକମାନେ ଆପଣା ମଧ୍ୟରେ ଚାନ୍ଦାକରି ସାଧାରଣ କାର୍ଯ୍ୟରେ ବହୁତ ବ୍ୟୟ କରନ୍ତି ଏବଂ ଧନାଢ୍ୟ ଲୋକମାନେ ଶିକ୍ଷା ଫଣ୍ଡରେ ଲକ୍ଷାଧିକ, କୋଟାଧିକ ଧନ ଅକାତର ଭାବରେ ଦାନ କରିଥାନ୍ତି । ଆମ୍ଭେମାନେ ରାଜା, ପ୍ରଜା ଅନେକେ ଇଂରାଜି ଶିକ୍ଷା ଲାଭ କରୁଅଛୁଁ ପୁଣି ସେମାନଙ୍କର ବେଶ ଭୂଷା ପ୍ରଭୃତି ବାହ୍ୟାଡମ୍ବର ମାତ୍ର ଅନୁକରଣ କରୁଅଛୁଁ । କିନ୍ତୁ ସେମାନଙ୍କର ଧୈର୍ଯ୍ୟ, କାର୍ଯ୍ୟ କୁଶଳତା, ସାଧାରଣ କାର୍ଯ୍ୟରେ ଅକାତର ଦାନ ଏବଂ ସ୍ୱଦେଶାଭିମାନ ଅନୁକରଣ କରୁନାହୁଁ ।

---

## ଭାରତ ଦେଶରେ ନୂତନ ଧର୍ମ ।

ଏହି ଧର୍ମ ନିୟମର କେତେକ ଅଂଶ ଭଲ ପୁଣି ଏଥିରେ ଅନେକ ଦୋଷ ମଧ୍ୟ ଅଛି । ଏହି ନୂତନ ଧର୍ମ ପନ୍ଥି ମାନଙ୍କର ନିୟମମାନ ସର୍ବାଂଶରେ ଉତ୍ତମ ବୋଲିଯାଇ ନପାରେ, ଯେହେତୁ ବେଦ ଜ୍ଞାନ ବିହୀନ ଲୋକର କଳ୍ପନା ସର୍ବଥା ସତ୍ୟ ହୋଇପାରେ ନାହିଁ । ଏମାନଙ୍କର ଉତ୍ତମ ନିୟମ ବା ସତ୍କାର୍ଯ୍ୟରେ

୧ ଅନେକ ଲୋକ ଖ୍ରୀଷ୍ଟଧର୍ମାବଲମ୍ବନରୁ ବଞ୍ଚିଲେ,

୨ ପାଷାଣାଦି ମୂର୍ତ୍ତି ପୂଜା କିୟତ୍ ପରିମାଣରେ ରହିତ ହେଲା,

୩ ଅନେକ ଲୋକ କପୋଳ କଳ୍ପିତ ପୁରାଣାଦି ଜାଲ ଗ୍ରନ୍ଥ ବନ୍ଧନରୁ ମୁକ୍ତି ପାଇଲେ,

ଇତ୍ୟାଦି କେତେକ କାର୍ଯ୍ୟଛଡ଼ା ଅନ୍ୟାନ୍ୟ ନିୟମ ଓ କାର୍ଯ୍ୟାବଳୀ କିଛି ଭଲ ନୁହେ ।

ଏମାନଙ୍କର ସ୍ୱଦେଶ ଭକ୍ତି ବହୁତ ନ୍ୟୂନ ଏମାନେ ଅନେକାଂଶରେ ଖ୍ରୀଷ୍ଟଧର୍ମାଚରଣ ଗ୍ରହଣ କରନ୍ତି, ଭୋଜନ ପାନ ବିବାହାଦିର ନିୟମ ଅତିକ୍ରମ କରନ୍ତି, ଆପଣା ଦେଶର ପ୍ରଶଂସା ଓ ପୂର୍ବ ପୁରୁଷ ମାନଙ୍କ ଗୌରବ ଯେକି ବଢ଼ାଇ କରିବା ଛାଡ଼ି ସେମାନଙ୍କର ଯଥେଚ୍ଛା ନିନ୍ଦା କରନ୍ତି; ଖ୍ରୀଷ୍ଟିୟାନ ଓ ୟୁରୋପୀୟ ଜାତି ମାତର ହେଉ ପ୍ରଶଂସା କରନ୍ତି, ବୃଦ୍ଧାଦି ମହର୍ଷି ମାନଙ୍କର ନାମ ଗ୍ରହଣ କରନ୍ତି ନାହିଁ, ସୃଷ୍ଟି ଆରମ୍ଭରୁ ଏପର୍ଯ୍ୟନ୍ତ ୟୁରୋପୀୟ ମାନଙ୍କ ପରି କେହି ବିଦ୍ୱାନ ନାହାନ୍ତି ବୋଲି କହନ୍ତି, ଆର୍ଯ୍ୟାବର୍ତ୍ତୀ ଦେଶ ଲୋକେ ମୂର୍ଖ ଥିଲେ ଏବଂ କିଛି ଉନ୍ନତି କରି ନଥିଲେ ବୋଲି ପ୍ରକାଶ କରନ୍ତି,ବେଦାଦି ସତ୍ ଶାସ୍ତ୍ରର ପ୍ରତିଷ୍ଠା ଓ ମାନନା କରନ୍ତି

ଦୂରେ ଥାଉ ତହିଁର ନିନ୍ଦା କରିବାକୁ ଶଙ୍କିତ ନାହିଁ । ଏମାନଙ୍କ ଗ୍ରନ୍ଥରେ ସାଧୁ ମହାତ୍ମାମାନଙ୍କ ନାମରେ କେବଳ ଈଶା, ମୂଷା, ମହମ୍ମଦ, ନାନକ, ଚୈତନ୍ୟ ନାମର ଉଲ୍ଲେଖ ଅଛି, କୌଣସି ବୈଦିକ ଋଷି ମହର୍ଷି ମାନଙ୍କ ନାମ ଲେଖା ନାହିଁ । ଏଥିରୁ ଜଣାଯାଏ ଯେ ଯେଉଁ ମାନଙ୍କର ନାମ ଏମାନଙ୍କ ଗ୍ରନ୍ଥରେ ଲେଖା ଅଛି, ସେହି ବ୍ୟକ୍ତି ମାନଙ୍କ ମତ ପ୍ରଭାବରେ ଏମାନେ ପରିଚାଳିତ । ଏମାନେ ଆର୍ଯ୍ୟାବର୍ତ୍ତରେ ଜନ୍ମ ଗ୍ରହଣ କରି ସେହି ଦେଶର ଅନ୍ନ ଜଳ ଖାଇ ପିଇ ବଢିଥିଲେହେଁ ଆପଣା ମାତା, ପିତା, ପିତାମହାଦି ମାନଙ୍କ ମାର୍ଗ ଚ୍ୟୁତ ବିଦେଶୀ, ବିଜାତୀୟ ଧର୍ମ ପ୍ରତି ଆକୃଷ୍ଟ ହୁଅନ୍ତି, ସଂସ୍କୃତ ବିଦ୍ୟା ବିହୀନ ହେଲେ ସୁଦ୍ଧା ଆପଣାକୁ ଶାସ୍ତ୍ରଜ୍ଞ ପଣ୍ଡିତ ଜ୍ଞାନ କରନ୍ତି ଏବଂ କିଛି ଇଂରାଜୀ ଭାଷା ଜ୍ଞାନ ପାଇ ନୂତନ ଧର୍ମ ସ୍ଥାପନ ପ୍ରୟାସ କରନ୍ତି । ଏମାନେ ଖ୍ରୀଷ୍ଟିୟାନ୍, ମୁସଲମାନ ଓ ଅନ୍ତ୍ୟଜ ଜାତି ସହିତ ମିଳାମିଶି ଖାଇବା ପିଇବାରେ କିଛି ଭେଦ ରଖନ୍ତି ନାହିଁ । ଏମାନେ ବୁଝିଛନ୍ତି ଯେ, ଖାଦ୍ୟପାନରେ ଭେଦ ଜ୍ଞାନ ଏବଂ ଜାତି ଭେଦ ବିଚାର ଉଠାଇ ଦେଲେ ଏମାନଙ୍କର ଏବଂ ଦେଶର ଉନ୍ନତି ହୋଇଯିବ । ଏମାନଙ୍କ ଦ୍ୱାରା ଲୋକର କି ଶାଶ୍ୱତ ସୁଖ ବା ଉନ୍ନତି ହୋଇ ପାରେ ? ଏଥିରେ ଜାତିର ସଂସ୍କାର ହେବ ନାହିଁ ବରଂ ସଭ୍ୟତା ନାଶ ହେବ ।

## ଉଦକ ଦାନ ବା ଜଳ କୀର୍ତ୍ତି ।

କୌଣସି ଏକ ପକ୍ଷୀ ନିଜ ଦେହର କଣ୍ଡୁ ନିବାରଣ କରିବା ପାଇଁ ବନ ପ୍ରାନ୍ତରେ ଏକ ଧୂଳିଆ ଜାଗାରେ ପକ୍ଷ ଘଷାଇ ଝଡ଼ାଇ ହେଲାରୁ ସେଠାରୁ ଭୂମି ଟିକିଏ ଖାଲ ହୋଇ ଯାଇଥିଲା ବର୍ଷା ହେଲାରୁ ସେହି ଖାଲରେ ଟିକିଏ ଜଳ ରହିଗଲା । ଏକ ବରାହ ତୃଷାର୍ତ୍ତ ହୋଇ ଯାଉଥିଲା ବେଳେ ସେହି ଖାଲରେ ଥିବା ପାଣି ପିଇଲା ପୁଣି ଆଉ ଅଧିକ ପାଣି ପାଇବା ମନେକରି ନିଜ ଥୋମଣରେ ଖାଲଟାକୁ ଟିକିଏ ବଡ଼ ଖଣ୍ଡା କରିଦେଇ ଚାଲି ଯାଇଥିଲା । ତା'ପରେ ଏକ ଦିନ ଏକ ଯୋଡ଼ା ଆସି ତହିଁରେ ଗଡ଼ଗଡ଼ି ହୋଇ ଶୋଇବାରୁ ସେହି ପାଣି ଖାଲଟା ଆଉ ଟିକିଏ ବଡ଼ ହୋଇ ଯାଇଥିଲା । ଏକ ସମୟରେ ବିକ୍ରମାଦିତ୍ୟ ରାଜା ସେହି ମାର୍ଗ ଦେଇ ମୃଗୟା କରି ଗଲାବେଳେ ଜଳ ଲୋଡ଼ା ପଡ଼ିଲା । ଚତୁର୍ଦ୍ଦିଗରେ ଲୋକ ଯାଇ ଜଳର ଅନ୍ୱେଷଣ କଲେ, କେଉଁ ସ୍ଥାନରେ ଜଳ ନ ଦେଖି ପରିଶେଷରେ ସେହି କାଦୁଅ ଖଣ୍ଡାରେ ଟିକିଏ ପାଣି ଦେଖି ଆଶ୍ୱାସିତ ହେଲେ । ସେହି ପ୍ରାନ୍ତରରେ ଅନ୍ୟ କୌଣସି ସ୍ଥାନରେ ଜଳ ନ ଥିବା ଦେଖି ପନ୍ଦର ହଜାର ଟଙ୍କା ଖରଚ କରି ସେହି କାଦୁଅ ଖଣ୍ଡା ଠିକ ଗୋଟିଏ ପ୍ରକାଣ୍ଡ ପୋଖରୀ କରିଦିଆଗଲା । ପୋଖରୀ ଖୋଳା ପରେ ରାଜା ମହୋଦୟ ସେହି ପୁଷ୍କରିଣୀର ପ୍ରତିଷ୍ଠା କଲାବେଳେ ସେହି ପକ୍ଷୀ, ସେହି ବରାହ ଏବଂ ସେହି ମହିଷ ଆସି ସେଠାରେ ଉପସ୍ଥିତ ହେଲେ । ପକ୍ଷୀ କହିଲା ମୋହର ଏ ପୋଖରୀ, ମୁଁ ପ୍ରଥମେ ଆରମ୍ଭ କରିଥିଲି ? ବରାହ କହିଲା ମୁଁ ଖୋଳିଥିଲି

ମୋହର ଏଥିରେ ଭାଗଅଛି ପୁଣି ମହିଷ କହିଲା ମୁଁ ମଧ୍ୟ ଏହାକୁ ଖୋଳିଥିଲି, ମୋହର ଏଥିରେ ଅଂଶ ଅଛି । ପକ୍ଷୀ, ବରାହ, ମହିଷ ଏବଂ ରାଜା ଏମାନଙ୍କ ମଧ୍ୟରେ ବାଦାନୁବାଦ ଉପସ୍ଥିତ ହେଲା । ଧର୍ମରାଜାଙ୍କ ସମ୍ମୁଖରେ ଏହି ଧର୍ମ କାର୍ଯ୍ୟରେ ଏମାନଙ୍କର ଦାବୀ ବର୍ଣ୍ଣିତ ହେଲା । ପକ୍ଷୀଟି ଧୂଳିରେ ଗଡ଼ାଗଡ଼ି ହୋଇଥିଲା ମାତ୍ର, ତାହାର ମନରେ ଜଳର ଭାବନା ନଥିଲା, ମଇଁଷିଟା ତହିଁରେ ପଡ଼ି ଗାଧୋଉଥିଲା, ସେହି ସ୍ଥାନରେ ଜଳ ରଖିବା ତାହାର ଉଦ୍ଦେଶ୍ୟ ନଥିଲା କିନ୍ତୁ ବରାହ ଜଳ ଆଶାରେ ନିଜ ଥୋବଣାରେ ମାଟି ଖୋଳିଥିଲା ପୁଣି ଲୋକଙ୍କ ପାଇଁ ଜଳ ଯୋଗାଇବା ନିମନ୍ତେ ରାଜା ପୋଖରୀ ଖୋଳାଇ ଦେଇଥିଲେ । ଅତଏବ ରାଜାଙ୍କ-ଓ ବରାହର ସେହି ଜଳ କୀର୍ତ୍ତିରେ ଭାଗଥିବା କଥା ସ୍ଥିର ହେଲା । ଏହାର ତାତ୍ପର୍ଯ୍ୟ ଏହିଯେ ଜଳଦାନ ମହାକୀର୍ତ୍ତି ଅଟେ ଏବଂ କୌଣସି ଧର୍ମ କର୍ମ ହେଲେ ସୁଦ୍ଧା ମନ ବା ଉଦ୍ଦେଶ୍ୟ ନଥାଇ କାର୍ଯ୍ୟ କଲେ ଫଳ ଲାଭ ହୁଏ ନାହିଁ ।

## ଦାନେ ସକଳ ପାପ ହରେ ।

ଯାହାକୁ ଦିଅ, ଯେତେବେଳେ ଦିଅ, ଯେ କୌଣସି ଭାବରେ ଦିଅ, ଦେବାଟା ଏକ ପୁଣ୍ୟ କାର୍ଯ୍ୟ ବୋଲି ଗୃହୀତ ହୁଏ । ଲୋକେ କହନ୍ତି ଯେ ବିତରଣ ହିଁ ସକଳ ଗୁଣର ଭୂଷଣ । ଦାନ ଦ୍ୱାରା ଲୋକଙ୍କର ଅନେକ ଉନ୍ନତି ହେଲେ ମଧ୍ୟ ତହିଁରୁ ଅନିଷ୍ଟ ଉତ୍ପନ୍ନେ, ମନ୍ଦ ଫଳ ଫଳେ ଏବଂ ପରିଣାମରେ ନଷ୍ଟ ହୁଏ । ଅସତ୍ ପାତ୍ରରେ ଦାନ ଦେଲେ ପାଉଁଶରେ ଘିଅ-ଢାଳିବା ପରି କଥା । ଏପରି ଦିଆଯିବା ଦେଖି ମାଗିବାଟାକୁ ଅନେକ ଲୋକ ନିଜର ଏକ ବୃତ୍ତି କରନ୍ତି ଏବଂ ଏହି ବୃତ୍ତି ଦ୍ୱାରା ଆପଣା କୁଟୁମ୍ବ ପୋଷନ୍ତି । ମାଗି ଖାଇବା ଲୋକମାନେ ଲାଗି ଖାଇ ପାରନ୍ତି ନାହିଁ । ଏହି ଅବୈଧ ଦାନରୁ ଅଳସୁଆ ପଣ ଜାତ ହୁଏ । ଅନେକ ଲୋକ ଅକର୍ମା ହୋଇ ମାଗି ମାଗି କେବଳ ପେଟ ପୂରାନ୍ତି । ଅକର୍ମା ହୋଇ ରହିବାଠାରୁ କୁକର୍ମ କରିବା ଶ୍ରେୟସ୍କର ହୋଇ ପାରେ । ଯେଉଁମାନେ ପରାଶ୍ରୟ ରହନ୍ତି ପୁଣି ନିର୍ବ୍ୟବସାୟୀ ହୁଅନ୍ତି ସେମାନେ ସର୍ବଦା ଅନ୍ୟ ଉପରେ ନିର୍ଭର କରନ୍ତି, ସ୍ୱାବଲମ୍ବନଶୀଳ ହୋଇ ପାରନ୍ତି ନାହିଁ । ସେମାନେତ ଦୁଃଖ ଭୋଗ କରନ୍ତି ପୁଣି ସୁଖ ସ୍ୱପ୍ନରୁ ମଧ୍ୟ ବଞ୍ଚିତ ହୁଅନ୍ତି । ଏହିପରି ଦାନରୁ ଅନେକ ମନ୍ଦ ଫଳ ହେଲେହେଁ ବିତରଣଟା ଏକ ଉତ୍କୃଷ୍ଟ ଗୁଣ ବୋଲି ବର୍ଣ୍ଣିତ ହୁଏ ଏବଂ ସର୍ବତ୍ର ଦାନର ଭୂରି ଭୂରି ପ୍ରଶଂସା କରାଯାଏ ।

ଦାନଦ୍ୱାରା ଯେ ଅନେକ ମହୋପକାର ସାଧିତ ହୁଏ, ଏହା କେହି ଅସ୍ୱୀକାର କରି ପାରନ୍ତିନାହିଁ । ପୁଣି ଯଦି ସମୟେ ସମୟେ ଏହି ଦାନ ଦ୍ୱାରା ଗ୍ରହୀତାର ଅମଙ୍ଗଳ ହୁଏ, ତଥାପି ତଦ୍ଦ୍ୱାରା ଦାତାର ଏକ ମହୋପକାର ସାଧିତ ହୁଏ, କାରଣ ଯେ କୌଣସି ପ୍ରକାର ଦାନରେ

ହେଉ ଦାତାପ୍ରତି ତ୍ୟାଗର ଫଳ ଅଛି । କୌଣସି ଅସଦ୍ଦାନ ଦ୍ୱାରା ଗ୍ରହୀତା ବା ଭୋକ୍ତା ମାନଙ୍କର ଅମଙ୍ଗଳ ହେଲେହେଁ ଦାତା ଅବଶ୍ୟ ତ୍ୟାଗ ଫଳ ଭୋଗ କରନ୍ତି । ଦାନଦ୍ୱାରା ଅନ୍ୟ ଲୋକଙ୍କର ଅନେକ ମଙ୍ଗଳ ସାଧନ ବାହାରେ ଦାତାଙ୍କର ତ୍ୟାଗ ଧର୍ମ ଶିକ୍ଷା କରିବାକୁ ହୁଏ ପୁଣି ତ୍ୟାଗ ଧର୍ମହିଁ ପରମାତ୍ମ ଧର୍ମ ଏବଂ ମୁକ୍ତି ମାର୍ଗ । ଅତଏବ ଯେ କୌଣସି ଲୋକକୁ ଦଅ, ଯେଉଁ ଭାବରେ ଦଅ, ଦାନ କରିବା ଅଟେ ମହତ୍ ଗୁଣ ଏବଂ ପରମ ପୁଣ୍ୟ କାର୍ଯ୍ୟ ।

"ଶ୍ରଦ୍ଧୟା ଦେୟଂ ଅଶ୍ରଦ୍ଧୟା ଦେୟଂ ଶ୍ରିୟା ଦେୟଂ ହ୍ରିୟା ଦେୟଂ ଭିୟା ଦେୟଂ ସମ୍ବିଦା ଦେୟଂ।" ଏହିପ୍ରକାର ବେଦ ପ୍ରମାଣ ଅଛି । ଶ୍ରଦ୍ଧାରେ ହେଉ, ଅଶ୍ରଦ୍ଧାରେ ହେଉ, ଶୋଭା ସକାଶେ ହେଉ, ଭୀତିରୁ ହେଉ, ଲଜ୍ଜାରୁ ହେଉ କିମ୍ବା ପ୍ରତିଜ୍ଞାରୁ ହେଉ, ଯେ କୌଣସି ଭାବରେ ହେଉ, ଦେବାଟା ସର୍ବତୋଭାବେ କର୍ତ୍ତବ୍ୟ ।



## ପର ଆପଣା ବିଚାର

ପର ଆପଣା ଭାବଟା କେବଳ ବ୍ୟବହାରରୁ ଜାତ ହୁଏ । ତୁମ୍ଭେ ଯାହାକୁ ପର ମଣିବ ସେ ତୁମ୍ଭର ପର ହେବ, ତୁମ୍ଭେ ଯାହାକୁ ଆପଣା ଜ୍ଞାନ କରିବ ସେ ତୁମ୍ଭର ଆପଣାର ହେବ । ଦେଖୁନାହିଁ, ପ୍ରେମରେ ଲୋକ ଜଗତକୁ ଜୟ କରେ ଏବଂ ଲୋକପ୍ରିୟ ହୁଏ । ଦ୍ୱେଷ, ହିଂସା, ଅହଙ୍କାର ବା ଉଦାସୀନତାରେ ତୁମ୍ଭେ କଦାପି ଅନ୍ୟକୁ ଆପଣାର କରି ନପାର । ଲୋକେ କହନ୍ତି, ଜନ୍ମଗତ ବା ରକ୍ତ ସମ୍ବନ୍ଧ ହେତୁ ଲୋକେ ପରସ୍ପର ପ୍ରତି ଆପଣା ଜ୍ଞାନ କରନ୍ତି । କିନ୍ତୁ ଏହି ସମ୍ବନ୍ଧ ଯେ ଆପଣା ଭାବନାର ହେତୁ ଅଟେ ଏହା ନୁହେ । କାରଣ, ଆମ୍ଭମାନେ ଦେଖୁଅଛେ ଯେ ଭାଇରେ ଭାଇରେ, ପତି ପତ୍ନୀରେ ବା ପିତା ପୁତ୍ରରେ ବିରୋଧ ଲାଗିକରି ପର ହୁଅନ୍ତି । ଏମାନଙ୍କ ମଧ୍ୟରେ ଘନିଷ୍ଠ ରକ୍ତ ସମ୍ବନ୍ଧ ଥିଲେହେଁ ଏମାନଙ୍କର ପରସ୍ପର ବ୍ୟବହାର ଉପରେ ଏମାନଙ୍କ ମଧ୍ୟରେ ପରସ୍ପର ପର ଆପଣା ଭାବ ନିର୍ଭର କରେ । ବିଦେଶୀୟ, ବିଜାତୀୟ, ବିଧର୍ମୀ ଲୋକ ମଧ୍ୟ ତୁମ୍ଭର ପରମ ଆତ୍ମୀୟ ପରି ତୁମ୍ଭ ପ୍ରତି ବ୍ୟବହାର କରେ । ଯାହାର ଗୁଣ, ସ୍ୱଭାବ ଏବଂ କର୍ମ ମନ୍ଦ, ତାହାର ସମସ୍ତେ ହୁଅନ୍ତି ପର । ତାହା ପ୍ରତି ତୁମ୍ଭେ ଯେପରି ସଦ୍ବ୍ୟବହାର କର ସେ ସର୍ବଦା ତୁମ୍ଭର ପର ହୋଇ ରହିବ । ପୁତ୍ର ହେଉ ମଧ୍ୟ ପିତା ଠାରେ ଭକ୍ତି କରନ୍ତି ନାହିଁ, ପତ୍ନୀ ହେଉ ମଧ୍ୟ ପତି ଠାରେ ବିଶ୍ୱାସ କରନ୍ତି ନାହିଁ, ଭାଇ ହେଉ ଭାଇକୁ ସ୍ନେହ କରନ୍ତି ନାହିଁ । କିନ୍ତୁ ସାଧାରଣତଃ ମନୁଷ୍ୟମାନେ ସଦ୍ବ୍ୟବହାରରେ ବା ପ୍ରେମରେ ବଶୀଭୂତ ହୁଅନ୍ତି । ତୁମ୍ଭେ ତୁମ୍ଭ ପୁଅ ଝିଅକୁ ଯେତେ ସ୍ନେହ କରୁଛ, ଯେତେ [illegible] ସେପରି ସମବେଦନା ପ୍ରକାଶ କରୁଛ, ତୁମ୍ଭର [illegible],

ତୁମ୍ଭର ଚାକର, ତୁମ୍ଭର ହଳିଆକୁ ସେତେ ସ୍ନେହ କରନ୍ତ ? ତାହାର ସୁଖ ଦୁଃଖରେ ସମଭାଗୀ ହୁଅନ୍ତ ? ଆପଣାର ପୁଅ ଝିଅର ଦେହରେ ବେମାର ହେଲେ କୌଣସି ଲୋକ ଯେତେ ଧନୀ ହୁଏ, ସେମାନଙ୍କ ପାଇଁ ଯେପରି ଖାଇବା, ପିଇବା, ପିନ୍ଧିବା, ଲଗାଇବାକୁ ଦିଏ, ଅନ୍ୟ ଲୋକ ପ୍ରତି ସେପରି ହୁଏ ନାହିଁ, ବା ସେମାନଙ୍କୁ ଦୟା ମାୟା କରେନାହିଁ । ସୁତରାଂ ପୁତ୍ର କନ୍ୟା ପ୍ରଭୃତି ଆତ୍ମୀୟ ହୁଅନ୍ତି, ଅନ୍ୟ ଲୋକ ସେପରି ଆପଣାର ହୁଅନ୍ତି ନାହିଁ । ଚାକର ନୌକର ଓ ଅନ୍ୟ ଲୋକ ମାନଙ୍କ ପ୍ରତି ଆମ୍ଭେମାନେ ଯେତେବେଳେ ଆମ୍ଭର ପୁତ୍ର କନ୍ୟା ଓ ଭାଇ ପରି ବ୍ୟବହାର କରିବା ସେମାନେ ଅବଶ୍ୟ ଆମ୍ଭମାନଙ୍କୁ ପିତା ମାତା ଓ ଭାଇ ବୋଲି ଜ୍ଞାନ କରିବେ, ଆମ୍ଭ ଧନର ସୁରକ୍ଷା କରିବେ, ଆମ୍ଭ କାମରେ ହେଳା କରିବେ ନାହିଁ ପୁଣି ଆମ୍ଭଠାରେ ବିଶ୍ୱାସ କରିବେ । କିନ୍ତୁ ଆମ୍ଭେମାନେ ବ୍ୟବହାର ଓ ବିଚାରକୁ ଛାଡି ମିଥ୍ୟା ସ୍ୱାର୍ଥ ଆଶାରେ ମୋହିତ ହୋଇ କେତେ ଲୋକଙ୍କୁ ଆପଣାର କରି ଧରି ବସିଛେ ଏବଂ ଅନ୍ୟାନ୍ୟ ଅନେକ ଲୋକଙ୍କୁ ପର ଜ୍ଞାନରେ ଛାଡ଼ିଛେ ।। ଏହିପରି ଆପଣା ପର ଭାବ ଅଟେ କେବଳ ସ୍ୱାର୍ଥପର ଲୋକର ସଂକୀର୍ଣ୍ଣ ବିଚାର ।



## ସତ୍ୟବାଦୀତା ।

ଯାହା ସତ୍ ତାହିଁ ସତ୍ୟ । ସତ୍ୟହିଁ ସତ୍‌କର୍ମ ଏବଂ ସତ୍ୟହିଁ ପରଂବ୍ରହ୍ମ । ସତ୍ୟରୁ ସମସ୍ତ ଉତ୍ପତ୍ତି ଏବଂ ସତ୍ୟ ପାଳନ କରିବା ମନୁଷ୍ୟମାତ୍ରେ କର୍ତ୍ତବ୍ୟ ବା ସ୍ୱାଭାବିକ ଧର୍ମ । ସତ୍ୟବାଦିତା ଗୋଟିଏ ମୌଳିକ ଧର୍ମ । ଏହା ଅନ୍ୟ କୌଣସି ବିଷୟର ଅନୁସରଣ କରେ ନାହିଁ କାହାକୁ ଅପେକ୍ଷା କରେ ନାହିଁ । ନିରପେକ୍ଷତାହିଁ ଏହାର ପ୍ରାଣ । ନିରପେକ୍ଷତା, ନିର୍ଭୀକତା, ନ୍ୟାୟବାଦିତା, ତ୍ୟାଗଶୀଳତା, ପରୋପକାରିତା ଇତ୍ୟାଦି ଅଟେ ସତ୍ୟବାଦିତାର ଉପାଦାନ ବିଶେଷ । ଯେଉଁଠାରେ ନିରପେକ୍ଷତା ଇତ୍ୟାଦି ଗୁଣ ନିଚୟ ଦେଖାଯାଏ, ସେହିଠାରେ ସତ୍ୟବାଦିତା ସ୍ୱତଃ ବିଦ୍ୟମାନ । ସତ୍ୟ ସୂର୍ଯ୍ୟ ଉଦୟ ହେଲେ ଭୀତି, ସନ୍ଦେହ, ଅନ୍ୟର ଅପେକ୍ଷା, ସ୍ୱାର୍ଥପରତା, ନିନ୍ଦୁକତା ଇତ୍ୟାଦି ସଂକୀର୍ଣ୍ଣତା କୁଜ୍ଝଟିକା ନିଚୟ ଅପସୃତ ହୁଏ । ସତ୍ୟ ଅଟେ ଅଦ୍ୱିତୀୟ, ଅବିଭାଜ୍ୟ, ଅବିକାର୍ଯ୍ୟ, ଅପରିବର୍ତ୍ତନୀୟ ଏବଂ ସାର୍ବଭୌମ । ସମାଜାଗ୍ରହ ବା ପ୍ରିୟାପ୍ରିୟ ବିଗ୍ରହ ଦ୍ୱାରା ସତ୍ୟର ସୀମା ନିରୂପିତ ହୁଏ ନାହିଁ । ସ୍ୱର୍ଗୀୟ, ଧ୍ରୁବ, ଶାଶ୍ୱତ ସତ୍ୟ କେବେହେଁ ପାର୍ଥିବ ନାରକୀୟ କ୍ଷଣସ୍ଥାୟୀ ବିଷୟ ଦ୍ୱାରା ବର୍ଦ୍ଧିତ ବା ସୀମାବଦ୍ଧ ହୋଇପାରେ ନାହିଁ ।

"ସତ୍ୟଂ ବ୍ରୂୟାତ୍ + × ସତ୍ୟମପ୍ରିୟଂ" । ଏହି ନୀତି ବାକ୍ୟ ଦ୍ୱାରା ସତ୍ୟର ମହିମା ହ୍ରାସ ପ୍ରାପ୍ତ ହୁଏ । ସତ୍ୟ ପ୍ରତି ଏକାନ୍ତ ଭକ୍ତି ରହେନାହିଁ ଏବଂ ଅସତ୍ୟର ପ୍ରଶ୍ରୟ

କରାଯାଏ । ଏହି ନୀତିବାକ୍ୟ ସମସ୍ୟାଗ୍ରସ୍ତତା ବା ସଂକୀର୍ଣ୍ଣ ସ୍ୱାର୍ଥପରତାର ପୋଷକତା କରେ ।
ଏହା ଏକ କୌଶଳ । ବ୍ୟାପାର କାଣ୍ଡରେ ଏହାକୁ ସବୁଠାରୁ ଲୁହାଯାଏ । ଉଦ୍ଦେଶ୍ୟ ଏବଂ
ଉପାୟ ଏକ ଜାତୀୟ ହେବା ଉଚିତ । ନୀଚ ଉପାୟ ଦ୍ୱାରା ମହତ୍ଉଦ୍ଦେଶ୍ୟ ସାଧିତ ହୋଇ
ପାରେ ନାହିଁ । ପୁଣି ସତ୍ୟବାଦୀତା ନିଜେ ପରମ ଲକ୍ଷ୍ୟ ବସ୍ତୁ । ସତ୍ୟ ସକାଶେ ସତ୍ୟ ଭାଷଣ-
କରି କର୍ତ୍ତବ୍ୟ । ଅନ୍ୟ କୌଣସି ବିଷୟ ଯେତେ ମହତ ହେଉ ପଛେ ତାହା ସାଧନ କରିବା
ନିମନ୍ତେ ସତ୍ୟର ଅପବ୍ୟବହାର କରି ଏକାନ୍ତ ନିଷିଦ୍ଧ । ଯେହେତୁ ଏଥିଦ୍ୱାରା ଇପ୍ସିତ କାର୍ଯ୍ୟ
ନଷ୍ଟ ହେବା ସଙ୍ଗେ ସଙ୍ଗେ ସତ୍ୟ ରୂପକ ପରମ ଲକ୍ଷ୍ୟ ଉପେକ୍ଷିତ ହୁଏ ।

ସାହିତ୍ୟକ ଶବ୍ଦାଡ଼ମ୍ବରରେ ସତ୍ୟ ରହି ପାରେ ନାହିଁ । ସଂକୀର୍ଣ୍ଣ ସ୍ୱାର୍ଥ ସାଧନରେ ସତ୍ୟ ରହେ ନାହିଁ, ତଥା କୌଣସି ସାଧୁ ଉଦ୍ଦେଶ୍ୟ ବା ମହତ୍ କାର୍ଯ୍ୟ ନିର୍ବାହରେ ସ୍ୱଜନପୋଷିତା ଓ ସହାୟତା ପ୍ରାପ୍ତି ଆଶାରେ ଯେଉଁ କୌଶଳ ଅବଲମ୍ବନ କରାଯାଏ ତହିଁରେ ମଧ୍ୟ ସତ୍ୟ ରହିପାରେ ନାହିଁ । ନିରପେକ୍ଷତା, ନିଷ୍ପକ୍ଷପାତତା, ଆତ୍ମନିର୍ଭର, ନିର୍ଭୀକତା ଏବଂ ସରଳତା ରୂପକ ମୂଳ ଭିତ୍ତି ଉପରେ କେବଳ ସତ୍ୟବାଦୀତା ପ୍ରତିଷ୍ଠିତ ହୁଏ ।

ମନରଭାବ ନିର୍ଭୟ ସରଳ ଏବଂ ସୁସ୍ପଷ୍ଟ ବ୍ୟକ୍ତ କରିବାହିଁ ସତ୍ୟବାଦୀତା । ମନରେ କୌଣସି ଭ୍ରାନ୍ତ ଧାରଣା ରହିପାରେ । ଏହି ଭ୍ରାନ୍ତ ଧାରଣା ମଧ୍ୟ ଅବିକଳ ବ୍ୟକ୍ତ କରିବା ଅଟେ ସତ୍ୟବାଦୀତା । ଭ୍ରାନ୍ତ ଧାରଣାର ନାନାବିଧ କାରଣ ବିଦ୍ୟମାନ, ଯାହାକି ମନ ଓ ଜୀବନକୁ ଏକାବେଳେକେ କଳୁଷିତ କରି ଦେଇ ପାରେ, ତଥାପି ସେଥିରେ ମିଥ୍ୟାଭାଷଣ ଦୋଷ ଲାଗେ ନାହିଁ । ଅନେକେ ଚିରଭ୍ୟାସ ବଶରୁ ନିଜ ମାପ କାଠିରେ ଅପରକୁ ମାପି ତାହାକୁ ସତ୍ୟ ଭ୍ରଷ୍ଟ ଭାବନା କରନ୍ତି, କିନ୍ତୁ ପ୍ରକୃତରେ ସେହି ଲୋକ ମିଥ୍ୟାବାଦୀ ହୋଇ ନ ପାରନ୍ତି । ଭ୍ରାନ୍ତ ମାନବ କଥା ଥାଉ, ଶିକ୍ଷା ଦୀକ୍ଷା ଏବଂ ପାଣ୍ଡିତ୍ୟ ଲାଭ କରି ମଧ୍ୟ ଅନେକ ଲୋକ କୌଣସି ଅପେକ୍ଷାର ବଶୀଭୂତ ହୋଇ ମନର ଯଥାଯଥ ଭାବ ବ୍ୟକ୍ତ କରନ୍ତି ନାହିଁ, ଅଜ୍ଞାତ ଏବଂ ଦୁର୍ବୃତ୍ତର ଅବତାରମାନଙ୍କ ଠାରେ ସ୍ତାବକତା କରିଥାନ୍ତି । ଏମାନେ ଯାହାକୁ ଅଜ୍ଞାନପରିପୂର୍ଣ୍ଣ, ଅବିବେକୀ ଓ ଅତ୍ୟାଚାରୀ ବୋଲି ପ୍ରକୃତରେ ବୁଝିଥାନ୍ତି ଏବଂ ମନରେ ଘୃଣା କରିଥାନ୍ତି ତାହାଙ୍କର ମଧ୍ୟ ବାକ୍ୟରେ ସ୍ତୁତି ପାଠ କରିଥାନ୍ତି । କେହି କେହି ଶତଶତ ଜନ କର୍ଦ୍ଦମ ଦୁର୍ଗମ ଶୂକର କୁଟୀରକୁ ମଧ୍ୟ ଅମରାବତୀ ନଗରୀ ତୁଲ୍ୟ ବର୍ଣ୍ଣନା କରିଥାନ୍ତି ଏବଂ କୌଣସି ସାଧାରଣ ଅନୁଷ୍ଠାନ—ଲେଖନ, ପ୍ରଣୟନ, ଦାନ, ପ୍ରତିଷ୍ଠାନ ଇତ୍ୟାଦିକୁ ଅନନ୍ୟସାଧାରଣ ବୋଲି ଆଲୋଚନା କରିଥାନ୍ତି । ଧନୀମାନଙ୍କୁ ମଣାଇବା ଅଟେ ଏକ ନୀତି । ଏହି ନୀତି ପାଳନ କରିବାକୁ ଯାଇ ଅନେକେ ସତ୍ୟ ଭ୍ରଷ୍ଟ ହୁଅନ୍ତି । ଅତ୍ୟାଚାରୀ ଜମିଦାରଙ୍କୁ ପ୍ରବଳ ପ୍ରତାପ, ମହା ମହିମ ରାଜାଧିରାଜେଶ୍ୱର ବୋଲି ବର୍ଣ୍ଣନା କରିବାକୁ ହୁଏ, କୃପଣକୁ ଦାନଶୀଳ ଲୁହାଯାଏ, ଅହର୍ନିଶ ମଦମତ୍ତ ଲମ୍ପଟାଗ୍ରଣୀଙ୍କ ସଂଯମଶୀଳ, ନୀତିନିଷ୍ଠ,

ଧାର୍ମିକ ପ୍ରବର ବୋଲି କୁହାଯାଏ ଏବଂ ଉଣତ କବି ମାନଙ୍କୁ ମୂଳ ମହାକବି ରୂପେ ବର୍ଣ୍ଣନା କରାଯାଏ । ଧନାପେକ୍ଷାରେ ବଶୀଭୂତ ହେଲେ ମନୁଷ୍ୟ କଣ କରି ନ ପାରେ ? କିନ୍ତୁ "ଅଦାନେନ ଅମାନେନ ଅସମ୍ୟକ ଭାଷଣେନଚ, ଚ୍ୟୁତଃ ସ୍ୱର୍ଗଂ ନ ଗଚ୍ଛନ୍ତି ରାଜା ଚନ୍ଦ୍ରଚରଃ କବଃ" ।

କେହି ଲୋକ ଯେତେ ସାଧୁ ପ୍ରକୃତିକ ସୁପଣ୍ଡିତ ହୋଇଥିଲେ ପଛେ, କୌଣସି ବସ୍ତୁ ବା ବ୍ୟକ୍ତି ପ୍ରତି ଅନୁକୂଳ ଭାବାପନ୍ନ ହେଲେ ତତ୍ସମ୍ବନ୍ଧରେ ଯେପରି ଅତ୍ୟୁକ୍ତି କରିଥାନ୍ତି ପ୍ରତିକୂଳ ଭାବ ବଶିଷ୍ଟ ହେଲେ ତଦ୍ରୂପ ହେୟୋକ୍ତି କରିଥାନ୍ତି । ସ୍ନେହ, ଆଦର ଓ ଗୌରବ ଜ୍ଞାନ ବଶ୍ୟରେ ଯେପରି ସତ୍ୟବାଦିତା ରକ୍ଷା କରାଯାଇ ପାରେନାହିଁ, ସେହିପରି ଦ୍ୱେଷ, ଈର୍ଷାଭାବ ସହିତ ଯଥାର୍ଥବାଦିତା ରକ୍ଷିତ ପାରେନାହିଁ । କୌଣସି ଶତ୍ରୁପକ୍ଷ ( ଯେ କିଛି ଉପକାର ବା ସହାୟତା କରି ନାହାନ୍ତି ) ଯଦି ଶିଳ୍ପାଗାର ନିର୍ମାଣ କରନ୍ତି, ବିଦ୍ୟାଳୟ ସ୍ଥାପନ କରନ୍ତି ବା ଗଦ୍ୟ ପଦ୍ୟମୟ ବିବିଧ ପୁସ୍ତକ ପ୍ରଣୟନ କରନ୍ତି, ତେବେ ଉକ୍ତ କାର୍ଯ୍ୟର ଯଥେଷ୍ଟ ପ୍ରଶଂସା କରାଯାଏନାହିଁ, ନତୁବା ତତ୍ସମ୍ବନ୍ଧରେ କିଛି ପ୍ରଳାପ କରା ନଗଲେହେଁ ନୀରବତା ଅବଲମ୍ବନ କରିବାକୁ ହୁଏ ।

ଅତଏବ ସତ୍ୟବାଦିତା ରକ୍ଷା କରିବାକୁ ହେଲେ ନିରାଲମ୍ବ, ନିର୍ବିକାର ଓ ନିରପେକ୍ଷ ରହିବାକୁ ହେବ, ଅନ୍ୟଥା ସତ୍ୟବାଦିତା ବିଡମ୍ବନା ମାତ୍ର ।

" ସୁଲଭାଃ ପୁରୁଷାଲୋକେ ସତତଂ ପ୍ରିୟ ବାଦିନଃ ଅପ୍ରିୟସ୍ୟଚ ପଥ୍ୟସ୍ୟ ବକ୍ତା ଶ୍ରୋତାଚ ଦୁର୍ଲ୍ଲଭଃ" ।



## ଆର୍ଯ୍ୟ ସମାଜରେ ଅନାର୍ଯ୍ୟ ରୀତି ।

ଆର୍ଯ୍ୟ ସମାଜରେ ଅନେକ ଅନାର୍ଯ୍ୟ ରୀତି ନୀତି ବହୁକାଳରୁ ପ୍ରଚଳିତ ହୋଇ ଆସୁଅଛି । ଏହି ପ୍ରଥା ଗୁଡିକ ଆର୍ଯ୍ୟ ସମାଜର ଏବଂ ତହିଁର ବିକୃତିଭୂତ ଆଧୁନିକ ହିନ୍ଦୁ ସମାଜର ଆଚାର ବ୍ୟବହାର ସହିତ ଏପରି ମିଳି ମିଶି ଏତେ କାଳ ରହିଗଲାଣି ଯେ ଆଜି ସେ ସବୁ ପୃଥକ ରୂପେ ଧରାଯାଇ ପାରେ ନାହିଁ । ଆର୍ଯ୍ୟ ମାନଙ୍କ ମଧ୍ୟରେ ଯେଉଁମାନେ ଚରିତ୍ର ହୀନ ଏବଂ ଦୁର୍ବଳ ଚେତା ଥିଲେ ସେମାନେ ସହବାସ ଦୋଷରୁ ଅସତ୍ ସୁଖାଭିଳାଷୀ ହୋଇ ଅନାର୍ଯ୍ୟ ରୀତି ବା ଅନାର୍ଯ୍ୟ ବ୍ୟବସାୟ ଅବଲମ୍ବନ କରିଗଲେ । ସେହିପରି କେତେ ଅନାର୍ଯ୍ୟ ବ୍ୟବସାୟି ମାନେ ଆପଣାର ତାତ୍କାଳିକ ସମାଜର ଉନ୍ନତି ଆଶାରେ ଆର୍ଯ୍ୟମାନଙ୍କ

ସହିତ ସହବାସ ଇଚ୍ଛା କରନ୍ତି ପୁଣି କେହି ଅନାର୍ଯ୍ୟ ଲୋକ ଉନ୍ନତ ଆର୍ଯ୍ୟମାନଙ୍କୁ ପ୍ରଲୋଭନ ଦେଖାଇ ଆପଣା ଆବସ୍ଥାକୁ ଟାଣି ନେବାକୁ ଚେଷ୍ଟା କରଥାନ୍ତି । ସୂର୍ପନଖା ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଲୋଭନ ଦେଖାଇ ତାହାଙ୍କୁ ଧର୍ମଭ୍ରଷ୍ଟ କରିବାକୁ ଚେଷ୍ଟା କରୁଥିଲା । କିନ୍ତୁ "ଯୋଷାକୁ ନାକଶିରି ଦାନ" କରିବାକୁ ସମାଜରେ ରାମଚନ୍ଦ୍ରଙ୍କ ପରି ମନୀଷୀ ମହାତ୍ମା କେତେଜଣ ? ଆର୍ଯ୍ୟ ସମାଜର ଦୁର୍ଭାଗ୍ୟ, ଲକ୍ଷ୍ମୀଛାଡ଼ୀ ମାନେ କେତେଟା ସୂର୍ପନଖାର ପ୍ରଲୋଭନରେ ପଡ଼ି ଯାଇ ନିଜ ସମାଜରେ ସେମାନଙ୍କର ସହବାସ କଲେ । ଆଜି ହିନ୍ଦୁ ସମାଜରେ ବେଶ୍ୟା ବ୍ୟବସାୟ ସେହି ଅନାର୍ଯ୍ୟ ପ୍ରଥାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଅନାର୍ଯ୍ୟମାନେ ସର୍ବବ୍ୟାପୀ ପରାତ୍ପର ପରମେଶ୍ୱରଙ୍କୁ ଧ୍ୟାନରେ ଧରି ନପାରି କାଠ ପଥର ମାଟି ଗୁଡ଼ି ଇତ୍ୟାଦିକି ଈଶ୍ୱର ବୋଲି ପୂଜା କରନ୍ତି । ଆର୍ଯ୍ୟମାନେ ଅନାର୍ଯ୍ୟ ସହବାସରେ ପଡ଼ି ପରମେଶ୍ୱରଙ୍କୁ ଛାଡ଼ି ଅନାର୍ଯ୍ୟ ମାନଙ୍କର ଅଜ୍ଞାନ ଦେବତାମାନଙ୍କୁ ଆରାଧନା କଲେ । ଆଜି ସେହି ଅନାର୍ଯ୍ୟ ପ୍ରତିମା ପୂଜା ଆର୍ଯ୍ୟ ସମାଜରେ ପ୍ରଚଳିତ ଅଛି । ଆର୍ଯ୍ୟମାନେ ଆପଣାର ପରଂବ୍ରହ୍ମଙ୍କୁ ନେଇ ଅନାର୍ଯ୍ୟ ମାନଙ୍କର କାଠ ବା ପଥର ଭିତରେ ଭରିତ କରି ସେ ଗୁଡ଼ିକୁ ପ୍ରାଣ ପ୍ରତିଷ୍ଠା କରି ଦେଉଳରେ ବସାଇ ଭୋଗ, ରାଗ ଝିଙ୍କି ସେମାନଙ୍କ ଠାରେ ଭୟ ଭକ୍ତି କରିବାକୁ ଲାଗିଲେ ।

ବାଲ୍ୟ ବିବାହ ନିତାନ୍ତ ଅନାର୍ଯ୍ୟ ପ୍ରଥା ପୁଣି ସ୍ତ୍ରୀ ମାନଙ୍କୁ ବ୍ରହ୍ମଚର୍ଯ୍ୟ ଏବଂ ବିଦ୍ୟା ଶିକ୍ଷାରୁ ବଞ୍ଚିତ ରଖିବା, ସେମାନଙ୍କୁ ଗୃହକୋଣେ ଲୁଚାଇ ରଖିବା, ମୁହଁ ଫିଟାଇ କଥା କହିବାକୁ ନ ଦେବା ଇତ୍ୟାଦି ଅନାର୍ଯ୍ୟ ନାରୀ ନିର୍ଯ୍ୟାତନ ରୀତି ହିନ୍ଦୁମାନେ ମୁସଲ-ମାନ ପ୍ରଭୃତି ଅନାର୍ଯ୍ୟ ବା ଅହିନ୍ଦୁ ଲୋକଙ୍କ ଠାରୁ ଶିଖିଲେ । ସେଥିପାଇଁ ପଣ୍ଡିତ ଲେଖା ହୋଇ ସ୍ମୃତିରେ ଭରିତ ହେଲା । କାଳ କ୍ରମେ "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା"-ମନୁଙ୍କର ଏହି ସ୍ମୃତି ବାକ୍ୟ ଉପହାସିତ ହେଲା ।

ବେଦ ଅଟେ ଈଶ୍ୱର ପ୍ରଦତ୍ତ ସତ୍ୟ ଧର୍ମ-ଜ୍ଞାନ,ବେଦ ବହିର୍ଭୂତ ଆନାର୍ଯ୍ୟ ଧର୍ମ । ତନ୍ତ୍ର ଉପାସନା କାଣ୍ଡ ବେଦ ବହିର୍ଭୂତ । ଆର୍ଯ୍ୟମାନେ ଅନାର୍ଯ୍ୟ ସହବାସରେ ରହି ସେମାନଙ୍କ-ର କୌଣସି ପୈଶାଚିକ କର୍ମ କାଣ୍ଡରୁ ପଞ୍ଚମକାର ପୂଜା, ତନ୍ତ୍ର ଉପାସନା ଇତ୍ୟାଦି କର୍ମକୁ ଆପଣା ଧର୍ମର ଅଙ୍ଗୀଭୂତ କରିଗଲେ । ପ୍ରତିମା ପୂଜା ସଙ୍ଗେ ୨ ଆଜି ଏହି ମ କାର ପୂଜା ଗୋପନୀୟ ଭାବରେ ହିନ୍ଦୁ ସମାଜରେ ପ୍ରଚଳିତ ଅଛି ।

ଅପାଠୁଆ ଆର୍ଯ୍ୟମାନେ ବେଦୋକ୍ତ 'ଭକ୍ତିଦାୟିନୀ' ମନ୍ତ୍ରକୁ "ଭଗବତୀ ଡାହାଣୀ" କର୍ମ ବୋଲି ବୁଝିଲେ । ଫଳରେ ଆର୍ଯ୍ୟ ଅନାର୍ଯ୍ୟ,ଆଧ୍ୟାତ୍ମିକ ପୈଶାଚିକ, ଜ୍ଞାନ ଓ କର୍ମକାଣ୍ଡ ଏକତ୍ର ମିଶି ହିନ୍ଦୁ ଧର୍ମ ଆଜି ଏକ ଖେଚଡ଼ି ହୋଇ ପଡ଼ିଅଛି ।



# ଆର୍ଯ୍ୟ ଜୀବନ ।

ଆର୍ଯ୍ୟ— ଏହି ପଦର ଅର୍ଥ ପୂଜ୍ୟ, ସଭ୍ୟ, ଇତ୍ୟାଦି । ଏହି ଅର୍ଥରେ ଆଜି ଅନେକ ୟୁରୋପିୟ ଜାତି, ଆମେରିକାବାସୀ, ଯାପାନୀ ପ୍ରଭୃତି ମଧ୍ୟ ଭାରତ ବାସିମାନଙ୍କ ପରି ଆର୍ଯ୍ୟ ଜାତି । ଏହା ଛଡ଼ା ଅନେକ ପଣ୍ଡିତ ମାନଙ୍କ ମତରେ ଭାରତବାସୀ ହିନ୍ଦୁମାନଙ୍କର କିଛି ବିଶିଷ୍ଟ ଆର୍ଯ୍ୟତ୍ୱ ଅଛି । କେତେ ଗୁଡ଼ିଏ ବିଶେଷ ନିୟମ ନିବନ୍ଧନ, ରୀତି ନୀତି, ପ୍ରଚଳିତ ପରମ୍ପରା, ପ୍ରତିଷ୍ଠାନ ଅନୁଷ୍ଠାନ ଏହି ଆର୍ଯ୍ୟତ୍ୱର ପ୍ରତିଷ୍ଠା । ଏଥିରେ ବ୍ରହ୍ମଚର୍ଯ୍ୟାଦି ଆଶ୍ରମ ପାଳନ କରିବାକୁ ହୁଏ । ଏହି ଆର୍ଯ୍ୟ ଜୀବନର କୌଣସି ଗୋଟିଏ ନିୟମ ଦେଖ । ଯଥା, ବର୍ଣ୍ଣାଶ୍ରମ ନିୟମ । ଏହି ନିୟମ "ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ" ଏହି ନୀତି ଉପରେ ପ୍ରତିଷ୍ଠିତ । ଏଥିରେ ସବୁ ଅଛି, ଘୋଡା ଚଢ଼ାଠାରୁ ଯେ ଘାସକଟା ପର୍ଯ୍ୟନ୍ତ ଅଛି । କିନ୍ତୁ ଏହି ଆର୍ଯ୍ୟ ଜୀବନ ଆଜି ନାମ ମାତ୍ରରେ ଅଛି । ଏହା ଏକ ନିର୍ବୀର୍ଯ୍ୟ, ନିଃସାର, ବହିରାବରଣ ବିଶିଷ୍ଟ ଫମ୍ପା ହୀନସତ୍ତା ମାତ୍ର । ଅପର ପଣ୍ଡିତ ମାନେ କହନ୍ତି କି କେତେ ଅନାର୍ଯ୍ୟ, କେତେ ରୋମନ, କେତେ ଯବନ, କେତେ ୟୁରୋପୀୟ ଆସିଲେ, ଭାରତ ବକ୍ଷରେ କୁଦିଲେ, ନାଚିଲେ, ଅତ୍ୟାଚାର କଲେ, ତଥାପି ସେହି ଆର୍ଯ୍ୟ ଜୀବନ ଅକ୍ଷୁଣ୍ଣ ବିଦ୍ୟମାନ ଅଛି । କିନ୍ତୁ ସେହି ଆର୍ଯ୍ୟ ଜୀବନ ଆଜି ଗଜଭୁକ୍ତ କପିତ୍ଥବତ୍ ହୋଇ ପଡ଼ିଅଛି । ଅବହେଳା ଯୋଗୁଁ ସବୁ ରସ ଗଳିତ ହୋଇ ଗଲାଣି କେବଳ ଭୂତଖିଆ ନଡ଼ିଆ ପରି ଗଛରେ ହଲୁଛି ।

ଅସଂଖ୍ୟ ଲୋକେ ବ୍ରାହ୍ମଣ ନାମରେ ପଇତାଟେ ଲେଖାଏ କାନ୍ଧରେ ପକାନ୍ତି, କିନ୍ତୁ ଏମାନେ ଆପଣା ୨ ଜୀବନରେ ଏକଦିନ ମଧ୍ୟ ବ୍ରହ୍ମଚର୍ଯ୍ୟ ବ୍ରତ ପାଳଣ କରି ନ ଥାନ୍ତି । ୧୦ । ୧୨ ବର୍ଷ ଠାରେ ଏହି ବ୍ରାହ୍ମଣ ପିଲେ " ବ୍ରତ ହୁଅନ୍ତି " ଏମାନେ ଆଜୀବନ ଯେପରି ନାମଧାରୀ ବ୍ରାହ୍ମଣ ରହନ୍ତି । ବ୍ରତ ଦେଖାରେ ଘଣ୍ଟେ ଅଧେ ମାତ୍ର ଏହି ନାମ ବ୍ରହ୍ମଚର୍ଯ୍ୟର ଅଭିନୟ ହୋଇଥାଏ । ମିଥ୍ୟା ଭାଷଣ ଏବଂ ପରଧନାପହରଣ ଏମାନଙ୍କର ଜୀବନର ପ୍ରଧାନ ବ୍ରତ । ଶୈଶବରେ ପୁଣି ବାର୍ଦ୍ଧକ୍ୟରେ ଏମାନେ ବିବାହ କରନ୍ତି, ଏବେ ରୁଗ୍ଣକାୟ ଅଳ୍ପାୟୁ ସନ୍ତାନ ଉତ୍ପାଦନ କରନ୍ତି, ନହେଲେ ବାଲବିଧବା ବ୍ୟଭିଚାରିଣୀ ସଂଖ୍ୟା ବଢାନ୍ତି । ଏମାନଙ୍କର ଗୃହସ୍ଥାଶ୍ରମ ଏକ ଏକ ଜ୍ୱଳନ୍ତ ସଙ୍କୀର୍ଣ୍ଣତା ଓ ଜୀବନ୍ତ ସ୍ୱାର୍ଥପରତା । ଅଧ୍ୟୟନ ଅଧ୍ୟାପନ ଥିଲା ବ୍ରାହ୍ମଣର ପ୍ରଧାନ ତପସ୍ୟା, କିନ୍ତୁ ଅଜ୍ଞ ବ୍ରାହ୍ମଣମାନେ ଏହି ତପସ୍ୟା ତ୍ୟାଗ କରି ନିରକ୍ଷର ମୂର୍ଖ ହୋଇ ରହିଲେ ପୁଣି ବଡ଼ି, ବରା, ପୁଆଣି, ଓଷା, ବ୍ରତ, ଶୁଦ୍ଧି ଶ୍ରାଦ୍ଧ ଆଡ଼ମ୍ବରରେ ଜୀବନଟା ଅତିବାହିତ କରନ୍ତି । " ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ " ଥିଲା ପରା ଆର୍ଯ୍ୟ ଜୀବନର ଆକାଂକ୍ଷା ? ବ୍ରାହ୍ମଣମାନେ ନାନାବିଧ ଅବିଦ୍ୟ, ଅପରିଷ୍କୃତ, ଅସ୍ପୃଶ୍ୟ ଜାତି

କରିଲେ, ଏମାନଙ୍କୁ ବେଦାଧ୍ୟୟନରୁ ଆଜୀବନ ବଞ୍ଚିତ ରଖିଲେ । ବ୍ରାହ୍ମଣମାନେ ଥିଲେ ନିର୍ଦ୍ଦିଷ୍ଟ ଅଧ୍ୟାପକ ଏବଂ ବ୍ୟବସ୍ଥାପକ, ଏବେ ସେମାନେ ହେଲେ ଅର୍ଥଗୃଧ୍ନୁ, ବଣିକ, ଶୂଦ୍ରଯାଜୀ ସ୍ତୁତି ପାଠକ ବା ନୀଚ କାପୁରୁଷ । ରାଜାମାନଙ୍କର ବ୍ରାହ୍ମଣ ପ୍ରତି ଶ୍ରଦ୍ଧା ନାହିଁ, ଭକ୍ତି ନାହିଁ ଯେହେତୁ ଏମାନେ ହେଲେ ସେମାନଙ୍କର ଭୃତ୍ୟ ବେତନ ଖିଆ ଚାକର । ଏହା ସବୁ ଦେଖା ଗଲା ପୁଣି ଆମ୍ଭମାନଙ୍କର ଏହି ଆର୍ଯ୍ୟ ଜୀବନର ପରିଣାମ କଣ ବା ହୋଇପାରେ ତାହା ଚିନ୍ତାଶୀଳ ପଣ୍ଡିତମାନେ ଅନୁମାନ କରି ପାରିବେ । ତଥାପି ଆମ୍ଭମାନଙ୍କର ପଣ୍ଡିତ ମାନେ କହନ୍ତି ଯେ, କେତେ ବାହ୍ୟ ଅତ୍ୟାଚାର ସହ୍ୟ କରି ହିନ୍ଦୁ ମାନଙ୍କର ଆର୍ଯ୍ୟଜୀବନ-- ଦୃଢ଼ ଦୃଢ଼ ରୂପେ ଦଣ୍ଡାୟମାନ ଅଛି । ଏହି ଜୀବନରେ ଅଣୁମାତ୍ର ଆର୍ଯ୍ୟତ୍ୱ ନାହିଁ । ଏହାକି ଆତ୍ମ ପ୍ରତାରଣା ନୁହେ ?

ବର୍ତ୍ତମାନ ହିନ୍ଦୁ ସମାଜ ଯେଉଁ ବାଟରେ ଗତି କରୁଅଛି ସେ ଆର୍ଯ୍ୟ ଜୀବନ ରକ୍ଷା କରିବା ବା ଆର୍ଯ୍ୟତ୍ୱ ପାଇବା ଏକାନ୍ତ ଅସମ୍ଭବ । ବାରୁଣୀ ବାଟରେ ଗତିକରି କେହି କେବେ ଉଦୟାଚଳ ଯାଇ ପାରେ କି ? ମୂଳରେ ବଳ ନାହିଁ, ଡାଳରେ ପତ୍ର ନାହିଁ, ଶୁଷ୍କ ଫଳର ଖୋଳପାଖରେ ରସ ଢାଳି ଦେଲେ କି ସେ ଆଉ ରସାଳ ହୋଇପାରେ କି ? ମୂଳଭିତ୍ତି ବ୍ରିଗଳିତ ଜୀର୍ଣ୍ଣାବଶେଷ କାନ୍ଥ ଉପରେ ପକ୍କା ଛାତ ନିର୍ମାଣ କରା ଯାଇପାରେ କି ? ନୂତନ ପକ୍କା ଗୃହ ନିର୍ମାଣ କରିବାକୁ ହେଲେ ଭଙ୍ଗାରୁଜା ଜୀର୍ଣ୍ଣାବଶେଷ ଘରର ମୂଳ ଦୁଆ ପର୍ଯ୍ୟନ୍ତ ବାହାର କରିଦେଇ ନୂତନ ଭିତ୍ତି, ନୂତନ ସାମଗ୍ରୀ ଏବଂ ନୂତନ ପ୍ରଣାଳୀ ସମ୍ପାଦନ କରିବାକୁ ହେବ । ଇଦାନୀନ୍ତନ ହିନ୍ଦୁ ଜୀବନରେ ଆର୍ଯ୍ୟ ଜୀବନ ପୁନଃ ସ୍ଥାପନ କରିବାକୁ ହେଲେ ପ୍ରଚଳିତ ଆଚାର, ବ୍ୟବହାର, ନିୟମ, ମତ ଇତ୍ୟାଦି ଏକାବେଳକେ ବଦଳାଇ ଦେବାକୁ ହେବ । ଶିକ୍ଷା, ଦୀକ୍ଷା, ରୀତି, ନୀତି, ଅନୁଷ୍ଠାନ, ପ୍ରତିଷ୍ଠାନ, ସବୁ ନୂତନ କରିବାକୁ ହେବ । କାଳୀଦାସଙ୍କ ମୂର୍ଖତା ଦୂରକରି ତାହାଙ୍କୁ ବିଦ୍ୱାନ କରିବା ପାଇଁ ତାହାଙ୍କୁ ସାତ ଥର ମାରି ସାତ ଥର ଜନ୍ମ ଦେବାକୁ ହେଲା । ଅନାର୍ଯ୍ୟ ଭେଦବୁଦ୍ଧି ସମୂଳ ଦୂରୀଭୂତ ନହେଲେ ଆର୍ଯ୍ୟଜୀବନ ପ୍ରତିଷ୍ଠିତ ହୋଇ ପାରିବ ନାହିଁ ।

## କର୍ତ୍ତବ୍ୟ କର୍ମ ଓ କର୍ମ ଫଳ

ଆମ୍ଭମାନଙ୍କର କର୍ତ୍ତବ୍ୟ କର୍ମ ଓ ଫଳପ୍ରାପ୍ତି, ଉଭୟର ପରସ୍ପର ସମ୍ବନ୍ଧ ଥିଲେହେଁ, ଦୁଇଗୋଟି ପୃଥକ୍ ବିଷୟ ।

କର୍ତ୍ତବ୍ୟ କର୍ମ କରିବା ଆମ୍ଭମାନଙ୍କର ଅଧିକାର ଭୁକ୍ତ ଏବଂ ଉଚିତ, କିନ୍ତୁ ଫଳାଫଳର ସଙ୍ଘଟନ ଆମ୍ଭମାନଙ୍କର ଅଧିକାରବହିର୍ଭୁକ୍ତ । ଫଳାଫଳ ନିମନ୍ତେ କେବଳ

ଆମ୍ଭେମାନେ ଦାୟୀ ହୋଇ ନପାରୁଁ । ମାତ୍ର କର୍ତ୍ତବ୍ୟ କର୍ମ୍ମ ନକଲେ ଆମ୍ଭମାନଙ୍କୁ ଦାୟୀ ହୋଇ ରହିବାକୁ ହେବ, ଆମ୍ଭମାନଙ୍କୁ ଦୋଷୀ ହେବାକୁ ହେବ, ଦଣ୍ଡଭୋଗ କରିବାକୁ ହେବ । ଫଳର କାରଣ ବହୁ ପ୍ରକାର, କିନ୍ତୁ ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ କର୍ମ୍ମର କୌଣସି ଏକମାତ୍ର କାରଣ । ସକଳ କାରଣ ଏକତ୍ର ସଘଟନ କରିବା ମାନବ କର୍ତ୍ତୃତ୍ୱର ଅତୀତ । ଏହା କେବଳ ପରମେଶ୍ୱରଙ୍କ ଏକାନ୍ତ ଇଚ୍ଛାଧୀନ ।

ଅନେକ ଲୋକ ଇପ୍ସିତ ଫଳ ନହେବା ଦେଖି କିମ୍ବା ହୋଇ ନପାରିବା ଆଶଙ୍କା ମନେ କରି କର୍ତ୍ତବ୍ୟ କର୍ମ୍ମରୁ କ୍ଷାନ୍ତ ରହନ୍ତି । ଯେଉଁ ଫଳରେ ଆମ୍ଭର ଅଧିକାର ନାହିଁ, କର୍ତ୍ତୃତ୍ୱ ନାହିଁ, ସେହି ଫଳାଶାରେ ଆମ୍ଭେମାନେ ଉଦ୍ବିଗ୍ନ ହେବା, ଉତ୍ସାହ ହୀନ ହେବା, ବିରକ୍ତ ହେବା, ହତାଶ ବା ଖିନ୍ନ ହେବା, ଗର୍ବିତ ହେବା, ପ୍ରଫୁଲ୍ଲ ହେବା ବା ଆସକ୍ତ ହେବା ଉଚିତ ନୁହେ । କର୍ମ୍ମରୁ ଫଳ ଜାତ ହେବା ପ୍ରକୃତିର ନିୟମ ଥିଲେହେଁ ଫଳାଶା କର୍ମ୍ମ ପଥରେ ପ୍ରତିବନ୍ଧକ ରହି ଫଳ ପ୍ରାପ୍ତିର ଅନ୍ତରାୟ ହୁଏ । ଫଳାଶାରୁ ନିରାଶା ଜାତହୁଏ ଏବଂ ନିରାଶାରୁ କ୍ଷାନ୍ତି ବା ଅକର୍ମ୍ମଣ୍ୟତା ଜନ୍ମେ । ପୁଣି କର୍ମ୍ମ ବିଧାନହାରୁ ଫଳ ହୁଏନାହିଁ ବା କୁଫଳ ଫଳେ । ଆମ୍ଭମାନଙ୍କର ଦୁଃଖର, ଶୋକର, ଅଶାନ୍ତିର ଗୋଟିଏ ପ୍ରଧାନ କାରଣ ଫଳଶା । ଅତିରିକ୍ତ ଆଶାରୁ ନୈରାଶ୍ୟ ଜନ୍ମିଲେହେଁ କର୍ମ୍ମକ୍ଷେତ୍ରରେ କାର୍ଯ୍ୟକାରୀ ପକ୍ଷେ ଆଶା ଗୋଟିଏ ଉତ୍ତେଜକ । କାର୍ଯ୍ୟକାରୀ ପକ୍ଷେ ଆଶା ତ୍ୟାଗକରିବା ସ୍ୱାଭାବିକ ଓ ସହଜ ସାଧ ନୁହେ, କିନ୍ତୁ ଆଶାକୁ ଆୟତ୍ତ ରଖିବା ମନୁଷ୍ୟର ପ୍ରଧାନ ପୁରୁଷାର୍ଥ ଅଟେ ।

କର୍ମ୍ମକଲେ ଅବଶ୍ୟ ଫଳହୁଏ । ଇପ୍ସିତ ଫଳ ଦେଖା ନଗଲେହେଁ ଯେ କୌଣସି ପ୍ରକାର ଫଳ ଫଳୁଅଛି, ଏହି ଫଳ ଇଚ୍ଛିତ ଫଳ ଉତ୍ପାଦନରେ ଯୋଗଦିଏ । ପୁଣି ଯେ କୌଣସି କାର୍ଯ୍ୟର ଫଳ ସଦ୍ୟ ଦେଖା ନଗଲେହେଁ ତାହା ଅନ୍ୟପ୍ରକାର ସଞ୍ଚିତ ରହେ । ଅତଏବ କର୍ମ୍ମରୁ କ୍ଷାନ୍ତ ହେବା କଦାଚ ଉଚିତ ନୁହେ । ଏହି ସଂସାର କର୍ମ୍ମକ୍ଷେତ୍ର ଅଟେ । ଭଲ କର୍ମ୍ମ କରଯାଅ, ଅବଶ୍ୟ ଭଲ ଫଳ ଫଳିବ । ଜନ୍ମ ଜନ୍ମାନ୍ତରେ, କର୍ମ୍ମର ଫଳ ସ୍ମୃତି ବା ବାସନା ରୂପେ ପ୍ରାଣୀ ଶରୀରରେ ଜାଗ୍ରତ ରହେ ।



## ଯାତ୍ରା ।

ଗମନକୁ ଯାତ୍ରା କହନ୍ତି, ସାଧାରଣ କାର୍ଯ୍ୟରେ ବା ସାମାନ୍ୟ ଲୋକର ଗମନକୁ ଯାତ୍ରା କୁହାଯାଏନାହିଁ, କେବଳ ବିଶିଷ୍ଟ କାର୍ଯ୍ୟରେ ଯିବା, କିମ୍ବା ଦେବ ଦେବୀ ମାନଙ୍କର

ଗମନାଗମନକୁ ଯାତ୍ରା କୁହାଯାଏ । ଯଥା ତୀର୍ଥଯାତ୍ରା, ଯୁଦ୍ଧଯାତ୍ରା, ଓ ଦେବଯାତ୍ରା । କୁମ୍ଭକର୍ଣ୍ଣ ପରି ଦେବତାମାନେ ସର୍ବଦା ବସି ରହନ୍ତି । ମନ୍ଦିରାଭ୍ୟନ୍ତର ପ୍ରଦେଶରେ ବିଗ୍ରହମାନ ହୋଇଥାନ୍ତି, ଆଲୋକ ଓ ବାୟୁକୁ ବଞ୍ଚିତ, ଯେହେତୁ ମନ୍ଦିରରେ ଏକମାତ୍ର ଦ୍ୱାର, ପୁଣି ଝରକା, ଖୋଲିକ ରଖାଯାଏ ନାହିଁ । ଏହି ଅନ୍ଧକାର କାରାବାସରୁ ଦେବତାମାନେ ବହିର୍ଗମନ କରନ୍ତି ବର୍ଷକେ ଥରେ ବା ଦୁଇଥର । ଦେବତା ମାନଙ୍କର ଏହି ଗମନାଗମନର ବିଶେଷତ୍ୱ ଥିବା ହେତୁ ଏହାକୁ ଯାତ୍ରା କୁହାଯାଏ—ରଥ ଯାତ୍ରା, ବାମନବର୍ମୀ ଯାତ୍ରା, ଚନ୍ଦନ ଯାତ୍ରା ଇତ୍ୟାଦି ।

ଦେବତାମାନେ ଯେତେବେଳେ ମର୍ତ୍ତ୍ୟମଣ୍ଡଳରେ ଅବତୀର୍ଣ୍ଣ ହେଲେ ସେମାନେ ନରଦେହୀ ନର ନାରୀମାନଙ୍କ ପରି ଆହାର, ବିହାର, ଆମୋଦ, ପ୍ରମୋଦ, କ୍ରୀଡ଼ା କୌତୁକ, ବିଭା, ବ୍ରତ, ଜନ୍ମ, ମରଣ ଇତ୍ୟାଦି ଭୋଗ କଲେ । "ମର୍ତ୍ତ୍ୟ ମଣ୍ଡଳେ ଜନ୍ମ ହୋଇ ଦେବତା ହେଲେହେଁ ମରଇ" । ଜନ୍ମ, ମରଣ, ବିଭା, ବ୍ରତ ଯେପରି ମାନବ ଜୀବନର ଏକ ଏକ ପ୍ରଧାନ ଘଟଣା, ଦେବତା ମାନଙ୍କ ଜୀବନରେ ମଧ୍ୟ ଏହିପରି ଘଟଣାକୁ ନେଇ ନାନା ବିଧ ଉତ୍ସବ ଏବଂ ଆମୋଦ ପ୍ରମୋଦ କରିବାକୁ ହୁଏ । ପ୍ରତ୍ୟେକ ଗ୍ରାମରେ, ନଗରରେ, ପଲ୍ଲିରେ ବର୍ଷ ମଧ୍ୟରେ ଯେ କୌଣସି ଦେବତାଙ୍କୁ ନେଇ କେତେ ଯୋଡ଼ା ଯାତ୍ରା କରିବାକୁ ହୁଏ । ଏହି ଯାତ୍ରା ନେଇ ଗ୍ରାମବାସିମାନେ ବିଭିନ୍ନ ଦଳରେ ବିଭକ୍ତ ହୁଅନ୍ତି, ଅଜସ୍ର ଧନବ୍ୟୟ କରନ୍ତି, ସମୟ ଏବଂ ଶକ୍ତି ନଷ୍ଟ କରନ୍ତି ପୁଣି ପରିଣାମରେ ମାରପିଟ, ମାଲି ମକଦ୍ଦମା ଇତ୍ୟାଦିରେ ଦୁର୍ଲ୍ଲଭ ମାନବ ଜୀବନକୁ ମାଟି କରିଦିଅନ୍ତି । ଉନ୍ନତ କୃଷି ଓ ଶିଳ୍ପର ଅଭାବରୁ ଭାରତ ଆଜି ଦରିଦ୍ର । କେଉଁକାଳେ ଥିବା ଭାରତ ଦେଶ ସ୍ୱର୍ଣ୍ଣପ୍ରସୂ ପବିତ୍ର ଭୂମି ଥିଲା, କିନ୍ତୁ ଆଜି ଏହି ମହାଦେଶ ତେତିଶିକୋଟି ଦଶ ଦେବତାଙ୍କ ଅତ୍ୟାଚାରରେ ପ୍ରପୀଡ଼ିତ ।

ଏହି ଦେବତା ମାନଙ୍କର ଯାତ ଗୁଡ଼ିକୁ ନେଇ ଭାରତ ବାସିମାନେ ଜୀବନଜୀର୍ଣ୍ଣ ହୋଇ ସାରିଲେଣି, ତଥାପି ଏହି ଯାତ୍ରାମଦ ଏମାନଙ୍କୁ ଛାଡ଼ୁନାହିଁ । ଚୈତନ୍ୟ ଦେବ ଜନ୍ମ ଗ୍ରହଣ କଲେ, ଲୋକମାନଙ୍କୁ ପ୍ରେମ ଶିକ୍ଷା ଦେଲେ, ରାଧାକୃଷ୍ଣଙ୍କର ଲୀଳା ବର୍ଣ୍ଣନ ପୂର୍ବକ କୀର୍ତ୍ତନର ଉଦ୍ଭାବନ କଲେ । କିନ୍ତୁ ଆଜି ଏହି ନାମ କୀର୍ତ୍ତନ ଶେଷରେ କଳିରେ ପରିଣତ ହେଲା । ପ୍ରାୟ ପ୍ରତ୍ୟେକ ଗ୍ରାମରେ ସଂକୀର୍ତ୍ତନ ଦଳ ମଧ୍ୟରେ ଯେଉଁ ଭୟାନକ ଦ୍ୱନ୍ଦ, କଳହ ହଣା ମରା ଚାଲିଅଛି ତାହା ଭାବିଲେ ହୃତକମ୍ପ ଜାତହୁଏ । ମେଷ ସଂକ୍ରାନ୍ତି ଦିନ ହନୁମାନଙ୍କର ଜନ୍ମ । ଏହି ସଂକ୍ରାନ୍ତି ଦିନ ଉକ୍ତ ଜନ୍ମୋତ୍ସବ ପାଳନ କରିବାକୁ ହୁଏ । ଆଜି ଅନେକ ଲୋକ ବଜରଙ୍ଗୀ ସେବକ କରନ୍ତି, ଗଞ୍ଜାଳ ପଣା ହୁଏ । ଏହି ପଣା ପିଇ ଅନେକ ଲୋକ ମରୁଅଛନ୍ତି । ସେ ଦିନ ଆଶା ବନ୍ଧୁଙ୍କ ନେଖିଥିଲେ, ଏହି ଗଞ୍ଜାଳ ପଣାର ପ୍ରଭାବରେ କୋଡ଼ିଏ ଲୋକ ଏକାବେଳକେ ମରିଗଲେ । ଆମ ସାହୁକାରଙ୍କ ଗ୍ରାମରେ ରାମ ନବମୀ ଯାତ୍ରା ହୁଏ । ସେଦିନ ତାଙ୍କ ଘରେ କୌଣସି ଲୋକର ଅକାଳ ବିଯୋଗ

ହୋଇ ପିବାରୁ ଟିକାୟତ କହିଲେ ଯେ ବହୁବ୍ୟୟ ହେତୁକାରେ ବାର୍ଷିକ ରାମନବମୀ ଯାତ୍ରା ଯଥାସମ୍ଭବ ପାଳିତ ନହେବାରୁ ଏହି ଅକାଳ ଦୁର୍ଯୋଗ ଘଟିଲା । ଏବର୍ଷ ଏହି ଯାତ୍ରାକୁ ଖୁବ୍ ସମାରୋହରେ କରିବାକୁ ହେବ ସାହୁକାରେ ଏହି କଥା ଶୁଣି ଦୁଇ ତିନି ହଜାର ପର୍ଯ୍ୟନ୍ତ ବ୍ୟୟ କରି ଏବର୍ଷ ଭରି ଯାତ୍ରା କଲେ । ଆଶାର ସମ୍ପାଦକ ମହାଶୟ ଏହି ଯାତ୍ରାର ସମର୍ଥନ କରି ଏହି ସମ୍ପାଦକୀୟ ମନ୍ତବ୍ୟ ବ୍ୟକ୍ତ କଲେ — ପ୍ରତ୍ୟେକ ରାଜଧାନୀରେ ରାମନବମୀ ଯାତ୍ରା କରାଯିବା ଉଚିତ । ଯେହେତୁ ରାମ ଥିଲେ ଆଦର୍ଶ ରାଜା, ଏବଂ ରାଜା ମାନଙ୍କୁ ଏହାଙ୍କର ଗୁଣ ଓ ଅନୁକରଣ କରିବାକୁ ହେବ । ବୋଧହୁଏ ଗଞ୍ଜାଇ ପଣା ପିଇଲେ ଯେପରି ହନୁମାନ ଜନ୍ମ ହେବସ ପାଳନ କରିବାକୁ ହୁଏ, ସେହିପରି ରାମନବମୀ ଉତ୍ସବରେ ବାଣ ବାଇନାଚ ଶୋଭା ଯାତ୍ରା ଟେଁଆର ଇତ୍ୟାଦିରେ ବହୁଧନ ବ୍ୟୟ କଲେ ରାମଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରାଯାଏ, ରାଜା ଜମିଦାରମାନେ ଯାହା ମଦରୁ ବଞ୍ଚିତ ନୁହନ୍ତି । ଏମାନେ ଆପଣା ଆପଣା ରାଜଧାନୀ ମାନଙ୍କରେ ଶ୍ରୁଣ୍ଡି ଘ, ଦଶହରା, ବୃନ୍ଦୋତ୍ସବ, ରାସକ୍ରୀଡା ଇତ୍ୟାଦିରେ ମାତ୍ର ଅଜସ୍ର ଧନ ବୃଥା ବ୍ୟୟ କରି ପକାନ୍ତି । ଅଭିଜ୍ଞ ସମ୍ପାଦକଙ୍କ ପରାମର୍ଶାନୁସାରେ ଏବେ ସେମାନଙ୍କୁ ବୋଝ ଉପରେ ନିଳିତା ବଢ଼ା ବନ୍ଧନ କରିବାକୁ ହେବ ।



# ଆଶ୍ରମ ନିୟମ

ଆର୍ଯ୍ୟଜୀବନ ଚାରିଭାଗରେ ବିଭକ୍ତ ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଏବଂ ସନ୍ୟାସ । ମନୁଷ୍ୟ ସର୍ବ ପ୍ରଥମେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରେ । ଏହାହିଁ ପରବ୍ରହ୍ମ ଅବସ୍ଥା । ମନୁଷ୍ୟ ନାଁହେ ସର୍ବପ୍ରଥମେ ପରଂବ୍ରହ୍ମ, ମୂଳବ୍ରହ୍ମ, ଅଖଣ୍ଡ ବ୍ରହ୍ମ ସ୍ୱରୂପ । ଏହି ଅବସ୍ଥାନରୁ ସେ ବହୁଜ୍ଞାନ ସମ୍ପାଦନ କରି ବ୍ରହ୍ମମୟ ହୁଏ । ତାପରେ ମନୁଷ୍ୟ ହୁଏ ଗୃହସ୍ଥ। ସନ୍ତାନ ଉତ୍ପାଦନ କରିବାହିଁ ଲୋକସୃଷ୍ଟି । ଏହି ଅବସ୍ଥାରେ ଲୋକ ସନ୍ତାନ ଉତ୍ପାଦନ କରେ । ତୃତୀୟ ଅବସ୍ଥା ଅଟେ ବାନପ୍ରସ୍ଥ । ଏଥିରେ ମନୁଷ୍ୟ ବିଷ୍ଣୁ ରୂପରେ ଲୋକ ପାଳନ କରେ । ତାପରେ ସର୍ବ ଶେଷରେ ସନ୍ନ୍ୟାସ । ଏହି ଅବସ୍ଥାରେ ସବୁ ତ୍ୟାଗକରି ପରିବ୍ରାଜକ ହୁଏ । ସମସ୍ତ ପ୍ରକାର ସମ୍ପର୍କ ସଂହାର କରି ଶିବରୂପେ ବିଚରଣ କରେ । ଏହିପରି ମାନବ ଜୀବନରେ ପରାତ୍ପର ପରଂବ୍ରହ୍ମ ବିଭିନ୍ନ ଅବସ୍ଥାରେ ଅବତୀର୍ଣ୍ଣ ହୁଅନ୍ତି । ପୂର୍ଣ୍ଣ ମାନବତ୍ୱ ପାଇବାକୁ ହେଲେ ପ୍ରତ୍ୟେକ ମନୁଷ୍ୟକୁ ଏହି ଅବସ୍ଥା ଚତୁଷ୍ଟୟ ଭୋଗ କରିବାକୁ ହେବ । ଏହି ଆଶ୍ରମ ନିୟମ କ୍ରମରେ ଜୀବନ-ଅତିବାହିତ ହେଲେ ମନୁଷ୍ୟତା ପୂର୍ଣ୍ଣ ବିକାଶ ପ୍ରାପ୍ତ ହୁଏ ଏବଂ ଈଶ୍ୱରଙ୍କ ଇଚ୍ଛା ପୂର୍ଣ୍ଣ ହୁଏ । ଯେଉଁମାନେ ଯଥା ବିଧି ଏହି ଆଶ୍ରମ ନିୟମ ପାଳନ କରନ୍ତି ସେମାନେ ପ୍ରକୃତ ମନୁଷ୍ୟ, ସେମାନେ ପରିଣାମରେ ପରଂ-

ବ୍ରହ୍ମରେ ଆତ୍ମୀୟତା ଅନୁଭବ କରନ୍ତି । ଯେଉଁମାନେ ଆଶ୍ରମ ନିୟମ ଜାଣନ୍ତି ନାହିଁ, ନିଜେ ପାଳନ କରନ୍ତି ନାହିଁ, ବା ଅନ୍ୟଙ୍କ ପାଳନରେ ସହାୟତା କରନ୍ତି ନାହିଁ, ସେମାନେ ମନୁଷ୍ୟ ପଦବାଚ୍ୟ ହୋଇ ନପାରନ୍ତି ସେମାନେ କେବଳ ଅଟନ୍ତି ଈଶ୍ୱର ଦ୍ରୋହୀ ଏବଂ ମନୁଷ୍ୟ ରୂପି ପଶୁ ।

ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ଇଚ୍ଛାନୁସାରେ ମାନବ ହୃଦୟରେ ପୂର୍ବରୁ ଏହି ଆଶ୍ରମ ନିୟମ ନିହିତଅଛି । ଅବସ୍ଥା ଭେଦରେ ମନୁଷ୍ୟ ସ୍ୱଭାବତଃ ଏହି ଆଶ୍ରମ ନିୟମ ପ୍ରତି ଆକୃଷ୍ଟ ହୁଏ । ପ୍ରଥମାବସ୍ଥାରେ ମନୁଷ୍ୟ ଯେତେବେଳେ ବ୍ରହ୍ମଚାରୀ ହୁଏ ସେତେବେଳେ ତାହାର ନିର୍ଲୋଭତା, ନିର୍ଭୀକତା, ସ୍ୱାଧୀନତା ଏବଂ ଜ୍ଞାନ ପିପାସା ବହୁ ପରିମାଣରେ ଦେଖା ଯାଏ । ସେହିପରି ଗୃହୀ ଲୋକର ବିଷୟ ବାସନା ଅର୍ଜନ ଏବଂ ପାରିବାରିକ ସ୍ନେହ ସ୍ୱତଃ ଉଦିତହୁଏ । ତୃତୀୟାବସ୍ଥାରେ କ୍ରମରେ ପାରିବାରିକ ସଂକୀର୍ଣ୍ଣତା ବଦୂରିତ ହୁଏ । ବିଷୟାସକ୍ତି ଅପସରିତ ହୁଏ । ଏବଂ ଲୋକହିତ କାମନା ପ୍ରବଳ ହେବାକୁ ଲାଗେ । ବିଶେଷରେ ବିଷୟପ୍ରତି ବିରକ୍ତି ଜନ୍ମେ ଭୋଗତଳାପେଡ଼ାର ଅଳ୍ପତା ଉପଲବ୍ଧ ହୁଏ ପୁଣି ସଂସାର କ୍ରୀଡ଼ାରୁ ନିବୃତ୍ତ ଲାଭକରି ସଦବିଷୟରେ ମନୋନିବେଶ କରିବାକୁ ପ୍ରବୃତ୍ତି ଜନ୍ମେ । ଏହି ପ୍ରବୃତ୍ତି ଅନୁସାରେ ଲୋକେ ପରିଚାଳିତ ହେଉଥିଲେ ମାନବ ଜୀବନରେ ଦେବାବତାର ଅନୁଭୂତ ହୁଅନ୍ତା କିନ୍ତୁ ମାନବ ସାଧାରଣ ଅଜ୍ଞାନମୋହ ବଶୀଭୂତହୋଇ ଏହି ସ୍ୱାଭାବିକ ସତ୍ପ୍ରବୃତ୍ତି ନିଚୟକୁ ଦମନ କରି ଏବଂ ଅଭ୍ୟାସ ଜନିତ ଅଭେଦାଭ୍ୟାସ ଦ୍ୱାରା ଆକୃଷ୍ଟ ହୋଇ ଭୋଗପ୍ରତି ଆସକ୍ତ ରହନ୍ତି । ବ୍ରହ୍ମର୍ଷିକୋପିଲଗ୍ନଃ । ପ୍ରଥମେ କେହିହେଲେ ବ୍ରହ୍ମଜ୍ଞାନ ସମ୍ପାଦନ ବା ବ୍ରହ୍ମୋପାସନା କରନ୍ତି ନାହିଁ । ପରେ ନିଜ ଜୀବନରେ ବିଷ୍ଣୁ ବା ଶିବାବତାର ଉପଲବ୍ଧି କରନ୍ତି ନାହିଁ । କେବଳ ଆଜୀବନ ପ୍ରଜାପତି ବ୍ରହ୍ମା ହେବାକୁ ଚାହାନ୍ତି । ଏମାନେ ପାଶବ ବୃତ୍ତି ଚରିତାର୍ଥକରି ନିଜ ସନ୍ତାନମାନଙ୍କୁ ବିପରୀତ କୁକୁରର ଆଦର୍ଶ ଦେଖାନ୍ତି; ପରିଣାମ ଫଳରେ ଆପଣା ଦୁର୍ଲଭ ମାନବ ଜୀବନ ନଷ୍ଟ କରନ୍ତି; ପୁଣି ସଂସାରକୁ ଦୁଃଖମୟ କରି ପ୍ରସ୍ଥାନ କରନ୍ତି ।

## ନିତ୍ୟ ଓ ନୈମିତ୍ତିକ କର୍ମ

ଯେଉଁ କର୍ମ ନିତ୍ୟ କରାଯାଏ ତାହାକୁ ନିତ୍ୟକର୍ମ କୁହାଯାଏ । କର୍ମମାନେ ସତ୍କର୍ମ ବୁଝିବାକୁ ହୁଏ । ଯାହା ଅସତ୍ ତାହା କର୍ମ ନୁହେଁ । ତାହାକୁ ଅକର୍ମ କୁହାଯାଏ । ରାତ୍ରିର ଶେଷ ପ୍ରହରରେ, ବ୍ରାହ୍ମ ମୁହୂର୍ତ୍ତରେ ବା ଅରୁଣୋଦୟ ପୂର୍ବରୁ ନିଦ୍ରା ତନ୍ଦ୍ରା ଶଯ୍ୟା ତ୍ୟାଗ କରିବାକୁ ହେବ । ପ୍ରାତଃ ସ୍ନାନ କରିବ, ବେଦ ବିଧି ଅନୁସାରେ ଈଶ୍ୱରୋପାସନା କରିବ, ଅଧ୍ୟୟନ ଅଧ୍ୟାପନା କରିବ, ପ୍ରାତଃ କାଳରେ ଓ ସନ୍ଧ୍ୟା ସମୟରେ ଭ୍ରମଣ କରିବ,

ଯେଉଁ ସମସ୍ତ, ସୁବିଧା, ରୁଚି ଏବଂ ଶକ୍ତ୍ୟାନୁସାରେ ଯଥା ସମୟରେ ଭୋଜନ କରନ୍ତି, ବହୁଦେଶ ଯିବ, ନିଦ୍ରା କରିବ ଇତ୍ୟାଦି ଅଟେ ନିତ୍ୟକର୍ମ । ନିତ୍ୟ କର୍ମହିଁ ବୈଦିକ ଧର୍ମ, ନିତ୍ୟକର୍ମହିଁ ନିଷ୍କାମ କର୍ମ । ନିତ୍ୟ କର୍ମରେ କୌଣସି କାମନା ନଥାଏ । କର୍ତ୍ତବ୍ୟ ପାଳନହିଁ ଏଥିର ଉଦ୍ଦେଶ୍ୟ । ନିତ୍ୟ କର୍ମ ଅଟେ ଅଭ୍ୟାସ ଯୋଗ ଏବଂ ପରମ ସାଧନା । ଏହି ସାଧନାଦ୍ୱାରା ସିଦ୍ଧିଲାଭ ହୁଏ । ଏହି ସାଧନାହିଁ ଜନ୍ମ ଜନ୍ମାନ୍ତରେ ବାସନାରୂପେ ପ୍ରତିଷ୍ଠିତ ହୁଏ । ସାମୟିକ ବା ନୈମିତ୍ତିକ କର୍ମ ଯେତେ ମହତ୍ ହୋଇ ପଛେ ଏବଂ ନିତ୍ୟକର୍ମ ଯେତେ ସାମାନ୍ୟ ହୋଇ ପଛେ ନିତ୍ୟକର୍ମହିଁ ଶ୍ରେଷ୍ଠତର । ନିତ୍ୟକର୍ମରୁ ସ୍ୱାସ୍ଥ୍ୟ ଲାଭ ହୁଏ, ନୈପୁଣ୍ୟ ଜନ୍ମେ ଏବଂ ପାରଦର୍ଶିତା ପ୍ରାପ୍ତ ହୁଏ । ନିତ୍ୟକର୍ମ ପରିତ୍ୟାଗ କଲେ ସ୍ୱାସ୍ଥ୍ୟ ନଷ୍ଟ ହୁଏ, ଶାନ୍ତିଭଙ୍ଗ ହୁଏ, ଶକ୍ତି, ସାମର୍ଥ୍ୟ, ତେଜ ଓଜ ସବୁ ନଷ୍ଟ ହୁଏ, ବିଶୃଙ୍ଖଳ ଜାତ ହୁଏ ଏବଂ ଜୀବନ ବୃଥା ହୁଏ । ନିତ୍ୟକର୍ମହିଁ ନିତ୍ୟ, ସତ୍ୟ, ଏବଂ ଶାଶ୍ୱତ, ଅନ୍ୟ କର୍ମମାନ ଅନିତ୍ୟ, ଅସତ୍ୟ କୃତ୍ରିମ ଏବଂ କ୍ଷଣସ୍ଥାୟୀ ।

ସନ୍ଧ୍ୟା, ଗାୟତ୍ରୀ ଜପ ରୁଦ୍ରାଭିଷେକ ଇତ୍ୟାଦି କେତେକ କର୍ମ କେବଳ ନିତ୍ୟକର୍ମ ନାମରେ ଅଭିହିତ, ତାହା ନୁହେ ପୋଷାକପିନ୍ଧି, ଦାନ୍ତଘଷା, ସକାଳଖିଆ ଇତ୍ୟାଦି ମଧ୍ୟ ନିତ୍ୟକର୍ମ; କିନ୍ତୁ କେଉଁ କର୍ମ ଶାରୀରିକ, କେଉଁ କର୍ମ ମାନସିକ, କେଉଁ ଆଧ୍ୟାତ୍ମିକ, କେଉଁ ବା ବୈଷୟିକ । ନିତ୍ୟକର୍ମ ମଧ୍ୟରେ ଏହିପରି ଉଚ୍ଚ ନୀଚ ଶ୍ରେଣୀ ଭେଦ ଥିଲେହେଁ ପ୍ରତ୍ୟେକ ନିତ୍ୟକର୍ମ ଆପଣାର ନିତ୍ୟତ୍ୱ ଏବଂ ନିଷ୍କାମତ୍ୱ ହେତୁ ପରମ ପବିତ୍ର ଅଟେ । ସହସ୍ର ସଂଖ୍ୟକ ନୈମିତ୍ତିକ କର୍ମ ଦ୍ୱାରା ନିତ୍ୟ କର୍ମର ଅଭାବ ପୂରଣ ହୋଇ ପାରେନାହିଁ କିନ୍ତୁ ଯେଉଁମାନେ ନିତ୍ୟକର୍ମ ପରାୟଣ ସେମାନଙ୍କ ପକ୍ଷରେ ନୈମିତ୍ତିକତାର ପ୍ରୟୋଜନ ନାହିଁ । ଯେଉଁମାନେ ଆଳସ୍ୟ ପରାୟଣ, ଅଜ୍ଞାନ ଏବଂ କ୍ଷଣିକ ଉତ୍ସାହ ବା ଆମୋଦ ପ୍ରମୋଦରେ ଅନୁପ୍ରାଣିତ ସେହିମାନେ କେବଳ ନୈମିତ୍ତିକ କର୍ମରେ ମାତି ରହନ୍ତି । ନୈମିତ୍ତିକ କର୍ମରେ ଲୋକର ଯେତେ ଆସକ୍ତି ବଢ଼େ ନିତ୍ୟକର୍ମରେ ଆସ୍ଥା ସେତିକି କମିଯାଏ । ନୈମିତ୍ତିକ କର୍ମରେ ବେଶି ଆନ୍ତରିକତା ନଥାଏ, କିନ୍ତୁ ବହୁପରିମାଣରେ ବାହ୍ୟାଡମ୍ବର ଦେଖାଯାଏ । ଅନେକ ଲୋକ ଆପଣା ଜୀବନରେ ସେବା ଶୁଶ୍ରୂଷା ଓ ଆଜ୍ଞାପାଳନ ଦ୍ୱାରା ଥରେ ହେଲେ ଆପଣା ପିତା ମାତାଙ୍କୁ ତୃପ୍ତ କରି ନଥାନ୍ତି, ଉର୍ଣ୍ଣ ତାହାଙ୍କୁ କାହିଁ ଆଦୌ ବୁଝି ନାହାନ୍ତି, ବର୍ଷଯାକ ବହୁଗଲ୍ପ ତର୍ପଣ ଶବ୍ଦ ଉଚ୍ଚାରଣ କରି ନଥାନ୍ତି, ଏବେ ଆଶ୍ୱିନ ମାସର ଅପରପକ୍ଷ ଚହ୍ନୁଷ୍ଟା ମାନେ ଡାଲପତ୍ର ଖେଳା ମେଲି ଦେଇ ଦୁର୍ଗନ୍ଧି ଗର୍ତ୍ତ ଜଳରେ ତିଳ ତଣ୍ଡୁଳ ଭସାଇ ଦିଅନ୍ତି, ଆପଣା ପିତା ମାତା ବାହାରେ କେତେ, ଅଯୁକ୍ତିକ, ସମ୍ବନ୍ଧିକ କୁଟୁମ୍ବିକ ଅସଂଖ୍ୟ ପିତୃ ଲୋକଙ୍କୁ ତୃପ୍ତ କରି ଦିଅନ୍ତି । ଏହି ଅପର ପକ୍ଷରେ ନୈମିତ୍ତିକ ବିଧାନାନୁସାରେ କେହି ପଦ ପାଣ୍ଟିର ଖାଇବେ ନାହିଁ । ଯେ ଯେଉଁ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି, ସବୁ ଛାଡ଼ି ଅଧେର ପଥରେ ଘରକୁ ଗୁଳିଯିବେ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ

ତନ ଭୁବନର ପିତୃ ଲୋକଙ୍କୁ ତୃପ୍ତ କରିବାକୁ ହେବ—ବସୁଧୈବ କୁଟୁମ୍ବକଂ, ତଥାପି ନାଜଘର ଗାଁ'ଭାଗ ନହେଲେ ବୈଶ୍ୟଦେବ ହୁଏନାହିଁ । ଏହି ନୈମିତ୍ତିକ କର୍ମ କାଣ୍ଡକୁ କହନ୍ତି ଅପର ପକ୍ଷର ପିତୃ ତର୍ପଣ, ଏହା ପକ୍ଷାନ୍ତରେ ମାହାଳିଆ ଶ୍ରାଦ୍ଧରେ ପରିଣତ ଲାଭକରେ । ପିତା, ମାତା, ପିତାମହାଦି ପୂର୍ବ ପୁରୁଷମାନେ ଯେଣ୍ଟା ପିଣ୍ଡ ଯଥା ସମୟରେ ପାଇଥାନ୍ତି । ମହାଳୟ ଶ୍ରାଦ୍ଧଟା ବଳକା । ହେତୁ ଏହା ଜଜମାନ ଗୃହସ୍ଥ ପକ୍ଷରେ ମାହାଳିଆ କିନ୍ତୁ ପୁରୋହିତର ଏହା ଏକ ପ୍ରଧାନ ପାଳକ ।

ପ୍ରତ୍ୟେକ ଦେବ ଦେବୀଙ୍କ ପାଇଁ ଏକ ଏକ ନୈମିତ୍ତିକ କର୍ମ କାଣ୍ଡର ଉଆଣ ହୋଇଅଛି । ବିନାୟକ ଚତୁର୍ଥୀ ଦେଖନ୍ତୁ । ବିନାୟକ ଚତୁର୍ଥୀରେ ଗଣେଶଙ୍କ ଆରାଧନା କରିବାକୁ ହୁଏ, ଗଣ ଅର୍ଥାତ୍ ଇନ୍ଦ୍ରିୟ ଗଣର—ଜ୍ଞାନର ଉପାଦାନ ବିଶେଷ ଏହି ଗଣର ଈଶ ଅଟନ୍ତି ଗଣେଶ ବା ଜ୍ଞାନ । ଜ୍ଞାନ ସମ୍ପାଦନ କରିବାହିଁ ଗଣେଶଙ୍କ ଉପାସନା । ବିଦ୍ୟା ଅଧ୍ୟୟନ, ଅଧ୍ୟାପନ କରିବା'ହିଁ ଗଣେଶଙ୍କ ଆରାଧନା " ଅଗ୍ରପୂଜ୍ୟୋ ଗଣାଧିପଃ । " ପ୍ରତ୍ୟେକ ଅନୁଷ୍ଠାନ ପୂର୍ବରେ ଗଣାଧିପଙ୍କୁ ଆରାଧନା କରିବାକୁ ହୁଏ ଅର୍ଥାତ୍ ଉପସ୍ଥିତ କର୍ମକାଣ୍ଡର ସବିଶେଷ ଆଲୋଚନା କରିବାକୁ ହୁଏ, କିନ୍ତୁ ଅନେକ ଲୋକ ଆଜ ନୈମିତ୍ତିକ କର୍ମମୋହରେ ପଡି ବିଦ୍ୟା ଅଧ୍ୟୟନ, ଅଧ୍ୟାପନ ଛାଡ଼ି ବିଦ୍ୟା ପ୍ରାପ୍ତି ନିମିତ୍ତ ଗଣେଶଙ୍କୁ ତୃପ୍ତ କରିବା ପାଇଁ ବିନାୟକ ବ୍ରତ ପାଳନ କରନ୍ତି । ଯେଉଁମାନେ ନପଢି ପଣ୍ଡିତ ହେବାକୁ ଚାହାନ୍ତି, ସେମାନେ ଦେବ ଦେବୀଙ୍କ ଆଶୀର୍ବାଦରେ ସବିଦ୍ୟ ହେବାକୁ ବସନ୍ତି, ସେମାନେ ବିନାୟକ ଚତୁର୍ଥୀ ବ୍ରତ କରନ୍ତୁ ବା ସରସ୍ୱତୀ ପୂଜା କରନ୍ତୁ, କିନ୍ତୁ ଶ୍ରଦ୍ଧ ମାନଙ୍କ ପକ୍ଷରେ ଏହି ନୈମିତ୍ତିକ ବ୍ୟାପାରର ପ୍ରୟୋଜନ ନାହିଁ, ଶତ ଶତ ଟଙ୍କା ବ୍ୟୟକରି ଷିଆ କାକରା, ଭୋଗକରି ନଡିଆ ଭାଙ୍ଗି ମୁଣ୍ଡ କଗୁଡ଼ ଏତେ କାଣ୍ଡ କାରଖାନା କରିବା ଆବଶ୍ୟକ ନାହିଁ ।

ଏହିପରି ଲକ୍ଷ୍ମୀ ପୂଜା କରାଯାଏ । ଆଳସ୍ୟ ପରାୟଣ ବ୍ୟବସାୟ ବିମୁଖ ଲୋକମାନେ ଧାନମାଣିକା ଓଷା କରି ଧନୀ ହେବାକୁ ପ୍ରୟାସ କରନ୍ତି । ଲକ୍ଷ୍ମୀ ଦେବୀଙ୍କ ଅନୁଗ୍ରହ ସମ୍ପାଦିବା ପାଇଁ ଗୁରୁବାର ଦିନ ଭିକ୍ଷା ଦିଅନ୍ତି ନାହିଁ, ଅନ୍ୟ କୌଣସି ଦେୟ ଦିଅନ୍ତି ନାହିଁ, ଲକ୍ଷ୍ମୀ- ଠାକୁରାଣୀଙ୍କ ନୈବେଦ୍ୟ ଦୁଃଖୀ ରଙ୍କୀ କାହାକୁ ନଦେଇ ନଦୀରେ ଭସାଇ ଦିଅନ୍ତି । " ବାଣିଜ୍ୟେ ବସତି ଲକ୍ଷ୍ମୀ " କିନ୍ତୁ ଗୁରୁବାର ପୂଜାରେ ଲକ୍ଷ୍ମୀ ଆସନ୍ତି ନାହିଁ, କେବଳ ପରିଶ୍ରମୀ ଓ ବ୍ୟବସାୟୀ ଲୋକର ଅନୁଗତା ହୁଅନ୍ତି ।

ଅମ୍ଭମାନଙ୍କର ଏବର ପିତୁଳା ଉପାସନା ଏହି ନୈମିତ୍ତିକ କର୍ମ କାଣ୍ଡର ଫଳ । ପୌତ୍ତଳିକ ପଣ୍ଡିତ ମାନେ କହନ୍ତି ଯେ ପିତୁଳା ଈଶ୍ୱର ନୁହନ୍ତି, ଈଶ୍ୱରଙ୍କ ନିମିତ୍ତ ପିତୁଳା ଗୁଡିକର ସୃଷ୍ଟି ଏବଂ ଉପାସକମାନେ ଏହି ପିତୁଳ ପାବଚ୍ଛ ଦ୍ୱାରା ପରମେଶ୍ୱରଙ୍କ ନିକଟରେ ଉପନୀତ ହୁଅନ୍ତି । କିନ୍ତୁ ଫଳରେ ଦେଖା ଯାଉଅଛି, ଲୋକସାଧାରଣ କଥା ଛାଡ଼ ଶିକ୍ଷିତ ଲୋକମାନେ ମଧ ନୈମିତ୍ତିକ ପିତୁଳରେ ମାତି ନିତ୍ୟ—ଈଶ୍ୱରଙ୍କୁ ପରିତ୍ୟାଗ

କରନ୍ତି । ଲୋକେ ଦେଉଳ ବାହାରେ ଶପଥ କରନ୍ତି ନାହିଁ କିବା ଜପ କରନ୍ତି ନାହିଁ, ଧ୍ୟାନ ଉପାସନା କରି ପାରନ୍ତି ନାହିଁ । ମନ୍ଦିର ବାହାରେ ମିଥ୍ୟା କହ, ସ୍ୱେଚ୍ଛାଚାର କର, ଈଶ୍ୱର ଦେଖି ପାରିବେ ନାହିଁ । ଏହି ଧାରଣା କି ପ୍ରକୃତ ଈଶ୍ୱରୋପାସନା ?

ବିଶୁଦ୍ଧ ପବିତ୍ର ଅଗ୍ନି ସେବାଦ୍ୱାରା ଈଶ୍ୱରଙ୍କୁ ନିତ୍ୟ ଉପାସନା କରିବା କଥା ଥିଲା, ଏବେ ହୋମ ହେଲା ନୈମିତ୍ତିକ କାମ୍ୟ କର୍ମକାଣ୍ଡ । ଭୂତ ପ୍ରେତ, ବିସୂଚୀ, ବସନ୍ତ, ଠାକୁରାଣୀ ବାଉରାଣୀ ଇତ୍ୟାଦିଙ୍କର ସାମୟିକ ଆରାଧନା ନିମନ୍ତେ ହୋମ କରାଯାଏ । ନାତୁଣୀ ପୁଅ ହେବ, ଅଦାଲତରେ ନମ୍ବର ଜିତି ହେବ, ଏଥିପାଇଁ ଠାକୁର ବା ଠାକୁରାଣୀଙ୍କ ମନ୍ଦିରରେ ହୋମ କରାଯାଏ । ନୈମିତ୍ତିକ ବ୍ୟାପାରର ସକାମତା, ଅପ୍ରୟୋଜନ ଓ ଆଡମ୍ବର ଅସଂଖ୍ୟ ଲୋକଙ୍କୁ ଭୁଲାଇ ପକାଏ ପୁଣି ଚରିତ୍ର ଏବଂ ମନୁଷ୍ୟତା ସଂଗଠନର ଅନ୍ତରାୟ ହୁଏ ।

---

## ସାକାର ଉପାସନା

ପ୍ରଥମାବସ୍ଥାରେ ଅର୍ଥାତ୍ ବୈଦିକ ଯୁଗରୁ ଆରମ୍ଭ କରି ଦେଖିବାକୁ ହେଲେ ସର୍ବ ପ୍ରଥମେ ହିନ୍ଦୁମାନେ ପ୍ରକୃତିର ପୂଜା କରିଥାନ୍ତି, ଯଥା, ବାୟୁ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, ନଦୀ ପର୍ବତ ଇତ୍ୟାଦି । ପ୍ରକୃତରେ କୌଣସି ଅସାଧାରଣ ବ୍ୟକ୍ତି ଦେଖାଗଲେ ତାହା ଈଶ୍ୱର ରୂପେ ଆରାଧିତ ହୁଏ । ଏହି ବିଶେଷ ଶକ୍ତି ମାନଙ୍କର ଅଧିଷ୍ଠାତ୍ରୀ ଶକ୍ତି-ଦେବୀ ରୂପେ ପରିଚିତ ହେଲେ । ଯଥାଃ-ଦୁର୍ଗା, କାଳୀ, ଠାକୁରାଣୀ, ଗ୍ରାମଦେବୀ ଇତ୍ୟାଦି । ଲୋକେ ଏହି ଶକ୍ତି ଦେବୀଙ୍କ ଆରାଧନା କରିବାରୁ ଶାକ୍ତ ବୋଲାଇଲେ । ଦେଖିବ ଯେ ପ୍ରତ୍ୟେକ ଗ୍ରାମରେ ନଗର ହେଉ, ପାଟଣା ହେଉ, ପଲ୍ଲୀ ହେଉ, ସର୍ବତ୍ର ଠାକୁରାଣୀ ବା ଗ୍ରାମଦେବୀ ସ୍ଥାପିତ ଅଛନ୍ତି । କୌଣସି ଗ୍ରାମରେ ମନ୍ଦିର ଭିତରେ, କୌଣସି ଗ୍ରାମରେ ବାଡ଼ିର ସାହିରେ କେଉଁ ଠାରେ, ବୃକ୍ଷ ମୂଳେ କେଉଁଠାରେ ବା ନଦୀକୂଳେ, ଏପରି ଯେ କୌଣସି ସ୍ଥାନରେ ପଥର ଖଣ୍ଡେ ବା କାଠ ଗଡ଼ିଟିଏ ବା ଭଳି କିଛିଟାଏ ସ୍ଥାପନ କରି ତାହାକୁ ଗ୍ରାମଦେବୀ ନାମରେ ଆରାଧନା କରନ୍ତି । ବାଉରି, ଖଡ଼ାଲ, ହାଡ଼ି, ଦଣ୍ଡାସୀ ପ୍ରଭୃତି ଅନ୍ତ୍ୟଜ ଜାତିର ଲୋକେ, ଯେଉଁମାନେ କି ଆଜି ଚଣ୍ଡାଳ ବୋଲି ଉପେକ୍ଷିତ, ଏହି ଗ୍ରାମଦେବୀ ମାନଙ୍କର ଅଦ୍ୟାପି ପୂଜକ ହୋଇଅଛନ୍ତି । ପୁଣି ପ୍ରତ୍ୟେକ ଗୃହସ୍ଥଙ୍କର ଗୃହ ଈଶାଣ କୋଣେ କାହାର ପୂଜା ହୁଏ ? ଇଷ୍ଟ ଦେବୀ ଠାକୁରାଣୀଙ୍କର । ପୁଣି ଅନେକ ପୁରାତନ ଗ୍ରାମ ମାନଙ୍କରେ ଶିବ, ବିଷ୍ଣୁ, ଆଦି ଦେବତା ମାନଙ୍କ ମନ୍ଦିର ଦେଖାଯାଏ ନାହିଁ । ଏଥିରୁ ବୋଧହୁଏ ଯେ ପ୍ରଥମେ ହିନ୍ଦୁମାନେ ଶକ୍ତିଦେବୀ ଉପାସକ ବା ଶାକ୍ତ ଥିଲେ ।

ସନ୍ତାନମାନେ ପ୍ରଥମେ ମାଆଲୁ ଚଇନ୍ତି ପରେ ବାପାର ପରିଚୟ ନଅନ୍ତି । ଦେବୀ ଉପାସନାରୁ ଦେବଙ୍କୁ ଜାଣିବା ଇଚ୍ଛା ଜନ୍ମିଲା । ସେତେବେଳେ ଲୋକେ ଶିବ ବା ମହାଦେବଙ୍କର କଳ୍ପନା କଲେ । ଚିକ୍କଣ ଗୋଲ ପଥର ବା ଗୋଡ଼ ଗୋଟିଏ ଲେଖେ ନେଇ ଶିବ ଲିଙ୍ଗ ନାମରେ ନାନାସ୍ଥାନରେ ସ୍ଥାପନ କରି ଦେଇଗଲେ । ଏହି ଶିବ ମନ୍ଦିର ମାନଙ୍କରେ ଏପର୍ଯ୍ୟନ୍ତ ଶୂଦ୍ରମାନେ ପୂଜକରୂପେ ନିଯୁକ୍ତ ହୁଅନ୍ତି । ଏହିପରି ଦେଖାଗଲା ଯେ ଦୁର୍ଗା ଏବଂ ଶିବ ଅମ୍ଭମାନଙ୍କର ଅତି ପ୍ରାଚୀନ ଦେବତା । ଏହି ପ୍ରାଚୀନତା ହେତୁ ଏମାନଙ୍କର ମହିମା ମଧ୍ୟ ଲୋକରେ ବଡ଼ । ଲୋକେ କୌଣସି ମହା ବିପଦ ବେଳେ ଶିବ ବା ଦୁର୍ଗାଙ୍କୁ ବିଶେଷ ଭାବରେ ଆରାଧନା କରନ୍ତି, ସର୍ପଦଂଷ୍ଟ ଲୋକମାନଙ୍କୁ ଶିବମନ୍ଦିର ଆଗରେ ପକାଇ ରଖନ୍ତି ଏବଂ ମହାମାରି ଉପଦ୍ରବ ଉପସ୍ଥିତ ହେଲେ ପ୍ରତ୍ୟେକ ଗ୍ରାମରେ ଦୁର୍ଗା ବା ଠାକୁରାଣୀଙ୍କୁ ପଣା ପାଣି ଦେଇ ଆରାଧନା କରନ୍ତି । ଏହିପରି ଦୁର୍ଗାଦେବୀ ଓ ଶିବଦେବଙ୍କ ଉପାସନା ହେବା କେତେ କାଳପରେ ଅନ୍ୟାନ୍ୟ ଦେବ ଦେବୀଙ୍କର ସୃଷ୍ଟି ଆରମ୍ଭ ହେଲା । ଲୋକମାନେ ଯେପରି କାଠ ଖଣ୍ଡିକରେ ତୃପ୍ତ ନହୋଇ ବଗିଚା ପାଇଲେ, ସେହିପରି ଲୋକେ ଦୁର୍ଗା ଓ ଶିବଙ୍କ ପରିପାଳନରେ ତୃପ୍ତ ନହୋଇ ବିଷ୍ଣୁ, ଗଣେଶ ଆଦି ପଞ୍ଚଦେବତାର ସୃଷ୍ଟି କଲେ । ଭିନ୍ନ ଭିନ୍ନ ମୁନି ମାନଙ୍କର ଭିନ୍ନ ଭିନ୍ନ ମତ । ଲୋକେ ଏକମତ ନହୋଇ ଦୁର୍ଗା, ଶିବ, ବିଷ୍ଣୁ, ସୂର୍ଯ୍ୟ, ଗଣେଶ ପଞ୍ଚ ଦେବତାଙ୍କର କଳ୍ପନା କଲେ । ଏହି ଉପାସକ ମାନଙ୍କ ମଧ୍ୟରେ ପରସ୍ପର ଏତେଦୂର ବିରୁଦ୍ଧ ଭାବ ଜାତହେଲା ଯେ କେହି କାହା ପଥରେ ଚାଲିଲେ ନାହିଁ । ବୈଷ୍ଣବମାନେ କହିଲେ ଯେ " ବ୍ୟାଘ୍ରୋପି ଖାଦ୍ୟ ମାଘ୍ରୋତି ନଗଚ୍ଛେତ୍ ଶଂକରାଳୟଂ " " ଅଗ୍ରାହ୍ୟଂ ଶିବ ନିର୍ମାଲ୍ୟଂ " ଇତ୍ୟାଦି ।

ପ୍ରତିମାରୂପୀ ଈଶ୍ବରଙ୍କ ପୂଜା ଆରାଧନା ବେଦରେ ଉଲ୍ଲେଖ ନାହିଁ ବୋଲି ବେଦାନ୍ତୀ ପରମହଂସମାନେ କହନ୍ତି । କେବଳ ଜ୍ଞାନର ଉପାଦାନ ଗୁଡ଼ିକୁ ବେଦରେ ଦେବତା ନାମରେ ବର୍ଣ୍ଣନା କରାଯାଇଅଛି । ପୁଣି ଏହି ପଞ୍ଚ ଦେବତା ଅନ୍ୟସ୍ଥାନରେ ପରାତ୍ପର ପରବ୍ରହ୍ମଙ୍କର ଆତ୍ମା, ଶକ୍ତି ଓ ଇନ୍ଦ୍ରିୟାଦିରୂପେ ବର୍ଣ୍ଣିତ ହୁଅନ୍ତି । ବେଦଜ୍ଞାନ ବିବର୍ଜ୍ଜିତ ମୂଢମନା ସ୍ବାହଂକାରୀ ବ୍ୟକ୍ତି ବିଶେଷ ମୂର୍ତ୍ତିମାନ ଦେବତା ଗୁଡ଼ିକ ଗଢ଼ି ସେମାନଙ୍କ ଠାରେ ଈଶ୍ବରତ୍ୱ ବା ବ୍ରହ୍ମତ୍ୱ ଆରୋପ କଲେ । ଏବେ ଏହି ପଞ୍ଚ ଦେବତାରୁ ୩୩ କୋଟି ଦେବତାର ଉଦ୍ଭାବନ କରାଯାଇ ଅଛି । ଭାରତରେ ମନୁଷ୍ୟ ଗୋଟିକେ ଦଅଁ ଗୋଟିଏ ବା ଦିଗୁଳା ଗୋଟିଏ ।

ଆଉ ଏକ କଥା ଦେଖନ୍ତୁ— ବିଷ୍ଣୁ ପ୍ରତିମା ଗୁଡ଼ିକର ଶିଳ୍ପ ନୈପୁଣ୍ୟ ସେ ଗୁଡ଼ିକର ଅପେକ୍ଷାକୃତ ଆଧୁନିକତାର ପରିଚୟ ଦେଉଅଛି । ପୂର୍ବକାଳେ ଯେତେବେଳେ ଶିଳ୍ପ ନୈପୁଣ୍ୟ ନଥିଲା, ସେତେବେଳେ ଅଗଢ଼ା ପଥର ଖଣ୍ଡେ, ଗଛର ଗଣ୍ଠିଏ, ମାଟି ଢିପାଟିଏ ବା ଉଇ ହୁଙ୍କାଟେ ଦେବତା ରୂପେ ପ୍ରତିଷ୍ଠିତ ହେଉଥିଲେ । କାଳକ୍ରମେ ଲୋକଙ୍କର ଶିଳ୍ପ ସୌନ୍ଦର୍ଯ୍ୟ

ଜ୍ଞାନ ବଢିଲା, ଶିଳ୍ପ ନୈପୁଣ୍ୟ ଜନ୍ମିଲା । ଫଳରେ ଅବଶ୍ୟ ମନୋହର ଲାବଣ୍ୟ ମୂର୍ତ୍ତି ଗଢ଼ିତ କଳ୍ପିତ ହେଲା ପୁଣି ମହାତ୍ମା ବୀର ଜନନାୟକ ମାନଙ୍କର ପ୍ରତିମୂର୍ତ୍ତି ଖୋଦିତ ହୋଇ ସେମାନଙ୍କର ସ୍ମାରକ ସ୍ୱରୂପ ମନ୍ଦିରରେ ରଖାଗଲା ଏବଂ ଏହି ମୂର୍ତ୍ତିମାନଙ୍କ ସହିତ ବିବିଧ ପ୍ରକାର ରଞ୍ଜିତ ଅଲୀକ କିମ୍ବଦନ୍ତୀ ଜଡ଼ିତ ରହିଲା । ଶ୍ରୀକୃଷ୍ଣରୂପୀ ସାକ୍ଷାତ ବିଷ୍ଣୁ ବାଲା ନୂପୁର ଲଗାଇ ସତ୍ୟବାଦୀ ପର୍ଯ୍ୟନ୍ତ ଚାଲି ଆସିଲେ, ବାଲିରେ ନୂପୁର ଶବ୍ଦ ଲୁଚିଗଲା, ଭକ୍ତ ଫେରି ଚାହିଁଦେଲା, ଶ୍ରୀକୃଷ୍ଣ ସେହି ସ୍ଥାନରେ ଉଭାନ ହୋଇଗଲେ । ଏହି ଗୋପାଳ ମୂର୍ତ୍ତିର ଅବଶ୍ୟ ସୌନ୍ଦର୍ଯ୍ୟ ଓ ଅଲୌକିକ ରୂପ ଲାବଣ୍ୟ ମାନବକୃତ ହୋଇ ନପାରେ; ସାକ୍ଷାତ ଭଗବାନ ବିଜେ କରନ୍ତି । ଅତଏବ ଭକ୍ତ ମାନଙ୍କର ସେ ପରମ ଆରାଧ୍ୟ ଅଟନ୍ତି ଏହି କଥା ଆମର ପଣ୍ଡିତ ମାନେ କହନ୍ତି । ସ୍ୱର୍ଣ୍ଣକାର ମାନେ ଯେତେବେଳେ ବିଶ୍ୱକର୍ମା ବା ବିଶ୍ୱବ୍ରାହ୍ମଣ, ତେବେ ସାକ୍ଷୀ ଗୋପାଳ ଏହିରୂପେ ଶ୍ରୀକୃଷ୍ଣାବତାର ବିଷ୍ଣୁରୂପୀ ପରବ୍ରହ୍ମ ହୋଇ ପାରନ୍ତି ।

" ପ୍ରତିମା ସ୍ୱଳ୍ପବୁଦ୍ଧିନାଂ " ସ୍ୱଳ୍ପ ବୁଦ୍ଧି ବା ବୁଦ୍ଧିହୀନ ଲୋକେ ପ୍ରତିମା ଆରାଧନା କରନ୍ତି । ଅଜ୍ଞ ଲୋକଙ୍କ ପାଇଁ ଅଜ୍ଞ ଲୋକଙ୍କଦ୍ୱାରା ପ୍ରତିମାର ଉଦ୍‌ଭାବନ କରା ଯାଇ ନାହିଁ । ମୂଢ଼ ଅଜ୍ଞ ଲୋକମାନେ ନିଜେ ନିଜେ ବନ୍ଧନର ଶୃଙ୍ଖଳ ତିଆରି କରି ଅଛନ୍ତି । କେହି ୨ ପଣ୍ଡିତ କହନ୍ତି, ପରବ୍ରହ୍ମଙ୍କୁ ଜାଣିବା ସକାଶେ ସାକାର ଉପାସନା ଗୋଟିଏ ଉତ୍କୃଷ୍ଟ ସୋପାନ କିନ୍ତୁ ଦେଖା ଯାଉଅଛି ଯେ ଜନସାଧାରଣ ଏହି ସୋପାନ ଦ୍ୱାରା ଲକ୍ଷ୍ୟବସ୍ତୁ ନିକଟରେ ପହୁଞ୍ଚି ପାରନ୍ତି ନାହିଁ । ଏମାନେ ଲକ୍ଷ୍ୟଭ୍ରଷ୍ଟ ହୋଇ ଅସାର ବସ୍ତୁକୁ ଧରି ବସନ୍ତି । ଏମାନେ ମନ୍ଦିର ଭିତରେ ଯାଇ ଶପଥ କରନ୍ତି । ମନ୍ଦିର ବାହାରେ ମହାପ୍ରଭୁ ନାହାନ୍ତି । ସେଠାରେ ଯଥେଚ୍ଛା ମିଛ କହିଲେ ଚଳିବ । " ଯଥା ଦେହେ ତଥା ଦେବ " ଏହି ଜ୍ଞାନ କରି ସେମାନେ ପ୍ରତିମା ରୂପୀ ଦେବତା ମାନଙ୍କ ପାଇଁ ମଧ୍ୟ ଦେବଦାସୀ ଖଞ୍ଜିଦେଇଛନ୍ତି, ଚୌର୍ଯ୍ୟ, ଦ୍ୟୁତ, ମିଥ୍ୟା, ଛଳନା, ମୋହ ଇତ୍ୟାଦି ମାନବ ସୁଲଭ ଦୌର୍ବଲ୍ୟର ବ୍ୟବସ୍ଥା କରିଦେଇ ଅଛନ୍ତି । ଏହି ଦେବ ଗୁଡ଼ିକୁ ସଙ୍ଗେ ଯେନ ଖାଅନ୍ତି, ପିଅନ୍ତି, ବୁଲନ୍ତି, ଶୁଅନ୍ତି, ଖେଳନ୍ତି, ଦର କରନ୍ତି, ଚୋରି କରନ୍ତି, କଳି କରନ୍ତି, ମାରପିଟ କରନ୍ତି, ମାମଲା ମୋକଦ୍ଦମା କରନ୍ତି ପୁଣି ଶେଷରେ ସେହି ଅମର ଦେବତା ମାନଙ୍କୁ ଆପଣାର ପରି ଜ୍ଞାନ କରି ଜନ୍ମ ହୁଅନ୍ତି ପୁଣି ମରି ଯାଆନ୍ତି । ଅନ୍ୟାନ୍ୟ ଶ୍ରେଷ୍ଠ ପ୍ରତିମା ଗୁଡ଼ିକର କଥା ଛାଡ଼, ପୁରୀ ବଡ଼ ଦେଉଳର ଜଗନ୍ନାଥଙ୍କ ମଧ୍ୟ ବର୍ଷକରେ ଥରେ ଦେହତ୍ୟାଗ କରନ୍ତି । ଏହି ସାକାର ଉପାସନା ପଦ୍ଧତି ଭାରତ ଦେଶକୁ ଛାରଖାର କରି ଦେଲାଣି, ଏହି ପିତୁଳା ପୂଜା ଆର୍ଯ୍ୟ ମାନଙ୍କୁ ପାନବାର୍ଯ୍ୟ କରି ଦେଲେଣି ଏବଂ ଜଡ଼ ପଦାର୍ଥର ପୂଜା ହେଉ ହିନ୍ଦୁମାନେ ନିଜର ଜ୍ଞାନ ବିଜ୍ଞାନ ନଷ୍ଟ କରି ଜଡ଼ ହେଲେଣି ତଥାପି ଆମ୍ଭମାନଙ୍କର ପାରଦର୍ଶୀ ପଣ୍ଡିତ ମାନେ ସେଥିରେ ପ୍ରଶ୍ରୟ ଦେଉ ଅଛନ୍ତି ।



# ଆର୍ଯ୍ୟ ଜୀବନରେ ଆଧ୍ୟାତ୍ମିକତା

୨

ଆର୍ଯ୍ୟ ଜୀବନରେ ଆତ୍ମଜ୍ଞାନ ଲାଭ ହୁଏ । ପରମେଶ୍ୱରଙ୍କ ପିତୃତ୍ୱ ଓ ମାନବ ଜାତିର ଭ୍ରାତୃତ୍ୱରେ ଆର୍ଯ୍ୟର ପୂର୍ଣ୍ଣ ବିଶ୍ୱାସ । ଆର୍ଯ୍ୟ ପଣ୍ଡିତମାନେ ସକଳ ଜୀବନରେ ଆତ୍ମୀୟତା ଉପଲବ୍ଧି କରନ୍ତି । କି ଇଉରୋପୀୟ, କି ଅଫ୍ରିକାବାସୀ, କି ଯପାନ କି ଭାରତୀୟ, କି ଖ୍ରୀଷ୍ଟିୟାନ କି ଜୈନ, କି ମୁସଲମାନ, କି ବ୍ରାହ୍ମଣ ବା କି ବାଉରି-ସମସ୍ତଙ୍କ ଠାରେ ଆତ୍ମଜ୍ଞାନ କରନ୍ତି । ଆତ୍ମବତ୍ ସର୍ବ-ଭୂତେଷୁ ଯଃପଶ୍ୟତି ସପଣ୍ଡିତଃ । ଜଗତର ଲୋକମାନଙ୍କୁ ଜ୍ଞାନାଲୋକ ଦେବାପାଇଁ ବେଦର ସୃଷ୍ଟି । କି ବ୍ରାହ୍ମଣ, କି ଚଣ୍ଡାଳ କି ମୁସଲ ମାନ, କି ଖ୍ରୀଷ୍ଟିୟାନ, କି ସ୍ତ୍ରୀ, କି ପୁରୁଷ ସମସ୍ତେ ବେଦ ପାଠରୁ ଜ୍ଞାନଲାଭ କରିବେ । ଆର୍ଯ୍ୟ ଧର୍ମ କେବଳ ଭାରତର ହିନ୍ଦୁମାନଙ୍କ ପାଇଁ ନୁହେଁ, ମନୁଷ୍ୟମାନେ ଆର୍ଯ୍ୟ ହେବା ଉଚିତ । ଏହାହିଁ ଆର୍ଯ୍ୟଧର୍ମର ନିର୍ଦ୍ଦେଶ କିନ୍ତୁ ଆମର ଆର୍ଯ୍ୟ ପଣ୍ଡିତମାନେ ଆତ୍ମାର ବିଭିନ୍ନତା ଦେଖନ୍ତି, ଏମାନଙ୍କ ମତରେ "ଅନାତ୍ମବତ୍ ସର୍ବ-ଶୂଦ୍ରେଷୁ ଯଃ ପଶ୍ୟତି ସ ଆର୍ଯ୍ୟଃ", । ଏମାନେ କହନ୍ତି "ପରମେଶ୍ୱର ମାନବଜାତିକି ଗଢିବା ପୂର୍ବରୁ ସେମାନଙ୍କ ପାଇଁ ବିବିଧ କର୍ମ କାଣ୍ଡର ଯୋଗାଡ କରି ଦେଇ ଅଛନ୍ତି ପୁଣି ଏହି କର୍ମ ଅନୁସାରେ ମନୁଷ୍ୟ ଜାତିକି ବାଣ୍ଟି ଦେଇ ଅଛନ୍ତି । ଏହି ବିଭାଗ ଅନୁସାରେ ଯେ ଯାହା କର୍ମ କରିବେ, ଏକଲୋକର କର୍ମ ଅନ୍ୟଲୋକ କରି ପାରିବେ ନାହିଁ । ସୃଷ୍ଟି ପୂର୍ବରୁ ଯେଉଁ ବେଦର ସୃଷ୍ଟି ହୋଇଅଛି ତହିଁରେ ମଧ୍ୟ ସବୁଲୋକର ସମାନ ଅଧିକାର ନାହିଁ । ବେଦ ପଢିବା ନିମନ୍ତେ କେବଳ ବ୍ରାହ୍ମଣ ଜାତିର ସୃଷ୍ଟି ହୋଇଅଛି । ବ୍ରାହ୍ମଣ ଘରେ ଯେ ଜନ୍ମ ହେବ ସେହି କେବଳ ବେଦ ଅଧ୍ୟାପନା କରି ପାରିବ । ଶୂଦ୍ର ବଂଶରେ ଯେ ଜନ୍ମ ଗ୍ରହଣ କରେ ତାହାର ବେଦ ପାଠରେ ଅଧିକାର ନାହିଁ । ଶୂଦ୍ର କଥା ଛାଡ, ବ୍ରାହ୍ମଣର ବେଦ ପଠନ ଅଧିକାର ଥିଲେ ମଧ୍ୟ ବ୍ରାହ୍ମଣ ସ୍ତ୍ରୀର ସେପରି କୌଣସି ଅଧିକାର ନାହିଁ । ଶୂଦ୍ର ଏବଂ ସ୍ତ୍ରୀମାନଙ୍କ ପ୍ରତି ବେଦପାଠ ନିଷେଧ କରା ଯାଇ ଅଛି। ଆର୍ଯ୍ୟର ଧର୍ମ କର୍ମ ପୂର୍ବରୁ ନିର୍ଦ୍ଦିଷ୍ଟ ଅଛି । ବ୍ରାହ୍ମଣ ଶୂଦ୍ର ଓ ସ୍ତ୍ରୀମାନଙ୍କର ଧର୍ମ କର୍ମ ପୃଥକ୍ ଅଟେ । ଆର୍ଯ୍ୟମାନେ ଏହି ନିର୍ଦ୍ଦିଷ୍ଟ ଧର୍ମ ନିୟମାନୁସାରେ ଚଳିବେ । ସ୍ୱେଚ୍ଛାଚାରିତା ଆର୍ଯ୍ୟର ଧର୍ମ ନୁହେଁ । ଶୂଦ୍ର ଯଦି ବେଦାଧ୍ୟୟନ କରେ ତେବେ ସେ ସ୍ୱେଚ୍ଛାଚାରୀ ହୁଏ। ତାହାର ଏପରି ଅଧିକାର ନାହିଁ ଯେ ସେ ଶ୍ରୁତି ବାକ୍ୟରୁ ଈଶ୍ୱରତ୍ୱ ଗ୍ରହଣ କରି ପାରିବ। " ଏହି ସମୟରେ ଯେତେବେଳେ ପ୍ରକୃତ ଆର୍ଯ୍ୟଧର୍ମ ପାଳିତ ହେଉଥିଲା ସେତେବେଳେ ସ୍ୱଭାବ ଏବଂ ଶକ୍ତ୍ୟନୁସରେ କର୍ମ କରା ଯାଉଥିଲା । ଜନ୍ମଗତ ଜାତି ନିର୍ବିଶେଷରେ ଲୋକେ ବେଦଜ୍ଞାନ ଲାଭ କରୁଥିଲେ । ଏବଂ ବେଦ ଧାରଣ ଓ ଶୁଦ୍ଧାଗ୍ରହୀ ହେବାରୁ ବ୍ରାହ୍ମଣ ପଦକୁ ଉନ୍ନୀତ ହେଉଥିଲେ । ଏବେ ଆଜି ସେହିର କର୍ମ ନାହିଁ ବା ଧର୍ମ ନାହିଁ, ଅଛି କେବଳ ନାମମାତ୍ର ଆର୍ଯ୍ୟ ଜୀବନ । ଏହି ଯଥା ଆର୍ଯ୍ୟଜୀବନକୁ ନେଇ ଆଜି ପଣ୍ଡିତ ମାନଙ୍କର ଏତେ ଅଭିମାନ ।

ଈଶ୍ୱରଙ୍କର ସର୍ବବ୍ୟାପକତାରେ ଆର୍ଯ୍ୟର ପୂର୍ଣ୍ଣ ବିଶ୍ୱାସ । ଆର୍ଯ୍ୟମାନେ କହନ୍ତି ଏକବ୍ରହ୍ମ ଦ୍ୱିତୀୟ ନାସ୍ତି, ପୁଣି ସେହି ବ୍ରହ୍ମକୁ ସର୍ବତ୍ରରେ ଦେଖି ପାରନ୍ତି । ଯେତେବେଳେ ସେମାନେ ଜଗତକୁ ବ୍ରହ୍ମମୟ ଜ୍ଞାନକରନ୍ତି । କିନ୍ତୁ ଆର୍ଯ୍ୟ କେବେହେଁ କାଷ୍ଠ ପାଷାଣ ବା ଦାରୁ ଶିଳାକୁ ପରମେଶ୍ୱର ଜ୍ଞାନ କରି ପୂଜା କରେ ନାହିଁ, କିବା ସର୍ବବ୍ୟାପୀ ସଚ୍ଚିଦାନନ୍ଦ ବ୍ରହ୍ମଙ୍କୁ ମନ୍ଦିର ମଧ୍ୟରେ ଧରିବାନ୍ଧି କରି ରଖେନାହିଁ । କାଷ୍ଠ ପାଷାଣ ଦେବତାକୁ ବେଦ କେବେହେଁ ସ୍ୱୀକାର କରେ ନାହିଁ ବରଂ ନିଷେଧ କରେ । ପୁଣି କାଷ୍ଠ ପାଷାଣ ନିର୍ମିତମୂର୍ତ୍ତିକୁ ଭଗବଦ୍‌ଗୀତାରେ ଅଜ୍ଞାନ ଦେବତା କୁହା ଯାଇଅଛି । ଆର୍ଯ୍ୟ ଅଟେ ଈଶ୍ୱରଙ୍କ ଆଜ୍ଞାନୁବର୍ତ୍ତୀ ପୁଣି ଆପଣାର ପ୍ରତ୍ୟେକ କର୍ତ୍ତବ୍ୟରେ ଈଶ୍ୱରାଦେଶ ଉପଲବ୍ଧି କରେ, ଅନୁଭବ କରେ । ବେଦ ଅଟେ ଈଶ୍ୱରାଦେଶ ଏବଂ ପ୍ରକୃତ ଜ୍ଞାନର ବିଷୟ । ସମସ୍ତ ପଦାର୍ଥ ମଧ୍ୟରେ ଅଗ୍ନି ଅଟେ ପରମ ପବିତ୍ର ଓ ସର୍ବଦା ବିଶୁଦ୍ଧ ପଦାର୍ଥ । ଏହାହିଁ ଉପାସନାର ଉପଯୁକ୍ତ ଉପାଦାନ ବୋଲି ବେଦରେ ନିର୍ଦ୍ଦିଷ୍ଟ ଅଛି । ପରମେଶ୍ୱରଙ୍କ ସ୍ଥାନରେ କୌଣସି ଦେବତାର ଆରାଧନା ବା କୌଣସି ପ୍ରତିମାରୂପୀ ଦେବତାର ଉପାସନା ବେଦ ବିରୁଦ୍ଧ କର୍ମ ଅଟେ । ଆର୍ଯ୍ୟ କେବେହେଁ ବେଦାଦେଶ ଲଙ୍ଘନ କରି ନ-ପାରେ । ଈଶ୍ୱରଙ୍କର ପୃଥକତା ଏବଂ ସର୍ବ ବ୍ୟାପକତା ଅନୁଭବ କରି କାଠ ପଥରକୁ ଆରାଧନା କରି ପାରେ ନାହିଁ । ପ୍ରକୃତ ଆର୍ଯ୍ୟ କେବେହେଁ ସାକାର ନିରାକାର ଓଁକାର ମକାର ଇତ୍ୟାଦି ପ୍ରଣାଳୀର ଉପାସନା ଏକତ୍ର କରିପାରେ ନାହିଁ । କେହି କେହି ପଣ୍ଡିତମାନେ ଧର୍ମ ସହିଷ୍ଣୁତା ନାମରେ ଏହି ବିଷୟରେ ଉପାସନାର ପ୍ରଶ୍ରୟ ଦେଇ ଥାନ୍ତି କିନ୍ତୁ ଏହା ଧର୍ମ ସହିଷ୍ଣୁତା ନୁହେଁ । ଏହା କେବଳ ଈଶ୍ୱରଙ୍କ ପ୍ରତି ଦୁଃସହ ଉଦାସୀନତା, ନତୁବା ବିଶୁଦ୍ଧ ଆତ୍ମ ନିର୍ବୋଧ । ଯଦି ଈଶ୍ୱର ନିଜେ କହିଛନ୍ତି ଯେଉଁମାନେ ଗଦ୍‌ଗଦ ଭକ୍ତିରେ ଅର୍ପଣ କରିପାରେ ତେବେ ମୁଁ ନରବଳୀ-ପର୍ଯ୍ୟନ୍ତ ଗ୍ରହଣ କରିପାରେ, ତେବେ ନର, ପିଶାଚ, ଦସ୍ୟୁ, ପଶୁ ଇତ୍ୟାଦି ଶ୍ରେଣୀର ଲୋକ ଆର୍ଯ୍ୟ ଅଟନ୍ତି, କି ଇଉରୋପୀୟ, କି ଭାରତୀୟ ସମସ୍ତେ ଆର୍ଯ୍ୟ, ତେବେ ଭାରତବାସୀମାନେ କାହିଁକି ଅମର ନିଜର ଧର୍ମ ବୋଲି ଆର୍ଯ୍ୟଧର୍ମ ଉପରେ ଏକାଧିପତ୍ୟ କରିବେ, ଯଥେଚ୍ଛା ସ୍ୱେଚ୍ଛାଚାର ଅତ୍ୟାଚାର ଇତ୍ୟାଦି କରିବେ ?

ଭଗବାନ ନିଜେ କହିଛନ୍ତି ଯେଉଁମାନେ ଯେଉଁ ରୂପରେ ଭଜେ ମୁଁ ତାଙ୍କୁ ସେହି ରୂପରେ ପ୍ରାପ୍ତ ହୁଏ । ଏହିକଥାର ମର୍ମାର୍ଥ କଣ ବୁଝିବାକୁ ହେବ । ଈଶ୍ୱରଙ୍କୁ ଯେ ଯେଉଁ ରୂପରେ ଭକ୍ତି କରେ, ଅର୍ଥାତ୍ ଈଶ୍ୱରଙ୍କୁ ଯେ କାଠ ପଥର ରୂପେ ଭକ୍ତି କରେ ସେ ତାହାପ୍ରତି କେବଳ କାଠ ପଥରପରି ରହନ୍ତି । କାଠ ପଥର ଖଣ୍ଡିକୁ ପୂଜାକଲେ କାଠ ବା ପଥର କଣ ଦେଇ ପାରେ ବା ନେଇପାରେ ? ସେହିପରି କାଠର ବା ପଥରର ପିତୁଳା ଈଶ୍ୱର କିଛି କରି ନପାରନ୍ତି । ଈଶ୍ୱରଙ୍କୁ ଯେ ଭୂତ ପ୍ରେତ ରୂପେ ଗ୍ରହଣ କରନ୍ତି ସେମାନଙ୍କୁ ଈଶ୍ୱର ଭୂତ ପ୍ରେତ ହୋଇ ଲାଗନ୍ତି, ପୁଣି ଈଶ୍ୱରଙ୍କୁ ଯେ ନିରାକାର ନିର୍ବିକାର

ସଚ୍ଚିଦାନନ୍ଦ ପରବ୍ରହ୍ମ ରୂପରେ ଭଜନ୍ତି ତାହାଙ୍କୁ ସେ ପ୍ରକୃତ ଈଶ୍ୱର ରୂପରେ ବରଦ ହୁଅନ୍ତି। ଯେଉଁମାନେ ଆପଣାର ପାପକର୍ମକୁ ଈଶ୍ୱରଙ୍କ ଠାରେ ସମର୍ପଣ କରନ୍ତି ଈଶ୍ୱର ତାହାଙ୍କୁ ସେହି ପାପର ଫଳ ଭୋଗକରିବାକୁ ଦିଅନ୍ତି। ଈଶ୍ୱରଙ୍କ ନାମରେ କରାଗଲା ବା ତାହାଙ୍କୁ ସମର୍ପଣ କରାଗଲା ବୋଲି ସେ କେବେ ପାପକୁ ପୁଣ୍ୟ କରି ଦିଅନ୍ତି ନାହିଁ କିମ୍ବା ଦୋଷିଙ୍କୁ ଅଦଣ୍ଡ୍ୟ କରନ୍ତି ନାହିଁ। କର୍ମର ଫଳ ଅନିବାର୍ଯ୍ୟ, ଅବଶ୍ୟମ୍ଭାବୀ। କେବଳ ଏହା ନୁହେଁ ଯେପରି କର୍ମ କଲେ ସେପରି ଫଳ ପାଇବାକୁ ହୁଏ। କୋଟି କୋଟି କଳ୍ପ ବହିଯିବ, କର୍ମର ଫଳ ରହିଯିବ। କାଠ ପଥର ପୂଜାର ଫଳ ଭାରତବାସିମାନେ ଏବେ ଭଲେ ଅନୁଭବ କରୁଛନ୍ତି। ଠାକୁର ବାଡି ଗୁଡ଼ିକ ବ୍ୟକ୍ତିଗତ ସମ୍ପତ୍ତି। ଘର ଦିଅଁ, ପରଦିଅଁ, ଗ୍ରାମ ଦେବତା ଏବଂ ଜନସାଧାରଣଙ୍କର ଦେବତା ଇତ୍ୟାଦି ବିଭିନ୍ନ ଭାବରେ ଈଶ୍ୱରଙ୍କୁ ବିଭକ୍ତ କରାଯାଏ। ପିତୁଳା ଗୁଡ଼ିକୁ ଦେଖାଇ ପଇସା ରୋଜଗାର କରିବାକୁ ହୁଏ। ଅନେକ ଜାନି, କାଳସୀ, ମାଳୀ, ରାଉଳ, ପଣ୍ଡା, ପଣ୍ଡିଆରୀ, ପୂଜାରୀ, ଧର୍ମକର୍ତ୍ତା ଇତ୍ୟାଦି ନାମରେ ଏହି କାଠ ପଥର ଦିଅଁ ଗୁଡ଼ିକୁ ଦେଖାଇ ଆପଣା ଆପଣା ଜୀବିକା ନିର୍ବାହ କରନ୍ତି। "ଥିଲା ମାଳୀ, ମାଇଲା ଡାଳ, ଧରିପକାଇଲା ଖୋରଡ଼ି ଥାଳି" ଏହାହିଁ ପ୍ରତିମା ଆରାଧନାର ପରିଣାମ ଫଳ। ଏହି ଜଡ଼ ପିତୁଳା ଧର୍ମରେ ଜଡ଼ିତ ରହିବା ଦିନଠୁଁ ହିନ୍ଦୁମାନଙ୍କର ଆର୍ଯ୍ୟତ୍ୱ ଗଲାଣି। ପାଷଣ୍ଡ ପୌତ୍ତଳିକତା ସହିତ ପରମ ପବିତ୍ର ଆଧ୍ୟାତ୍ମିକତା କଦାପି ତିଷ୍ଠି ପାରେ ନାହିଁ।



# ଆଶା।

ଆଶା ଏକ ପାଶ। ଆଶା ମନୁଷ୍ୟକୁ ଆବଦ୍ଧ କରେ। ଯେଉଁ ପ୍ରାଣୀ ଆଶାର ବଶୀଭୂତ ସେ ନୈରାଶ୍ୟ ଭୋଗ କରେ, ସୁଖ ଶାନ୍ତିରୁ ବଞ୍ଚିତ ହୁଏ। ଆଶାହିଁ ଅଶାନ୍ତିର ମୂଳ କାରଣ। ଆଶାରୁ ନୈରାଶ୍ୟ ଜନ୍ମେ। ଏବଂ ଦୁଃଖ କ୍ଲେଶ ଜାତହୁଏ। ଆଶା କ୍ରମବର୍ଦ୍ଧନଶୀଳ ଆଶାରୁ ଅତ୍ୟାଶା ତୃଷ୍ଣା ଏବଂ ନିରାଶା ବିକାଶ ପ୍ରାପ୍ତହୁଏ। ଯେଉଁମାନେ ଆଶାଉପରେ ଏକାନ୍ତ ନିର୍ଭର କରନ୍ତି ସେମାନେ ପରିଣାମରେ ପ୍ରତାରିତ ହୁଅନ୍ତି ଆଶା ଅଟେ ମୃଗତୃଷ୍ଣା। ତାହାର ବାହ୍ୟାଡମ୍ବର ଓ ବେଶ ଭୂଷାରେ ବିମୋହିତ ହୋଇ ଯେଉଁ ଲୋକ କାର୍ଯ୍ୟରେ ପ୍ରବେଶ କରେ ସେ ନିଷ୍ଫଳ ହେଲେ ମନସ୍ତାପ ଭୋଗକରେ। ଆଶା ପାଶରେ ପଡ଼ି ଅନେକ ଲୋକ ସର୍ବସ୍ୱାନ୍ତ ହୁଅନ୍ତି ଏବଂ ପରିଶେଷରେ ଅଶେଷ ବିପଦ ଭୋଗ କରନ୍ତି। ଆଶା ଅଟେ ସ୍ୱଭାବରେ ଅସହ୍ୟ ଯାତନା। ଯେଉଁ ଲୋକ ଆଶାକୁ ପୋଷଣ କରେ ଆଶା ସେହି ଲୋକର

ଚିନ୍ତା ହୁଏ । ଯେଉଁମାନେ ଆଶା ବା କାମନା ପରିତ୍ୟାଗ କରି କର୍ତ୍ତବ୍ୟ ପାଳନ କରନ୍ତି ସେମାନେ ପରିଣାମରେ କେବେହେଁ ଦୁଃଖ ବା ମନସ୍ତାପ ଭୋଗ କରନ୍ତି ନାହିଁ । ଅତଏବ ଆମମାନଙ୍କର ଆଶା ଓ ହିଂସା ପରିତ୍ୟାଗ କରି କର୍ତ୍ତବ୍ୟ ପାଳନ କରିବା ଉଚିତ ।



# ଆଶା ବଡ଼ କୃତଘ୍ନ ।

ଆଶାକୁ ଯେଉଁ ଲୋକ ଆଶ୍ରୟ ଦିଏ ସେହି ଲୋକ ଅବଶେଷରେ ଅଶାନ୍ତି ଭୋଗ କରେ । ଆଶାକୁ ପୋଷି ପାଳି ରଖ, ସେ ନିଶ୍ଚୟ ଶେଷରେ ଦଗାଦେବ । ଆଶାପରି ଦ୍ରୋହୀ କୃତଘ୍ନ ଆଉ କିଏ ଅଛି ? ଏକ ଦୃଷ୍ଟାନ୍ତ ଦ୍ୱାରା ଅକୃତଜ୍ଞ ଆଶାର କଥା ପରିଚୟ ଦିଆଯାଇପାରେ । ଏକଦା ଏକ ଶ୍ୱାନ ବ୍ୟାଘ୍ର ଭୟରେ ଏକ ଋଷିଙ୍କର ଆଶ୍ରୟ ଗ୍ରହଣ କଲା । ସେହି ଋଷି ଦୟାବନ୍ତ ଶ୍ୱାନକୁ ବ୍ୟାଘ୍ର କରିଦେଲେ । କୁକୁରଟା ଗୋଟିଏ ବାଘ ହୋଇ ଯିବାର ଦେଖି ବାଘ ତାହାର ଆଉ କଷ୍ଟ ଘଟାଇ ନପାରି ଚାଲିଗଲା, ହଠାତ୍ ଏକ ହସ୍ତୀ ଆସି ଉକ୍ତ ବ୍ୟାଘ୍ରକୁ ଗ୍ରାସିଦେଲା, ସେତେବେଳେ ଋଷି ତାକୁ ଏକ ହସ୍ତୀ କରିଦେଲେ । ଶ୍ୱାନଟା ହସ୍ତୀ ହୋଇ ଋଷିଙ୍କ ପାଖେ ଥାଏ । ଏକଦିନ ଏକ ସିଂହ ଆସି ଉକ୍ତ ହସ୍ତୀକୁ ବଧ କରିବାକୁ ଚାହିଁଲାରୁ ସେହି ଋଷି ଉକ୍ତ ହସ୍ତୀକୁ ଏକ ସିଂହ କରିଦେଲେ, କିଛିକାଳ ପରେ ଗୋଟିଏ ଶରଭ ଆସି ଉକ୍ତ ସିଂହକୁ ପୀଡ଼ାଦେବାକୁ ଲାଗିଲା ସେତେବେଳେ ଋଷି ଉକ୍ତ ସିଂହକୁ ଶରଭ କରିଦେଲେ । ସେହି ଶରଭରୂପୀ ଶ୍ୱାନ ଦିନେ ଋଷିଙ୍କୁ ଆକ୍ରମଣ କରିବାକୁ ବସିଲା । ଋଷି କହିଲେ ଅରେ କୃତଘ୍ନ ଶ୍ୱାନ, ତତେ ପଦେ ପଦେ ବିପଦରୁ ରକ୍ଷାକରିବାରୁ ତୁ ଏହି କୃତଜ୍ଞତା ଦେଖାଇଲୁ, ତୋହର ଛଡ଼ା ଦୋଷ ନାହିଁ ତତେ ଆମ୍ଭେ ଶରଭ ପର୍ଯ୍ୟନ୍ତ କରିଅଛୁ ବୋଲି ଏହାହିଁ ଫଳ । ଏହା କହି ଋଷି ସେହି ଶରଭକୁ ପୁନରପି ଶ୍ୱାନ କରିଦେଲେ, ପୁଣି ଶ୍ୱାନ ଯେବେ ଋଷିଙ୍କ ପଦତଳେ ପଡ଼ିବାରୁ ଋଷି ତାହାକୁ ଗୋଇଠା ମାରି ଘଉଡ଼ାଇ ଦେଲେ, ଆଉ ପାଖେ ପଶିବାକୁ ଦେଲେ ନାହିଁ । ଏହି କୃତଘ୍ନ ଶ୍ୱାନ ପରି ଆଶା ମଧ୍ୟ ଆପଣାର ପୋଷକ ପାଳକ ଓ ଉପକାରକର ଅପକାର କରେ, ସରଳପ୍ରକୃତିକ ବ୍ୟକ୍ତିମାନଙ୍କରେ ମଧ୍ୟ ପୀଡ଼ାଦିଏ । ଯେଉଁ ଲୋକ ମନରେ ଆଶାକୁ ପୋଷଣ କରେ, ଆଶାପ୍ରତି ବିଶ୍ୱାସ କରିବାରେ ତାହା ଉପରେ ନିର୍ଭର କରେ ନିଶ୍ଚୟ ପରିଣାମରେ ପ୍ରତାରିତ ହୁଏ ପରାଭୂତ ହୁଏ ଏବଂ ପଶ୍ଚାତାପ ଭୋଗ କରେ । ଆଶାକୁ ପୋଷିବା ନାଗସାପକୁ ପାଳିବା ସଦୃଶ ଅଟେ । ଆଶା କେବେହେଲେ ପୂର୍ଣ୍ଣମାତ୍ରାରେ ଫଳବତୀ ହୁଏନାହିଁ, ଫଳବତୀ ହେଲେ ସୁଦ୍ଧା ତହିଁରୁ ନିବୃତ୍ତି ଲାଭ ହୁଏନାହିଁ, ଯେହେତୁ ଆଶାର ଅନ୍ତ ନାହିଁ, ଆଶା ଅଟେ ଆକାଶ ପରି ଅନନ୍ତ ।

ଏବଂ ଅପୂର୍ଣ୍ଣ ଥାଇ ଆଉ ବା ପୂର୍ଣ୍ଣ ନୋହୁଣୁ ଅନ୍ୟ ଆଶା ଆସି ଆକ୍ରମଣ କରିଥାଏ । ଅତଏବ ସୁଖ ଶାନ୍ତି ଭୋଗ କରିବାକୁ ହେଲେ ଆଶାକୁ ଦୂରୁ ପରିତ୍ୟାଗ କରିବା ଉଚିତ ।



## ମୂର୍ତ୍ତି ପୂଜାର ଷୋଡ଼ଶାପଗୁଣ ।

ପ୍ରଥମ ଅପଗୁଣ।— ଦେଉଳ ତୋଳାଇବା ଢଙ୍ଗରେ ମୂର୍ତ୍ତି ସ୍ଥାପନ କରିବା ଏବଂ ତାହାର ପ୍ରାଣ ପ୍ରତିଷ୍ଠା କରିବା, ପୁଣି ଭୋଗରାଗ, ନାନାଯାତ୍ରା ଇତ୍ୟାଦି ପାଇଁ ଜମି ବାଡ଼ି ଛାଡ଼ିବା ଇତ୍ୟାଦି କାର୍ଯ୍ୟରେ ବହୁ ଧନ ବ୍ୟୟ ହୁଏ । ଏହି ଅପବ୍ୟୟ ହେତୁ ଦେଶରେ ଦାରିଦ୍ର୍ୟ ସଙ୍ଗେ ସଙ୍ଗେ ଅଜ୍ଞାନର ମାତ୍ରା ବଢ଼ିବାକୁ ଲାଗେ ।

ଦ୍ୱିତୀୟ।— ମନ୍ଦିରମାନଙ୍କରେ ସ୍ତ୍ରୀ ପୁରୁଷର ଅଭେଦ ମିଳନ ଯୋଗୁଁ ନାନାପ୍ରକାର ବ୍ୟଭିଚାର, ଦ୍ୱନ୍ଦ୍ୱ କଳହ ଏବଂ ସଂକ୍ରାମକ ଆଦି ବିବିଧ ରୋଗ ଉତ୍ପନ୍ନ ହୁଏ ।

ତୃତୀୟ।—ମୂର୍ତ୍ତିପୂଜକମାନେ ମୂର୍ତ୍ତି ପୂଜାରୁହିଁ ଧର୍ମ, ଅର୍ଥ, କାମ, ମୋକ୍ଷ, ସାଧକ ଜ୍ଞାନ କରି ଆପଣାର ପୁରୁଷାର୍ଥ ପରିତ୍ୟାଗ କରି ଦୁର୍ଲ୍ଲଭ ମାନବ ଜୀବନ ନଷ୍ଟ କରନ୍ତି ।

ଚତୁର୍ଥ।– ଆପଣାର ବିଜୟ ଓ ଶତ୍ରୁର ପରାଜୟ ନିମନ୍ତେ ମୂର୍ତ୍ତି ପୂଜକମାନେ ଦେବତାର ମୂର୍ତ୍ତି ଉପରେ ସକଳ ଆଶା ଭରସା ରଖି ଆପଣାର କୌଣସି ପୁରୁଷାର୍ଥ ପ୍ରକାଶ ନ କରି ବସି ରହନ୍ତି । ଫଳରେ ଶତ୍ରୁମାନେ ଜୟ ଲାଭ କରନ୍ତି, ଏବଂ ଏମାନେ ସ୍ୱରାଜ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟ, ସ୍ୱାଧୀନତା ହରାଇ ପରାଧୀନ ପରପଦାକ୍ରାନ୍ତ ହୋଇ ଦୀନ ହୀନ ଭାବରେ ଭଡ଼ାଟିଆ ଘୋଡ଼ା ବା କୁମ୍ଭାର ବଳଦ ପରି ବହୁକ୍ଲେଶ ଭୋଗ କରନ୍ତି ।

ପଞ୍ଚମ।—ଯେଉଁମାନେ ମୂର୍ତ୍ତି ପୂଜକ ଭ୍ରାନ୍ତ ଧାରଣାର ବଶୀଭୂତ ହୋଇ ମନ୍ଦିର ୨ ଦେଖି ଦେଶାନ୍ତର ଭ୍ରମଣ କରନ୍ତି, ସେମାନେ ବହୁ କଷ୍ଟ ଭୋଗ କରନ୍ତି । ଚୋର ଖଣ୍ଡାଆଦି ଦୁଷ୍ଟ ଲୋକ ଦ୍ୱାରା ପୀଡ଼ିତ ପ୍ରତାରିତ ବା ଲୁଣ୍ଠିତ ହୋଇ ପରିଶେଷରେ ଇହ ପର ସବୁ ସୁଖ ହରାଇ ବସନ୍ତି ।

ଷଷ୍ଠ।— ମୂର୍ତ୍ତି ଉପାସକମାନେ ମାତା ପିତାଦି ଗୁରୁଜନମାନଂକୁ ସେବା ଶୁଶ୍ରୂଷା ଓ ମାନନା ନକରି ମୂର୍ତ୍ତି ପୂଜାଦି ଦୁର୍ବ୍ୟସନରେ ମାତି ରହି ଗୁରୁଜନ ମାନଙ୍କଠାରେ କୃତଘ୍ନ ହୁଅନ୍ତି ।

ସପ୍ତମ।—ଯଦି ମୂର୍ତ୍ତିଗୁଡ଼ିକୁ କେହି ଚୋର କରି ନେଇ ଯାଏ, ନତୁବା ଭାଙ୍ଗି ଫୋପାଡ଼ି ଦିଏ ତେବେ ଉପାସକମାନଙ୍କ ହୃଦୟରେ ବାଧା ହୁଏ ବା ସେମାନେ ବୃଥା ରୋଦନ କରି ଯାତନା ଭୋଗ କରନ୍ତି ।

ଅଷ୍ଟମଃ—ଭିନ୍ନ ଭିନ୍ନ ଆକାର ପ୍ରକାର ନାମ ଓ ଚରିତ୍ର ଯୁକ୍ତ ମୂର୍ତ୍ତି ସ୍ଥାପିତ ହେବା ହେତୁ ପୂଜକମାନଙ୍କ ମଧ୍ୟରେ ଐକ୍ୟମତ ରହି ପାରେ ନାହିଁ, ପୁଣି ସେମାନଙ୍କ ମଧ୍ୟରେ ବିରୁଦ୍ଧ ମତ ଓ ବିରୁଦ୍ଧାଚାର ପ୍ରବର୍ତ୍ତିବା ଯୋଗୁଁ ସମାଜରେ ଏକତା ନଷ୍ଟ ହୁଏ ଏବଂ ଦେଶ ଉତ୍ସନ୍ନ ହୁଏ ।

ନବମଃ—ମନ୍ଦିରମାନଙ୍କରେ ପ୍ରଭୁସେବକ ମଧ୍ୟରେ ମନାନ୍ତର ଘଟିଥାଏ । ଝଗଡ଼ା ଝାଟି କଳହ, ମାରପିଟ, ମାଲି ମୋକଦମା ଚାଲିଥାଏ । ଏଥିରେ ଅଜସ୍ର ଧନ ବୃଥା ବ୍ୟୟ ହୁଏ ଏବଂ ସୁଖ ଶାନ୍ତି ନଷ୍ଟ ହୋଇ ଯାଏ ।

ଦଶମଃ—ପୂଜାରୀ ସେବକ ମାନେ ବ୍ୟଭିଚାର ପରାୟଣ । ଏମାନେ ଆଜୀବନ ପବିତ୍ର ଦାମ୍ପତ୍ୟ ପ୍ରେମ ଓ ସୁଖରୁ ବଞ୍ଚିତ ରହନ୍ତି । ଏ ଦେଶରେ ଏମାନଙ୍କୁ " ଦାର ଦେଉଳିଆ " କହନ୍ତି ।

ଏକାଦଶଃ—ମୂର୍ତ୍ତିଗୁଡ଼ିକର ଭୋଗରାଗ ନିମନ୍ତେ ପୂଜାରି ଜିମା ଯେଉଁ ଧନ ଦିଆଯାଏ, ତହିଁରେ ସେମାନେ ଦାଶ, ଚୌର, ଅଗମ୍ୟ ଗମନ ଅଭକ୍ଷ ଭକ୍ଷଣ ଇତ୍ୟାଦି ବ୍ୟଭିଚାର, ଦୁର୍ବ୍ୟସନ ଓ ଦୌରାତ୍ମ୍ୟ କରନ୍ତି । ଏହା ଦେଖିଶୁଣି ଦାତା ବା କର୍ମକର୍ତ୍ତା ମନରେ ବହୁ କଷ୍ଟ ହୁଏ ।

ଦ୍ୱାଦଶଃ—ଦାତା ବା କର୍ମ କର୍ତ୍ତାର ବଂଶଧରମାନେ ମୂର୍ତ୍ତି ନାମରେ ଖଞ୍ଜା ହୋଇଥିବା ଅନ୍ନ ବ୍ୟଞ୍ଜନାଦି ସାମଗ୍ରୀ ସାଧୁ, ପଣ୍ଡିତ, ଅତିଥି, ଅଭ୍ୟାଗତ କାହାକୁ ନ ଦେଇ ଆପଣା ମଧ୍ୟରେ ବାଣ୍ଟି କୁଣ୍ଟି ଖାଇ ଯାଆନ୍ତି, ପୁଣି ସେଥିପାଇଁ ବରାଡ଼ କୁକୁର ପରି ଆପଣା ମଧ୍ୟରେ କଳିକଜିଆ କରି ପରି ଶେଷରେ ମାଲି ମକଦମାରେ ସର୍ବସ୍ୱାନ୍ତ ହୁଅନ୍ତି । ଏହିପରି ମନ୍ଦିର ନିର୍ମାଣ ଓ ମୂର୍ତ୍ତିସ୍ଥାପକର ଉଦ୍ଦେଶ୍ୟ ନଷ୍ଟ ହୋଇଥାଏ ।

ତ୍ରୟୋଦଶଃ—ଜଳବାୟୁର ଦୁର୍ଗନ୍ଧ ନିବାରଣ ପୁଣି ପ୍ରାଣିମାନଙ୍କର ସ୍ୱାସ୍ଥ୍ୟ ସାଧନ ନିମନ୍ତେ ପରମେଶ୍ୱର ପୁଷ୍ପାଦି ସୁବାସ ଯୁକ୍ତ ଦ୍ରବ୍ୟ ସୃଷ୍ଟି କରିଅଛନ୍ତି । ଫୁଲ ଗୁଡ଼ିକ ଗଛରେ ରହି ବହୁକାଳ ପର୍ଯ୍ୟନ୍ତ ଅର୍ଥାତ୍ ଶୁଖି ପାଚି ଝଡ଼ି ପଡ଼ିଗଲା ପର୍ଯ୍ୟନ୍ତ ଆକାଶ ମଣ୍ଡଳରେ ସୁଗନ୍ଧ ପ୍ରସାର କରି ଜଳବାୟୁକୁ ନିର୍ମଳ ଏବଂ ସୁଗନ୍ଧ ଯୁକ୍ତ କରନ୍ତି; କିନ୍ତୁ ପୂଜାରିମାନେ ସେହି ପୁଷ୍ପଗୁଡ଼ିକୁ ଅପରିପକ୍ୱ ଅବସ୍ଥାରେ ତୋଳି ଦେଇ ଭ୍ରଷ୍ଟ ନଷ୍ଟ କରି ପକାନ୍ତି । ପୁଷ୍ପଗୁଡ଼ିକ ଅନ୍ୟାନ୍ୟ ପଦାର୍ଥ ସଂଯୋଗରେ ପଚି ସଢ଼ି ସୁଗନ୍ଧ ପରିବର୍ତ୍ତେ ଦୁର୍ଗନ୍ଧି ବିସ୍ତାର କରେ ।

ଚତୁର୍ଦ୍ଦଶଃ—କାଷ୍ଠ ପାଷାଣାଦି ମୂର୍ତ୍ତି ଉପରେ ଚଢ଼ାଇବା ପୁଷ୍ପ, ଚନ୍ଦନ ଅକ୍ଷତାଦି ପଦାର୍ଥ ସବୁ ଜଳ ଓ ମୃତ୍ତିକାରେ ମିଶି ପାଣିନାଳ ବା କୁଣ୍ଡରେ ପଡ଼ି ସଢ଼ିଯାଏ, ପୁଣି ଅନେକ କ୍ଷୁଦ୍ରଜୀବ ଓ କୀଟାଣୁ ଉକ୍ତ ଜଳ କୁଣ୍ଡରେ ପଡ଼ି ମରନ୍ତି ଏବଂ ଦୁର୍ଗନ୍ଧିକୁ ଦ୍ୱିଗୁଣିତ କରନ୍ତି । ପୂଜାରିମାନେ ସେହି ଦୂଷିତ ଜଳକୁ " ପାଦୋଦକ " ନାମରେ ଲୋକମାନଙ୍କୁ ଦିଅନ୍ତି । ଲୋକେ ସେହି ଦୂଷିତଜଳ ଗ୍ରହଣ କରି ବିବିଧ ସଂକ୍ରାମକ ରୋଗରେ ଆକ୍ରାନ୍ତ ହୁଅନ୍ତି ।

ପଞ୍ଚଦଶ: —ସାକାର ମୂର୍ତ୍ତିରେ କଦାପି ମନ ସ୍ଥିର ଏବଂ ଚିତ୍ତ ଏକାଗ୍ର ହୋଇ ପାରେ ନାହିଁ, ଯେହେତୁ ମନ କୌଣସି ସାକାର ବସ୍ତୁକୁ ପୂର୍ଣ୍ଣାବୟବ ଗ୍ରହଣ କରି ଅନ୍ୟ ବସ୍ତୁପ୍ରତି ପ୍ରଧାବିତ ହୁଏ । ଯଦି ସାକାର ବସ୍ତୁ ଧ୍ୟାନରେ ମନର ସ୍ଥୈରତା ଏବଂ ଚିତ୍ତର ଏକାଗ୍ରତା ହୋଇ ପାରୁଥାନ୍ତା, ତେବେ ଜଗତରେ ସମସ୍ତଙ୍କର ମନ ସର୍ବଦା ସ୍ଥିର ହୋଇ ରହନ୍ତା, ଯେହେତୁ ସେମାନଙ୍କର ମନ ସର୍ବଦା ଅନ୍ୟ ମନୁଷ୍ୟ, ସ୍ତ୍ରୀ, ପୁତ୍ର, ମିତ୍ର ଧନ ଇତ୍ୟାଦି ସାକାର ବସ୍ତୁଭାବନାରେ ନିମଗ୍ନ ରହେ କିନ୍ତୁ ଦେଖାଯାଉ ଅଛି ଯେ ସାନ୍ତ ବିଷୟାସକ୍ତ ମନ କଦାପି ସ୍ଥିର ହୋଇ ରହିପାରୁ ନାହିଁ ।

ଷୋଡଶ: —ଜଡ଼ ଉପାସକର ଆତ୍ମା ମଧ୍ୟ ଜଡ଼ବୁଦ୍ଧି ହୋଇଯାଏ । ଯେହେତୁ ଉପାସ୍ୟ ବସ୍ତୁର ଜଡ଼ତ୍ୱ ଉପାସକର ଅନ୍ତଃକରଣ ଦ୍ୱାରା କ୍ରମଶଃ ତାହାର ଆତ୍ମାରେ ପ୍ରବେଶ କରେ ।

ଏହିପରି ଏହି ଷୋଡଶ ଅପରାଧର ପରିଣାମ ଫଳରେ ଚେତନଆତ୍ମା ଜଡ଼ବସ୍ତୁରେ ପରିଣତ ହୁଏ ।



## ଆମିଷଭୋଜନ ।

ମତ୍ସ୍ୟମାଂସ ଖାଇଲେ ସଦ୍ୟ ବଳ ହୁଏ ସତ୍ୟ କିନ୍ତୁ ଏହାର ପରିଣାମ ଅତିଶୟ ବିଷମ ଦୌର୍ବଲ୍ୟ, ଦୁରାରୋଗ୍ୟ ବ୍ୟାଧି ଏବଂ ଅଗ୍ନିମାନ୍ଦ୍ୟ । ଋଣକରି ଘିଅ ଖାଇବା ନ୍ୟାୟ । ଲୋକେ ଧନ ଋଣକରି ଆଣି ବିବାହ ବ୍ରତ ଇତ୍ୟାଦିରେ ଭୋଜି କରନ୍ତି । ଏହି ଧନରେ ଚର୍ବ୍ୟଚୋଷ୍ୟ ଲେହ୍ୟ ପେୟ ଇତ୍ୟାଦି ବହୁତ ଦ୍ରବ୍ୟ କିଣାଯାଇ ପାରେ । ନାଚତମାସା ଯାତ୍ରା ପଟୁଆର ଇତ୍ୟାଦି ବହୁତ ବାହ୍ୟାଡ଼ମ୍ବର କରାଯାଏ । କିନ୍ତୁ ଏହାର ପରିଣାମ ଫଳରେ ଋଣ ବୃଦ୍ଧିହୁଏ । ଯଥା ସମୟରେ ପରିଶୋଧ କରାଯାଇ ପାରେ ନାହିଁ । ପରି ଶେଷରେ ଘରଦ୍ୱାର ଜମିବାଡ଼ି ବନ୍ଧକ ହୋଇ ଋଣ ସୁଝାହୁଏ ଏବଂ ଆଜୀବନ ଦାରିଦ୍ର୍ୟ ଦୁଃଖକ୍ଲେଶ ଭୋଗ କରିବାକୁ ହୁଏ । ସେହିପରି ମାଛମାଂସ ଖାଇବାଦ୍ୱାରା ସଦ୍ୟ କିଛି ବଳଜାତ ହେଲେ ମଧ୍ୟ ପରିଣାମରେ ସ୍ୱାସ୍ଥ୍ୟ ନଷ୍ଟହୁଏ । ଶରୀରରେ ନାନାବିଧ ରୋଗ ଜନ୍ମେ ଏବଂ ମନରେ ରାଗ ଦ୍ୱେଷ ହିଂସା ଅଶାନ୍ତି ଇତ୍ୟାଦି ଜାତହୁଏ । ଏହି ରୋଗ ପୁତ୍ରପୌତ୍ରାଦି କ୍ରମେ ଭାବୀବଂଶଧର ମାନଙ୍କୁ ଆକ୍ରମଣକରେ । କେହି କେହି ଆମିଷ ଭୋଜୀମାନେ ସବଳକାୟ ଏବଂ ଦୀର୍ଘାୟୁ ହେଲେ ମଧ୍ୟ ଜନ୍ମଜନ୍ମାନ୍ତରେ ବଂଶଧରମାନେ ଏହି ଆମିଷର ମନ୍ଦଫଳ ଭୋଗ କରନ୍ତି । ମତ୍ସ୍ୟ ମାଂସ କେବେ-ହେଁ ମାନବ ଜାତିର ସ୍ୱାଭାବିକ ଆହାର ହୋଇ ନଥିଲା ଏବଂ ହେବନାହିଁ । ମାନବ ଜାତି ଲକ୍ଷ ଭ୍ରଷ୍ଟ ହୋଇ ସ୍ୱଧର୍ମ୍ମ ପରିତ୍ୟାଗ କରି ପାଶବ ଧର୍ମ୍ମ ଅବଲମ୍ବନ କରିବାକୁ ଲାଗିଲା । ଯେତେବେଳେ ଜୀବନର ମୂଳ ଉଦ୍ଦେଶ୍ୟହେଲା ଭୋଜନ ସେତେବେଳେ ଜୀବହତ୍ୟା ପୂର୍ବକ ମତ୍ସ୍ୟମାଂସାଦି ଅଭକ୍ଷ ମଧ୍ୟ ଆହାରରେ ପରିଣତ ହେଲା । ଏହି ପାଶବ ଆହାର ହେତୁ

ମାନବ ମନରୁ ଦୟାଭାବ ଜନ୍ତୁପ୍ରତି କ୍ରମଶଃ ଲୁପ୍ତୀଭୂତ ହୋଇଅଛି । ଅବଶ୍ୟ ଦୁର୍ଦ୍ଦମ ମାନବ ପଥଭ୍ରଷ୍ଟ ହୋଇ ମାର୍ଜ୍ଜାର ଶୃଗାଳ ଭଲ୍ଲୁକ ବ୍ୟାଘ୍ରାଦି ହିଂସ୍ରଜନ୍ତୁର ଆଚରଣ କରେ । ଏହି କ୍ରମରେ ମାନବଜାତିର ଅଧୋଗତି ହେଲେ ଯେବେ ମନୁଷ୍ୟମାନେ ସାକ୍ଷାତ ପଶୁଯୋନିରେ ଜନ୍ମଗ୍ରହଣ କରିବା ବିଚିତ୍ର ନୁହେଁ ବରଂ କ୍ରମବିକାଶ ନିୟମାନୁସାରେ ଏହି ପରିଣତି ଅବଶ୍ୟମ୍ଭାବୀ ।



# ଧର୍ମର ପରିଚୟ ।

ଧର୍ମଟା କାହାର ପୈତୃକ ସମ୍ପତ୍ତି ନୁହେ, ତହିଁରେ କାହାର ଉଆରସି ଦାବିନାହିଁ । ଯେ ଯେଉଁ ପରି ବୁଝିଲା ଯେ ଯେତେଦୂର ପାଳନ କଲା, ତାହାର ସେତିକି ଧର୍ମ ହେଲା । ଧର୍ମଟା ବାହ୍ୟ ଦୃଶ୍ୟ ନୁହେ । ଏହା ଅଟେ ଅନ୍ତର୍ଗତ ବ୍ୟାପାର । କୌଣସି ଲୋକ ନିଜେ ଧାର୍ମିକ ନହେଲେ ଅନ୍ୟ ଲୋକର ଧର୍ମ ବୁଝିପାରେ ନାହିଁ । ଲୋକେ ଧର୍ମ ପାଳନ କରୁ ନାହାନ୍ତି, ମରହଟ୍ଟି ଲୋକେ ତିଳକ ଛାପା ମାଳଝୁଲି ଇତ୍ୟାଦି ବାହ୍ୟାଡ଼ମ୍ବର ଯୋଗ ଧର୍ମର ବେଶ ଧାରଣ କରନ୍ତି; ଇଂରାଜୀ ଶିକ୍ଷିତ ଲୋକେ ତାହା ପଇତରେ ଅଷ୍ଟଃନଗ୍ନ-ଯୋଡା କୁଡ଼ୁଚା ପିନ୍ଧି ଧର୍ମ ଛାଡ଼ିସାରିଲେଣି; ଇତ୍ୟାଦି ଆକ୍ଷେପ କରାଯାଇ ପାରେ । ମାତ୍ର ବୁଝି-ବାକୁ ହେବ ଯେ ଧର୍ମ ନ ଥିଲେ ସଂସାର ଚଳନ୍ତା ନାହିଁ । ସମସ୍ତେ ଧାର୍ମିକ ନୁହନ୍ତି ସତ୍ୟ କିନ୍ତୁ ଛାପା ତିଳକ ବାଲାଙ୍କ ମଧ୍ୟରେ ସୁଦ୍ଧା ଅନେକ ଧାର୍ମିକଲୋକ ଅଛନ୍ତି ଏବଂ ଇଂରେଜୀ ଶିକ୍ଷିତ ଲୋକଙ୍କ ମଧ୍ୟରେ ମଧ୍ୟ ଅନେକ ଧାର୍ମିକ ଅଛନ୍ତି । ମୁଁ ଯଦି ଆମର ପୁରୋହିତଙ୍କୁ ଦେଖେଁ ଯେ ସେ କେବଳ ମଠା ଗାମୁଛା; ଛାପା ତିଳକ ଇତ୍ୟାଦି ମୂଳ କରି ଥାନ୍ତି, ଛୁଆଁଛି ହୋଇ ଯିବେ ବୋଲି ଖଟଗା ତେଇଁ ତେଇଁ ଚାଲୁଥାନ୍ତି ପୁଣି କଥା କଥାକେ ଧର୍ମ ଦୋହାଇ ଦେଉଥାନ୍ତି; କିନ୍ତୁ କାର୍ଯ୍ୟ ବେଳକୁ ଜଣାନ୍ତି ପାଷଣ୍ଡ ଓ ଦୁରାତ୍ମା, ହାତଥାଏ ଝୁଲିରେ ମନଥାଏ ଧନରେ, କଥାରେ ଅହିଂସା ବାଦ, କର୍ମରେ ପଶୁବଧ, ତୁଣ୍ଡରେ ଅହିଂସା ବୋଲି, ପ୍ରେମରେ ମାଛର ଝୋଳ, ତେବେ କଣ ମୁଁ କହିପାରେଁ ଯେ ସବୁ ପୁରୋହିତ ବ୍ରାହ୍ମଣ ଗୁଡାକ ଦୁରାତ୍ମା ପାଷଣ୍ଡ ? ଏହା କଦାପି ବୋଲା ଯାଇ ନ ପାରେ । ଅନେକ ପୁରୋହିତ ପ୍ରକୃତ ହିତକାରୀ, ଅନେକ ବ୍ରାହ୍ମଣ ପ୍ରକୃତ ବ୍ରହ୍ମଜ୍ଞାନୀ । ମୁଁ ଜଣେ ବି.ଏ ଉପାଧିଧାରୀ ଏବଂ ସରକାରୀ କର୍ମଚାରୀ ମୁଁ କେବେହେଁ ପ୍ରାତଃସ୍ନାନ କରେ ନାହିଁ ପ୍ରାଣାୟାମ କରେନାହିଁ, ଗାୟତ୍ରୀ ଜପେନାହିଁ, ମଠା ପିନ୍ଧେନାହିଁ ଜବା ଚିତାକାଟେ ନାହିଁ, ଅଗ୍ନିହୋତ୍ର, ବୈଶ୍ୱଦେବ, ଅତିଥିସେବା ତେଣେ ଥାଉ ସର୍ବଦା ଏକାନ୍ତ ସ୍ୱାର୍ଥଲିପ୍ସୁ ଏବଂ ପଦୋନ୍ନତି ପ୍ରୟାସୀ ହେଲେହେଁ

ସ୍ୱାର୍ଥରେ ବାଧ୍ୟ, ଅଶଙ୍କାରେ ହକକଥା କହିବାକୁ ଶଙ୍କାକରେ, ସର୍ବଦା ଧନ ସଂଗ୍ରହରେ ବ୍ୟାପୃତଥାଏଁ; କିନ୍ତୁ ସତ୍ କାର୍ଯ୍ୟରେ ବ୍ୟୟକରିବାକୁ ନିତାନ୍ତ କୁଣ୍ଠିତହୁଅନ୍ତି; ତେବେ ମୁଁ ଜଣେ ଭିଖପାଉଁ ଯେ ସବୁ ଇଂରାଜୀ ପଢ଼ା ଲୋକେ ଆଗ୍ରହ, ବିଗ୍ରହ, ଧର୍ମସବୁ ଛାଡ଼ି ମୋପରି ସର୍କାଣ୍ଟିମନା, ସ୍ୱାର୍ଥପର ପୁଣି ଅଧାର୍ମିକ ବା ପୁରୁଷ ? ଆମ୍ଭେମାନେ ଦେଖୁଛୁ ଶୁଣୁଛୁ ଯେ ଆମର କୌଣସି ରାଜା ବାରମାସରେ ତେର ବ୍ରତ ବିଧାନ କରନ୍ତି, ନିତ୍ୟ ଦେବାର୍ଚ୍ଚନାଦି ମାଜଣା ହୁଅନ୍ତି, ମଠ ବାଡ଼ରେ ବିବିଧ ଭୋଗ ରାଗ ହୁଏ, ସନ୍ଧ୍ୟା ପୁରାଣ ଶୁଣାହୁଏ, ନ୍ୟାୟ ହିସାବ ବୁଝାହୁଏ, ରାଜା ମହାରାଜା ବୋଲି ଅଖ୍ୟାତ ହୁଅନ୍ତି, ଲକ୍ଷ ଲକ୍ଷ ପ୍ରଜାଙ୍କ ଉପରେ ଆଧିପତ୍ୟ କରନ୍ତି । କିନ୍ତୁ ତେଣେ ଅସଂଖ୍ୟ ପଶୁବଧରେ ବିନୋଦ ଲାଗିଥାଏ, କେଲେନାର ହୋଟେଲରେ ସାହେବ ପଠାଣଙ୍କ ସଙ୍ଗରେ ଗୋମାଂସ ପର୍ଯ୍ୟନ୍ତ ଭକ୍ଷଣ କରନ୍ତି, ସନ୍ତ ମହନ୍ତ ମାନଂକୁ ଘଉଡ଼ ଦେବୋତ୍ତର ସମ୍ପତ୍ତି ଆତ୍ମସାତ୍ କରନ୍ତି ପୁରାଣ ବେଳେ ପରଧନାପହରଣ ମନ୍ତ୍ରଣା ଲାଗିଥାଏ, କେବେହେଁ ଏକ ପକ୍ଷପାତୀ ନ ହନ୍ତି; ଉଭୟ ପକ୍ଷରୁ ଭାଜଭାଗ ଆଦାୟ କରି ବିରାଡ଼ ମଧ୍ୟରେ ମାଙ୍କଡ଼ ପରି ନ୍ୟାୟ କରି ଦିଅନ୍ତି, କାହାକୁ ଦ୍ୱାର ମନାହୁଏ, ତାହା ନାମରେ ବଣ ହଣା ହେଇ ଫୌଜଦାରୀ ହଗୁର ହୁଏ, ବ୍ୟଭିଚାରରେ ସଦାଚାର ଆରୋପିତ ହୁଏ, ନିର୍ଦ୍ଦୋଷିକୁ ଦୋଷୀ କରାଯାଏ, ଇତ୍ୟାଦି ବୁଝାମଣା କରି ପ୍ରଜାଙ୍କ ଠାରୁ ଅର୍ଥ ଶୋଷଣ କରାଯାଏ । ଏହି ଧନରେ ବିବିଧ ଭୋଗ ବିଳାସର ଆୟୋଜନ କରାଯାଏ । ଉପାଧି ଅର୍ଥୀ, ଚକ୍ଷୁଲଜ୍ଜା କିବା ଲୋକାପବାଦ ଭୟରୁ ବିଦ୍ୟା ଶିକ୍ଷାରେ ଯେତିକି ବ୍ୟୟହୁଏ, ବେଶ୍ୟାଭୋଗରେ ତତୋଧିକ ଅପବ୍ୟୟ ହୁଏ ଏବଂ ନିରୀହ ଗରିବ ପ୍ରଜା ପୀଡ଼ନରେ ତତୋଧିକ ଖରଚ ହୁଏ । ତେବେ କଣ ବୁଝିବା ଯେ ସବୁ ଜମିଦାର ରାଜାମାନେ ସ୍ୱେଚ୍ଛାଚାର ଛପମାନେ ଅଭ୍ୟାଗତ ବିଳାସାଭିଳାଷୀ ପ୍ରଜାକଣ୍ଟକ ଅଧାର୍ମିକ ? ପୁଣି ଦେଖନ୍ତୁ; ଯଦିତ ଆମର କୌଣସି ସମ୍ପାଦକ କିଛି ସାଧାରଣ ସମ୍ପତ୍ତି ଆତ୍ମସାତ୍ କଲେ, ବାର୍ଷିକ ଗ୍ରାହକ ଆଗଭୁରା ଆଦାୟ କରି ଯଥାରୀତି ସମ୍ବାଦପତ୍ର ପ୍ରେରଣ କଲେ ନାହିଁ, ଅମୁକ ସାହୁକାର କିଛି ବାର୍ଷିକ ଅଂଶଦେଲେ ବୋଲି ତାହାଙ୍କର ପ୍ରଶଂସା ଲେଖିଲେ ବା ଦୋଷସବୁ ପେଟରେ ପୂରାଇ ନେଲେ, ଅମୁକ ରାଜା ବାର୍ଷିକ ୫୫୦ ଟ ଦେଲେ ଯେ ତାହାଙ୍କର ଅଭ୍ୟାଗତ ସବୁ ଅପ୍ରକାଶିତ ରହିଲା, ଅମୁକ ରାଜା କିଛି ଦେଲେ ନାହିଁ କିବା କିଛି ନେଇ ଗଲେ ଏଥିପାଇଁ ତାହାଙ୍କର ଦୁର୍ନାମ ରଟନା କରାଗଲା, ଯଦି ପଇସା ପତ୍ର ଓ ସମ୍ପାଦକୀୟ ପ୍ରବନ୍ଧାଦି ସାହାଯ୍ୟ ଓ ସହାନୁଭୂତି ମିଳିଲା ତେବେ ବିବିଧ ବ୍ୟଭିଚାର ଓ କଦର୍ଯ୍ୟ କୁସଂସ୍କାରର ପୋଷକତା କରାଗଲା ପୁଣି ଯଦିତ ଆମ ରକ୍ଷା ବା ଆତ୍ମପ୍ରତିଷ୍ଠାରେ ବ୍ୟାଘାତର ଆଶଙ୍କା ଜନ୍ମିଲା ତେବେ ଜାତୀୟକାର୍ଯ୍ୟ ଉପେକ୍ଷିତ ହେଲା ଏବଂ ବ୍ୟକ୍ତିଗତ ଅଯଥା ଆକ୍ରମଣ ଆଦୃତ ହେଲା ତେବେ କଣ ଏଥିରୁ ପ୍ରତିପନ୍ନ ହୋଇ ପାରେ ଯେ ଅନ୍ୟ ସମସ୍ତ ସଂପାଦକମାନେ ଏହିପରି ଚରିତ୍ରହୀନ, ଲକ୍ଷଭ୍ରଷ୍ଟ ସ୍ୱାର୍ଥପର ଜାତିଦ୍ରୋହୀ ? ନା ତାହା କଦାପି ନୁହେଁ ।

ସଂସ୍କୃତ ପଢା ହୁଅନ୍ତୁ, ନିରକ୍ଷର ମୂର୍ଖ ହୁଅନ୍ତୁ ବା ଇଂରାଜ ଶିକ୍ଷିତ ହୁଅନ୍ତୁ, ରାଜ୍ୟାଧିଶର ହୁଅନ୍ତୁ, ବା ଦାରିଦ୍ରକାର ହୁଅନ୍ତୁ, ଗଣ୍ୟମାନ୍ୟ ସମ୍ପାଦକ ହୁଅନ୍ତୁ କମ୍ବା ନଗଣ୍ୟ ଗ୍ରାମ୍ୟ ସମ୍ପାଦଦାତା ହୁଅନ୍ତୁ, ଏହି ଜଗତରେ ନିର୍ଲୋଭ, ନିର୍ଭୀକ, ସଚ୍ଚରିତ୍ର, ସ୍ୱାର୍ଥତ୍ୟାଗ ଲୋକ-ହିତୈଷୀ ଲୋକମାନେ ଅଛନ୍ତି, ଯେଉଁମାନେ କି ଯେଉଁ ଅବସ୍ଥାରେ ଥାନ୍ତୁ ପଛକେ ସର୍ବଦା ଧର୍ମାଚରଣ କରନ୍ତି । ନିଷ୍ପକ୍ଷପାତୀ ହୋଇ ଟିକିଏ ଗଭୀର ଗବେଷଣା କରି ବୁଝିଲେ ଦେଖିପାରିବ ଯେ ବାଉରି ସାହିରେ ଅନେକ ବ୍ରାହ୍ମଣ ଅଛନ୍ତି, ବ୍ରାହ୍ମଣ ଶାସନରେ ଅନେକ ବାଉରି ଅଛନ୍ତି, ମେହେନ୍ତର ମଧ୍ୟରେ ବଶିଷ୍ଠ ଅଛନ୍ତି, ସାମାନ୍ୟ ପାଦାତିକ ମଧ୍ୟରେ ରାଜ୍ୟାଧିପତି ଅଛନ୍ତି, ଏବଂ ନିରକ୍ଷର ଲୋକଙ୍କ ମଧ୍ୟରେ ସୁପଣ୍ଡିତ ଅଛନ୍ତି । ନିଜର ଗୁଣ, ସ୍ୱଭାବ, କର୍ମ ଓ ଧର୍ମ ଅନୁସାରେ ଲୋକେ ପାପାତ୍ମା ବା ଧାର୍ମିକ ହୁଅନ୍ତି ।



## ତିଳକ ମହାତ୍ମ୍ୟ

କୌଣସି ବୃଦ୍ଧ ଏବଂ ରୋଗୀଲୋକ ବାଟ ଚାଲି ଆସୁ ଆସୁ ଅତ୍ୟନ୍ତ କ୍ଳାନ୍ତ ହୋଇପଡି ଏକ ବରଗଛ ମୂଳେ ଶୋଇପଡିଲା । ସେଠାରୁ ଆଉ ଉଠି ନପାରି ସେହି ଅବସ୍ଥାରେ ତାହାର ସେହିଠାରେ କାଳ ହୋଇଗଲା । ଗଛମୂଳେ ମୃତଦେହ ପଡ଼ିଛି । ଏହି ସମୟରେ ଗଛ ଉପରେ ଏକ ବଗ ବସିଥିଲା । ବଗ ଛେରିଦେଲାରୁ ଶବର ଶିର ଉପରେ ବଗ ବିଷ୍ଠା ପଡି ତାହା ରାମାନନ୍ଦ ତିଳକ ପରି ଦେଖାଗଲା । ମରିଯିବା ଲୋକକୁ ନେବାପାଇଁ ଯମଦୂତ ଏବଂ ବିଷ୍ଣୁଦୂତ ଉଭୟେ ଆସିଲେ । ଏହିମାନଙ୍କ ମଧ୍ୟରେ କଳହ ହେଲା । ଯମ ଦୂତମାନେ କହିଲେ ଯେ, ସେମାନେ ତାହାକୁ ଯମ ଲୋକକୁ ନେଇଯିବେ ଏବଂ ବିଷ୍ଣୁ ଦୂତମାନେ ତାହାକୁ ବିଷ୍ଣୁ ଲୋକକୁ ନେବାକୁ ବସିଲେ । ବିଷ୍ଣୁ ଲୋକକୁ ନେବାନିମନ୍ତେ ଗୁରୁତର କାରଣ ଏହିଯେ ମୃତବ୍ୟକ୍ତି ଆପଣା କପାଳରେ ବିଷ୍ଣୁ ପଦ ସ୍ୱରୂପକୁ ତିଳକ ଧାରଣ କରିଅଛି । ସେତେ-ବେଳେ ଯମଦୂତମାନେ ଶବକୁଛାଡି ପଳାଇଲେ । ବିଷ୍ଣୁ ଲୋକମାନେ ତାହାକୁ ବୈକୁଣ୍ଠକୁ ନେଇ ଗଲେ । ପାଠକେ ଦେଖିଲ ତିଳକର ମହାତ୍ମ୍ୟ । ଲୋକ ମରିଯିବା ପରେ ତାହାର ଶବଉପରେ ବକବିଷ୍ଠା ପଡ଼ି କପାଳରେ ତିଳକାକାର ଦେଖାଗଲା ମାତ୍ରେ ସେହିଲୋକ ବୈକୁଣ୍ଠକୁ ଯାଇ ବିଷ୍ଣୁଲୋକରେ ମିଶିଯାଏ । ତେବେ ଯେଉଁମାନେ ଜ୍ଞାନପୂର୍ବକ କପାଳରେ ବିଷ୍ଣୁପଦ ତିଳକ କରନ୍ତି ସେମାନେ ସ୍ୱର୍ଗ ବୈକୁଣ୍ଠ ଇତ୍ୟାଦି ଅତିକ୍ରମ କରି ସାକ୍ଷାତ ନାରାୟଣ ସ୍ୱଦେହରେ ବିଲୀନ ହେବେ, ଏଥିରେ ସନ୍ଦେହ କଣଅଛି ? ଯେଉଁମାନେ ସୁନ୍ଦର ସୁନ୍ଦର ନାନାରଙ୍ଗରେ ବିଚିତ୍ରିତ ତିଳକ ଲାଗି ହେବାରେ ପଦର ସଂଖ୍ୟା ବୃଦ୍ଧିକରନ୍ତି ସେମାନେ

ଅବାକେଉଁ ଯାମକୁଯିବେ ଏବଂ ବ ମୁକ୍ତିଲାଭ କରିବେ ତାହା ଆମ୍ଭମାନଙ୍କର ବୁଝିପାରିବା ସମ୍ଭବ ନୁହେ । କାଳକ୍ରମେ ଏହି ମୂଲ୍ୟହୀନ ତିଳକ ଲୁପ୍ତହୋଇ ଯାଉଥିବା ଦେଖି ସନାତନ ଧର୍ମଧ୍ୱଜାଧାରିମାନେ ଅତି ସରଗଣଭକ୍ତି ଅବଲମ୍ବନ କରି କପାଳରେ ତିଳକ ବେଶ ଧାରଣ କରନ୍ତି ।

## ବିସୂଚିକା ସେବା

ଆଜ ଠାକୁରାଣୀ ଠାରେ ମୁଅଁ ପଣା ଦିଆଯାଉ ଅଛି, ବବଧ ବାଜା ବାଜୁଛି, କେତେକ ଲୋକ ଲାଲ କଳା ରଙ୍ଗରେ ରଞ୍ଜିତ ଲୁଗା ପିନ୍ଧି ହାତେ ଦୁଇହାତ ଦେଡହାତ ଲମ୍ବରେ ଗୋଟିଏଲେଖେ ମୁଆଁ ମୁଣ୍ଡରେ ଧରି ବାଜା ପଛେ ପଛେ ଚାଲିଥାନ୍ତି । ମୁଆଁ ଉପରେ ସୁନ୍ଦର କନିଅର ଫୁଲମାଳ ପାଟକାଛ ଦିଆଯାଇ ଥାଏ, ଏମାନଙ୍କ ପଛେ ପଛେ ଶତ ସଂଖ୍ୟକ ଲୋକ ମୁଆଁ ଟିଏ ପଣା ବା ପାଣିଭାଲୁଟେ ଲେଖେ ଧରି ଚାଲିଥାନ୍ତି, ଏମାନେ ସବୁ ଯିବେ କେଉଁଠାକୁ ? ଗାଁମୁଣ୍ଡେ ବା ଗ୍ରାମପ୍ରାନ୍ତରେ କୌଣସି ଠାକୁରାଣୀ ମନ୍ଦିରକୁ ଯିବେ । ସେହି ଗ୍ରାମ ଦେବତୀ ଖୁଆଡରେ ଏହି ମୁଁଆକୁ ରଖିଦେଇ ସେହି ସ୍ଥାନରେ ପଣାପାଣି ଢାଳି ଦେଇ ଫେରିଆସିବେ । ସେହି ଗ୍ରାମ ଦେବତୀ ବା ଠାକୁରାଣୀ ଏହିମୁଆଁ ପଣା ପାଣି ଖାଇ ସନ୍ତୁଷ୍ଟ ହୋଇ ଫେରିଯିବେ, ତାନହେଲେ ଗ୍ରାମର ପିଲା ପିଲି ଝିଆ ବୁଢ଼ାବୁଢ଼ି ଅନେକ ଲୋକଙ୍କୁ ଖାଇଦେଇ ଚାଲିଯିବେ । ଏହି ଧାରଣାର ବଶୀଭୂତ ହୋଇ ଅନେକପ୍ରାଣୀ ଏହି ପଣା ପାଣି ପ୍ରଥାପାଳଣା କରନ୍ତି ।

ମନେକର, ଏପରି କୌଣସି ଠାକୁରାଣୀ ବା ପିଶାଚନୀ ଅଛ ଯେଉଁ ମନୁଷ୍ୟର ରକ୍ତ ମାଂସରେ ଉଦର ପୂର୍ଣ୍ଣ କରେ, ସେକି ମୁଆଁ ପିଠା ଓ ପଣା ପାଣିରେ ତୃପ୍ତିଲାଭ କରେ, ଇଂରାଜ ଲୋକ ଯେତେବେଳେ ଭାରତୀୟ ଲୋକର ଭାତ ଡାଲିରେ ତୃପ୍ତ ହୁଏନାହିଁ, ନରମାଂସ ଭୋଜ ଠାକୁରାଣୀଙ୍କ ପଣାପାଣି ବା ମୁଅଁ ଉଖୁଡାରେ ତୃପ୍ତିଲାଭ କରିବ ? ଏକ ବାତୁଳମନା ! ଯେ ଭକ୍ଷକ ସେକି ହୁଏ ରକ୍ଷକ ? ସାପ କି ବେଙ୍ଗର କଲ୍ୟାଣ ବାଞ୍ଛାକରେ ? ଯଦି କହିବ, ଭଗବାନ ବିଷ୍ଣୁରୂପରେ ପାଳନ କରନ୍ତି ଏବଂ ରୁଦ୍ରରୂପରେ ସଂହାର କରନ୍ତି । ଅତଏବ ସେ ଗ୍ରାମ ଦେବତା ବା ଠାକୁରାଣୀ ରୂପରେ ଆସି ମନୁଷ୍ୟମାନଙ୍କୁ ସଂହାର କରନ୍ତି ତେବେ ସେ ତାହାଙ୍କର ସୃଷ୍ଟି ପାଳନ ଓ ବିନାଶର ନିୟମାନୁସାରେ ତାହା କରନ୍ତି । ସେ କଦାପି ମୁଅଁ ପଣା ଇତ୍ୟାଦି ପାଉଣା ବା ପ୍ରଲୋଭନରେ ଆପଣାର ପ୍ରତିଷ୍ଠିତ ନିୟମ ଲଙ୍ଘନ କରିବେ ନାହିଁ । ପଣାପାଣି ପାଇଲେ ଯେ ଈଶ୍ୱର ବା ତାହାଙ୍କର ନିଯୋଜିତ ଠାକୁରାଣୀ ସନ୍ତୁଷ୍ଟ ହେବେ ପୁଣି ମନୁଷ୍ୟ ମାନଙ୍କ ଠାକୁ ଆଉ ରୋଗ ପଠାଇବେ ନାହିଁ ଏହା କି ବୋଲା ଯାଇ ପାରେ ?

ଯଦି କହୁଛ ଈଶ୍ୱର ରୋଗ ଉତ୍ପନ୍ନ କରୁଛନ୍ତି ତେବେ ସେ ତାହାଁର ଔଷଧ ଦେଇ ଅଛନ୍ତି, ଜଳବାୟୁ ଦୂଷିତ ହେଲେ ତାହାଁରୁ ରୋଗଜାତ ହୁଏ, ହୋମଦ୍ୱାରା ଜଳବାୟୁ ପରିଶୁଦ୍ଧ ହୁଏ, ଅତଏବ ଏହିପରି ଉପସ୍ଥିତ ମହାମାରୀ ଇତ୍ୟାଦି ସଂକ୍ରାମକ ରୋଗର ଉପଶମ ନିମନ୍ତେ ସର୍ବଦା ହୋମକରା ଯିବା ଉଚିତ, ହୋମ ଧୂମରେ ବାୟୁ ମଣ୍ଡଳ ବିଶୁଦ୍ଧ ହୁଏ, ଯେହେତୁ ଉକ୍ତ ଧୂମଦ୍ୱାରା ତାହାର ଦୂଷିତାଂଶ ଦୂରୀକୃତ ହୁଏ, ପୁଣି ଜଳ ନିର୍ମଳ ହୁଏ । ପ୍ରତ୍ୟହ ହୋମ କରିବାପାଇଁ ପ୍ରତ୍ୟେକ ଆର୍ଯ୍ୟଗୃହସ୍ଥ ସକାଶେ ବୈଦିକ ବ୍ୟବସ୍ଥା ଅଛି, ପୁଣି ମହାମାରୀ ଆଦି ସଂକ୍ରାମକ ରୋଗର ପ୍ରାଦୁର୍ଭାବ ବେଳେ ବହୁପରିମାଣରେ ବିଶିଷ୍ଟଭାବରେ ହୋମକରିବା କଥାଥିଲା, ବର୍ତ୍ତମାନ ଲୋକେ ଅନାର୍ଯ୍ୟ ଅଜ୍ଞାନ ଅନ୍ଧକାରରେ ପଡି ନିତ୍ୟହୋମ ସଙ୍ଗେ ଏହି ନୈମିତ୍ତିକ ହୋମସଂରକ୍ଷା ମଧ୍ୟ ଛାଡ଼ୁଛନ୍ତି, ଠାକୁରାଣୀଙ୍କ ପଣାପାଣି ଦିଅ ଅନାର୍ଯ୍ୟ । ରୀତିର ପ୍ରଶ୍ରୟ ଦେଉଛନ୍ତି ।



## ପୁରୀ ଯାତ୍ରା ଟିପଣୀ

ଭାରତ ମହାଦେଶରେ ପୁରୀ ଅଟେ ପ୍ରସିଦ୍ଧ ପବିତ୍ର କ୍ଷେତ୍ର । ମର୍ତ୍ତ୍ୟ ଭାରତରେ ପୁରୀ ଅଟେ ସ୍ୱର୍ଗ, ଯେହେତୁ ଏହା ଜଗନ୍ନାଥଙ୍କର ରାଜଧାନୀ ପୁଣି ଏଥିରେ ସମାନ୍ୟ କଥା ଖାଦ୍ୟ ପାନକୁ ଦେଖି ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ କୁତ୍ସିତ ଜାତିଭେଦ ଧରାଯାଏ ନାହିଁ । ମାସମାନଙ୍କ ମଧ୍ୟରେ କାର୍ତ୍ତିକ ଗୋଟିଏ ପବିତ୍ର ମାସ । ଏହି ମାସରେ ବହୁତ ଓଡ଼ିଆ ଯାତ୍ରୀ ପୁରୀଯାଆନ୍ତି ।

ଦୀପାବଳୀ ଅମାବାସ୍ୟା ଉପଲକ୍ଷରେ ଆମେମାନେ ପୁରୀ ଯାତ୍ରା କଲୁଁ । ଅମାବାସ୍ୟା ସନ୍ଧ୍ୟା ସମୟରେ ବଡ଼ ଦେଉଳରେ ପ୍ରବେଶ କଲୁଁ । ସେତେବେଳେ ଜଗନ୍ନାଥଙ୍କୁ ଦେଖି ହେଲା ନାହିଁ । କେବଳ ଚତୁର୍ଦିଗରେ ଦେଖାଗଲା ଘୋରାନ୍ଧକାର ଓ ସ୍ଥାନେ ସ୍ଥାନେ କ୍ଷୀଣାଲୋକ । କେତେଦିନ ପୂର୍ବେ ଏହି ମନ୍ଦିରରେ ବିଦ୍ୟୁତ ଆଲୋକ ଦେବା କଥା ଉଠିଥିଲା, କିନ୍ତୁ ସେବକମାନଙ୍କ ଆପତ୍ତି ଯୋଗୁଁ ତାହା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । କୌଣସି ପଣ୍ଡା ସେବକମାନଙ୍କ ସହିତ ତତ୍‌ବିଷୟକ କଥା ପ୍ରସଙ୍ଗରେ ସେମାନେ କହିଥିଲେ ଯେ ଦେବ ଦେବୀ ମନ୍ଦିରମାନଙ୍କରେ କ୍ଷୀଣା ଲୋକ ରହିବା ଆବଶ୍ୟକ, ଯେହେତୁ ଦେବ ଦେବୀମାନେ ପ୍ରକାଶ୍ୟ ଭାବରେ ବିଚରଣ କରନ୍ତି ନାହିଁ । ସେମାନେ ଅଦୃଶ୍ୟ ଗୋପନୀୟ ଭାବରେ ଯାତାୟାତ କରନ୍ତି । ରାଜାମାନେ ଯେପରି ଅନ୍ତଃପୁର ଭୋଗ କରନ୍ତି, ଜଗନ୍ନାଥ ଓ ଲକ୍ଷ୍ମୀଦେବୀ ଅନ୍ତଃପୁର ଭୋଗ କରନ୍ତି ବଡ଼ସିଂହାର ପରେ ଅବଶିଷ୍ଟ ରାତିକ ସବୁ ଆଲୁଅ ବନ୍ଦ କରି

ଦେଖାଯାଏ । ଦେବ ଦେବୀମାନେ ଅଦୃଶ୍ୟ ଭାବରେ ବିହାର କରନ୍ତି । ଆଲୋକ ବା ଅନ୍ଧକାର ସେମାନଙ୍କ ପ୍ରତି କପରି ପ୍ରତିବନ୍ଧ ହୋଇପାରେ ଜଣାଯାଏ ନାହିଁ । ସେ ଯାହାହେଉ ପ୍ରକୃତ କଥା ଏହପେ, ଫଳତଃ ଦର୍ଶକମାନଙ୍କୁ ଅନେକ ଅସୁବିଧା ଏବଂ କଷ୍ଟ ଭୋଗ କରିବାକୁ ପଡେ । ପୂର୍ବେ ଲୋକମାନେ ରଥକୁ ଟାଣନ୍ତି । ପୂର୍ବରେ ବଡ ଦେଉଳ ଠାରୁ ଗୁଣ୍ଡିଚା ମଣ୍ଡପ ପର୍ଯ୍ୟନ୍ତ ରଥ ଯିବାକୁ ଆଠ ନଅ ଦିନ ଲାଗୁଥିଲା । ଏକା ଦିନକେ ରଥ ଯାଏନାହିଁ, ପୁଣି ଏକା ଦିନକେ ଟାଣିନେଲେ ଲୋକରେ ଉପଦ୍ରବ ଘଟିବ, ସେବକମାନଙ୍କର ଏହି ଧାରଣା-ଥିଲା । କିନ୍ତୁ ଆଜିସେ କୁସଂସ୍କାର ଚାଲି ଯାଇ ଅଛି । ଦୁଇ ତିନି ଘଣ୍ଟାରେ ରଥ ଚାଲି ଯାଉଅଛି । କୌଣସି ଉପଦ୍ରବ ନାହିଁ । ବରଂ ଯାତ୍ରିମାନଙ୍କର ସୁଖ ସୁବିଧା ଘଟୁଅଛି । ସେହିପରି ବଡଦେଉଳରେ ବିଦ୍ୟୁତ୍‌ଆଲୋକ ଖଞ୍ଜି ଦେଲେ ସେବକମାନଙ୍କର କୁସଂସ୍କାର ଚାଲିଯିବା ସଙ୍ଗେ ସଙ୍ଗେ ଲୋକଙ୍କର ବହୁଉପକାର ସାଧିତ ହୁଅନ୍ତା । ଆଜି ଦୀପାବଳୀ ଅମାବାସ୍ୟା ତଥାପି ଦେଉଳ ବେଢ଼ା ଭିତରେ ବେଶି ଆଲୋକ ଦେଖାଯାଏ ନାହିଁ । ସ୍ଥାନେ ସ୍ଥାନେ ଦିପଦାନର ଯେଉଁ ଯୋଗାଡ ହୋଇ ଥାଏ ତହିଁରେ ଆଲୋକ ଅପେକ୍ଷା ଅନ୍ୟାନ୍ୟ ଉପକରଣର ପରିମାଣ ବେଶି ଦେଖାଯାଏ । ଜଣେ ଦୁଇଜଣ ବ୍ରାହ୍ମଣ ବସି ଚାଉଳ, ଫଳମୂଳ, ଘିଅ ଏବଂ ଫୁଲ ହିସାବରେ ଛିଲ୍ଲାଙ୍କ ଧୂଳଘର ପରି କଣ କଣ ଗୋଟାଏ କରୁଥାନ୍ତି । ଚତୁର୍ଦ୍ଦିଗରେ ସ୍ତ୍ରୀ ପୁରୁଷ ଲୋକଙ୍କ ଗୁଡାଏ ଲୋକ ବେଢ଼ି ଥାନ୍ତି । କେହି ବ୍ରାହ୍ମଣ କେହି ସ୍ତ୍ରୀଲୋକଙ୍କୁ ଶଶୁର ନାମ ଆଜା ନାମ ଇତ୍ୟାଦି ପଚାରୁ ଥାନ୍ତି । କେହି ସ୍ତ୍ରୀ ଅନ୍ୟ ଲୋକଙ୍କୁ କହେ "ତା ବାପର ନାଁଟା କହିଦିଅ" କେହି ଭୁଲ ହୁଏ । କେହିବା କାହାର ନାମ ଜାଣି ନ ଥାଏ । ସେତେବେଳେ ବ୍ରାହ୍ମଣମାନେ ରାମ ଗୋବିନ୍ଦ ଅଚ୍ୟୁତ ଇତ୍ୟାଦି ନାମରେ ବଣ୍ଡି ଉପରେ ଫୁଲ ପଦ୍ମ ଇତ୍ୟାଦି ନିକ୍ଷେପ କରୁଥାନ୍ତି । ବୋଧହୁଏ ନାମ ନ ଧରି ଡାକିଲେ ପିତୃ ଲୋକେ ଶୁଣନ୍ତି ନାହିଁ । କବା କେହି ଲୋକର ପ୍ରାପ୍ୟ ଅନ୍ୟ ଲୋକ ନେଇ ଯାଆନ୍ତି ପଛା । ବାଇସି ପାଉଚ୍ଛ ଆଗରେ ଅଲଣା ଖମ୍ବ ଯାହାରେ ଅନେକ ଖୁଡଏ କାଉଁରିଆ ଡାଙ୍ଗ ରଖା ଥାଏ । ଏହି ଡାଙ୍ଗ ଗୋଛାକରେ ନିଆଁ ଲଗାଇ ଲୋକେ ଉପରକୁ ଆଲୁଅ ଦେଖାଇ ଦିଅନ୍ତି "ବଡବଡ଼ଆମାନେ ସ୍ୱର୍ଗ ଯାଅ ଅନ୍ଧାର ଦୃଷ୍ଟିରେ ଅନାଇ ଥାଅ" ବ୍ରାହ୍ମଣମାନଙ୍କ ପାଇଁ ସଂସ୍କୃତ ଭାଷାରେ କୁହାଯାଏ ଉଲ୍କାନଂ ଜ୍ୟୋତିଷାଂ ମାର୍ଗଂ ପଶ୍ୟନ୍ତୋ ଯାନ୍ତୁତେ ସୁଖଂ । ଏହି ସକଳ କାଣ୍ଡକାଣ୍ଡ ଦେଖି୨ ଆମ୍ଭେମାନେ ବସାକୁ ଫେରିଲୁ ।

ତହିଁ ଆରଦିନ ସକାଳୁ ପ୍ରାତଃକୃତ୍ୟ ଶେଷକରି ବଡଦେଉଳ ପରିଦର୍ଶନ କରିବାକୁ ଗଲାଇଲୁ । କୌଣସି ଲୋକର କୋଟ ପକେଟରେ ଗୋଟିଏ ଚର୍ମନିର୍ମିତ ମୁଣୀ ଥିଲା । ବଡ଼ଦେଉଳ ଦ୍ୱାରରେ ପ୍ରବେଶ କରିବା ମାତ୍ରେ କେହି୨ ବନ୍ଧୁ କହିଲେ ଯେ, ତମଡାର କୌଣସି ଜିନିଷ ନେଇ ଦେଉଳ ଭିତରେ ପ୍ରବେଶ କରି ନିଷେଧ । ଯଦିଚ ଏପରି କୌଣସି ଜିନିଷ ମନ୍ଦିର ଭିତରକୁ ଯିବା ଦେଖାଯାଏ, ତେବେ ପ୍ରଭୁଙ୍କର ସବୁ ଭୋଗ ମାରି ହୋଇଯାଏ,

ପ୍ରଭୃତି ଠାକୁରଙ୍କୁ ମହାସ୍ନାନ କରିବାକୁ ହୁଏ । ତମଧ୍ୟରୁ ଗୋଟିଏ ଅପବିତ୍ର ଅଶୁଦ୍ଧ ଜିନିଷ ହୋଇପାରେ କିନ୍ତୁ ପରିଷ୍କୃତ ପରିଶୁଦ୍ଧ ଚର୍ମନିର୍ମିତ କୌଣସି ଅବଶ୍ୟକୀୟ ଓ ଉପାଦେୟ ଜିନିଷ ପ୍ରତି ନିଷେଧକରିବା କି ଘୋର କୁସଂସ୍କାର । ଯେତେବେଳେ ମୃଦଙ୍ଗ ଯାଇପାରେ, ପ୍ରଭୃତିଙ୍କୁ ଖୋଲ ବା କୌଣସି ଚର୍ମନିର୍ମିତ ବସ୍ତୁପ୍ରତି ଏହି ନିଷେଧର କାରଣ ଜଣାଯାଏ ନାହିଁ । ବୋଧହୁଏ ମୃଦଙ୍ଗ ତିଆର ହେଲାବେଳେ ଏହି ଘୁଣୀ ବା ଖୋଲର ଉଦ୍ଭାବନ ହୋଇ ନଥିଲା ।

ଅମ୍ଭମାନଙ୍କୁ ଏଠାରେ ମହାପ୍ରସାଦ ବା ଅଟିକ ନ ତରକାରି ଖାଇବାକୁ ହେଲା । କୁଜିଯାରୁ, କନ୍ଦ, ଓଲ ଇତ୍ୟାଦି ବନ୍ୟଜାତ ଫଳମୂଳରେ ମହାପ୍ରସାଦ ତିଆରି ହୁଏ, କିନ୍ତୁ ବିଲାତିଆଳୁ ଉତ୍ତମ ଓ ସୁଖାଦ୍ୟ ପଦାର୍ଥ ହୋଇଥିଲେହେଁ ନିଷିଦ୍ଧ କୋଟି ଭୁକ୍ତ । କେହି କେହି କହନ୍ତି ଗହମ ମଧ୍ୟ ଠାକୁରଙ୍କ ଭୋଗରେ ଲାଗେ ନାହିଁ । ଏହାର କାରଣ କଣ ଜଣା ଯାଉ ନାହିଁ ଆଳୁସିନା ମ୍ଲେଚ୍ଛ ଦେଶରୁ ଆସିଥିଲା ବୋଲି ପ୍ରଭୁଙ୍କ ଭୋଗରେ ଲାଗିଲାନାହିଁ, ଗହମରେ କି ଦୋଷ ଅଛି ? କ୍ଷେତ୍ରମାହାତ୍ମ୍ୟବିତ୍ ପଣ୍ଡିତମାନେ ଜାଣନ୍ତି ଗହମଟା ଆମଦେଶରେ କାସଖାଦ୍ୟ ରୂପେ ବ୍ୟବହୃତ ହୁଏ ।

ଏଥର ଅମ୍ଭମାନଙ୍କର ପୁରୀ ଯାତ୍ରାରେ ଗଙ୍ଗାସ୍ନାନ ଲାଭହେଲା । ଆଂଭେମାନେ ହାନେଯାଇ ଶ୍ୱେତଗଙ୍ଗାରେ ସ୍ନାନ କରିଥିଲୁଁ । ନାମରେ ଶ୍ୱେତଗଙ୍ଗ, କିନ୍ତୁ ବର୍ଣ୍ଣରେ ନୀଳଗଙ୍ଗା । ମାଇପିଲୋକେ ଏ ଗୋଟିକ ତୀର୍ଥରେ ତୃପ୍ତ ନ ଥାନ୍ତି । ଏମାନେ ବଡ଼ ଭୋରରୁ ଉଠି ପଞ୍ଚତୀର୍ଥ ସ୍ନାନ ଲାଭ କରିଥାନ୍ତି । ତୀର୍ଥ କ୍ଷେତ୍ରମାନଙ୍କରେ ମାଇପି ଲୋକଙ୍କର ବାସନ ବସନ କିଣିବା ଗୋଟିଏ ପ୍ରଧାନ କାର୍ଯ୍ୟ ଏବଂ ଅନେକ ସ୍ତ୍ରୀଲୋକପକ୍ଷେ ଦେବ ଦର୍ଶନ ଅପେକ୍ଷା ଗୁରୁତର । ମଫସଲର ପରଦାବାସିନୀ ସ୍ତ୍ରୀମାନଙ୍କର ତୀର୍ଥ କ୍ଷେତ୍ରମାନଙ୍କରେ, ଅବରୋଧ ପ୍ରଥା ପାଳିତ ହୁଏ ନାହିଁ । ଏମାନେ ସ୍ୱେଚ୍ଛାକ୍ରମେ ବାର ବଜାର ବୁଲି ଆପଣା ବିଳାସର ଜିନିଷ— ଚୁଡ଼ା, ଫରୁଆ, ମୁଦି, ମାଳ ଇତ୍ୟାଦି କିଣନ୍ତି ।

ଏହି ଜଗନ୍ନାଥ ମନ୍ଦିର କେବଳ ବଡଦେଉଳ ନୁହେଁ,ସମଗ୍ର ଭାରତ ଯାତ୍ରୀମାନଙ୍କର ଏହା ଏକ ପ୍ରକାଣ୍ଡ ଅପସଂସ୍ଥାନ । ଅମ୍ଭେମାନେ ବେଷଘର ବ୍ୟାପାର ଦେଖିବାକୁ ଗଲୁ । ଚତୁର୍ଦ୍ଦିଗରେ ଦେଖିଲୁଁ ଯଥାସମ୍ଭବ ସୁନ୍ଦର ବ୍ୟବସ୍ଥା ଏବଂ ସୁଶୃଙ୍ଖଳ ବନ୍ଦୋବସ୍ତ । ସମଗ୍ର ପୁରୀ କ୍ଷେତ୍ରର ସମସ୍ତ ମହିମା ଯେତେବେଳେ ଏହି ଅନ୍ନ ମହାପ୍ରସାଦରେ ନିହିତ ଅଛି, ଉକ୍ତ ଅଭ୍ରାନ୍ତ ପାକପ୍ରଣାଳୀ ସମ୍ବନ୍ଧେ କୌଣସି ଯୋଗ ବିଯୋଗ ବା ପରିବର୍ତ୍ତନ ସଂସ୍କାର ପ୍ରସ୍ତାବ କରିବା ମୋପକ୍ଷରେ ଧୃଷ୍ଟତାମାତ୍ର । ଅତଏବ ସେକଥା ଛାଡ଼ । ତାପରେ ଅମ୍ଭେମାନେ କଳ୍ପବଟ ବା ଅକ୍ଷୟବଟ ମୂଳକୁ ଗଲୁ । ସେଠାରେ ବସି ଚତୁର୍ଦ୍ଦିଗର ବ୍ୟାପାର କାଣ୍ଡ ସନ୍ଦର୍ଶନ କରିବାରେ ମନରେ ଅନେକ ଗୁଡ଼ାଏ କଳ୍ପନା ଜାତ ହେଲା । କାର୍ତ୍ତିକମାସରେ ଅନେକ ଓଡ଼ିଆଯାତ୍ରୀ ପୁରୀ ଆସନ୍ତି । ଏମାନଙ୍କ ମଧ୍ୟରେ ବହୁସଂଖ୍ୟକ ବିଧବା ଓ ହବିଷାଳୀ ଲୋକ ।

ଏମାନେ ଏଠାରେ ମୁକ୍ତହସ୍ତ କରନ୍ତି । ହିନ୍ଦୁମାନଙ୍କର ଆହାର ସମ୍ବନ୍ଧେ ଭାରି କଠୋର ନିୟମ ଅଛି, ତହିଁରେ ପୁଣି ହବିଷ୍ୟର ନିବନ୍ଧନ ତତୋଧିକ । ଏହି ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତି ଏହିଠାରେ ମିଳେ । ଏଠାରେ ଭଲ ଛୁଆଁ ଶଙ୍କା ନାହିଁ, ଅଇଁଠା ସଙ୍ଖୁଡ଼ି ନାହିଁ ଜାତି ନାତି ନାହିଁ । ପ୍ରସାଦମାନେ ଯେ ଯେଉଁ ପରି, ଯେତେବେଳେ, ଯେଉଁଠାରେ, ଯାହାଠାରୁ ଖାଇପାରନ୍ତି, କୌଣସି ବାରଣ ନାହିଁ । ଏହି ବଡଦେଉଳ ତଥା ପୁରୀ ସହର ଭାରତବାସୀମାନଙ୍କର ଗୋଟିଏ ମହତ ମେଳା ଅଟେ । ପୁରୀରେ ଜଗନ୍ନାଥ ସ୍ଥାପିତ ନ ଥିଲେ ଭାରତର ଦୂର ପ୍ରଦେଶାଗତ ଯାତ୍ରୀମାନଙ୍କ କଥା ଦୂରେ ଥାଉ ଉତ୍କଳୀମାନଙ୍କ ମିଳନ ମଧ୍ୟ ସୁଦୂରପରାହତ ହୋଇଥାନ୍ତା । ଗଞ୍ଜାମ, ସମ୍ବଲପୁର, କଟକ, ପୁରୀ, ବାଲେଶ୍ୱର ବାସୀମାନେ ଏକ ଉତ୍କଳ ମାତାର ସନ୍ତାନ ହୋଇ ଥିଲେହେଁ ଏମାନଙ୍କ ମଧ୍ୟରେ ଦେଖା ସାକ୍ଷାତ, ମିଳାମିଶା ହୋଇ ନ ପାରି ଏମାନେ ନିଜେ ନିଜକୁ ଚହ୍ନିପାରୁ ନ ଥାନ୍ତେ । ପ୍ରବାସ ପ୍ରୟାସୀ ପ୍ରବଳ ପୁରୁଷମାନେ ଦେଶାନ୍ତର ବୁଲି ପରସ୍ପର ପରିଚୟ ଲାଭ କରୁଥିଲେହେଁ ଅସ୍ମମାନଙ୍କର ପରଦାଆବରୁଦ୍ଧା ଅବଳାମାନେ ଅନ୍ଧକୂପରେ ପଡ଼ି ସଡ଼ି ଯାଉଥାନ୍ତେ । ଏକ ଦେଶର କଥା ଦୂରେ ଥାଉ ଏକ ଗ୍ରାମରେ ମଧ୍ୟ ଅନେକ ସମୟରେ କୌଣସି୨ ସ୍ତ୍ରୀଲୋକମାନଙ୍କ ମିଳନର ଅବକାଶ ନ ଥାଏ । କିନ୍ତୁ ଦ୍ରୌପଦୀ ଲଜ୍ଜାନିବାରକ ଗୋପାଙ୍ଗନା ମାନସ ମୋହନକାରୀ ଜଗନ୍ନାଥ ଅନ୍ତଃପୁର ବାସିନୀ ଅବଳାମାନଙ୍କର ଏହି ଅନ୍ତରାୟ ଦୂର କରି ଅଛନ୍ତି ।



## ଏକାଦଶୀ ମହାତ୍ମ୍ୟ

ଏକାଦଶୀ ମହାତ୍ମ୍ୟ—ସ୍ୱର୍ଗରେ ଏକ ବେଶ୍ୟାଥିଲା । ସେ କୌଣସି ଅପରାଧ କଲାରୁ ତାହାକୁ ମର୍ତ୍ତ୍ୟ ଲୋକକୁ ପଠାଇ ଦିଆଗଲା । ସେତେବେଳେ ବେଶ୍ୟା ପଚାରିଲା ଯେ, ସେ ଫେରେ କେବେ କିପରି ସ୍ୱର୍ଗକୁ ଆସି ପାରେ । ସ୍ୱର୍ଗର ଦଣ୍ଡଧାରୀ କହିଲେ ତୁମେ ଯେତେବେଳେ ଏକାଦଶୀ ବ୍ରତର ଫଳପାଇବ, ଯଦି କେହିଲୋକ ଆପଣାର ଏକାଦଶୀ ବ୍ରତଫଳ ତୁମ୍ଭଙ୍କୁ ଦେଇପାରେ, ସେତେବେଳେ ତୁମେ ଫେରେ ସ୍ୱର୍ଗକୁ ଆସିବ । ଏହି ଦେବଶାପ ଅନୁସାରେ ସେହି ବେଶ୍ୟା ମର୍ତ୍ତ୍ୟ ଭୂମିରେ ପତିତ ହେଲା । ଯେଉଁ ପ୍ରଦେଶରେ ଏହି ବେଶ୍ୟାର ବିମାନ ପଡ଼ିଥିଲା, ସେହି ପ୍ରଦେଶର ରାଜା ବେଶ୍ୟାଠାରୁ ତାହାର ଦୁର୍ଗତିର ସକଳ ବୃତ୍ତାନ୍ତ ବୁଝିପାରି ବେଶ୍ୟାକୁ କୌଣସି ଲୋକଠାରୁ ଏକାଦଶୀ ବ୍ରତଫଳ ଦିଆଇ ଦେବାପାଇଁ ଚେଷ୍ଟାକଲେ । ଏକାଦଶୀ ତିଥିରେ କୌଣସି ଲୋକ ନଖାଇ ନପିଇ ଅଛି ଏପରି ଜଣେ ଉପାସିଆ ଲୋକଙ୍କୁ ଖୋଜିବାକୁ ହେଲା । ପରିଶେଷରେ ଦେଖାଗଲାଯେ,

କୌଣସି ଶୂଦ୍ର ସ୍ତ୍ରୀ ଆପଣା ପୁରୁଷ ସହିତ କଳହ କରି ସେ ଦିନଯାକ କିଛି ନଖାଇ ନପିଇ ରହିଅଛି । ସେହି କ୍ଷଣି ସେହି ସ୍ତ୍ରୀ ଲୋକକୁ ଆଣି ତଦ୍ଦ୍ୱାରା ବେଶ୍ୟାର ବିମାନକୁ ଛୁଆଇଁ ଦିଆଗଲା । ଏହି ଶୂଦ୍ରା ସ୍ତ୍ରୀଟି ବେଶ୍ୟାର ବିମାନ ଛୁଇଁ ଦେଲାମାତ୍ରେ ବେଶ୍ୟା ଉକ୍ତ ବିମାନରେ ବସି ସ୍ୱର୍ଗକୁ ଚାଲିଗଲା । ଦେଖନ୍ତୁ ଏକାଦଶୀ ବ୍ରତର କିପରି ମହିମା । ସ୍ୱାମୀ ସଙ୍ଗରେ ମାଡ ଗୋଳ କରି, ରୁଷିକରି ନଖାଇ ନପିଇ ଉପବାସ କରିଥିଲା ବୋଲି ସେହି ସ୍ତ୍ରୀ ନିର୍ଜ୍ଜଳା ଏକାଦଶୀ ଫଳ ପାଇଲା । "ସ୍ୱଭାବରେ ସ୍ତ୍ରୀର ଜନ୍ମ ପାଇ, ଧର୍ମ୍ମ ଅଧର୍ମ୍ମ ନଜାଣଇ" । ସ୍ତ୍ରୀ ମାନେତ ମହା ପାପିନୀ ପରି, ତହିଁରେ ପୁଣି ଶୂଦ୍ରା ସ୍ତ୍ରୀ । ଏଭଳି ସ୍ତ୍ରୀ ଲୋକ ମଧ୍ୟ ନିର୍ଜ୍ଜଳା ଏକାଦଶୀ ଧର୍ମ୍ମ ପାଇଲା । ଏକାଦଶୀ ବ୍ରତର ଉଦ୍ଦେଶ୍ୟ ଆଦୌ ନାହିଁ, ଈଶ୍ୱର ଆରାଧନା ନାହିଁ, ପ୍ରକୃତ ଉପବାସ ନାହିଁ, ତଥାପି କ୍ଷୁଧା ତୃଷାରେ ଭୋକେ ଉପାସେ ଥିଲା ବୋଲି, ପୁଣି ସ୍ୱାମୀ ସଙ୍ଗରେ ମାଡଗୋଳ କରି ରୁଷିଥାଇ କିଛି ଖାଅ ପିଅ କରି ନଥିଲା ବୋଲି ସେହି ସ୍ତ୍ରୀଲୋକ ଏକାଦଶୀ ଫଳ ପାଇଗଲା । ଏଭଳି ଏକାଦଶୀ ଫଳର ମହିମାରେ ଯେତେବେଳେ ମର୍ତ୍ତ୍ୟ ମଣ୍ଡଳରୁ ପାପିନୀର ବିମାନ ସ୍ୱର୍ଗକୁ ଉଠି ଯାଉଅଛି, ତେବେ ଉଦ୍ଦେଶ୍ୟ ପୂର୍ବକ ଏକାଦଶୀ ଛିଥିବେ ନିରାହାର ରହିଲେ ଏକାଦଶୀ ଉପବାସୀ କଣ କରି ନପାରେ ! ୟୁରୋପୀୟ ପୋପପରି ପାପୀ ଲୋକଙ୍କ ଦେହରୁ ପାପ ସବୁ ନିର୍ମ୍ମଳ ଧୋଇ ଦେଇପାରେ । ତେବେ ଏକାଦଶୀ ବ୍ରତ ବିଧାନ ଥାଉ ଥାଉ, ଅନେକ ଏକାଦଶୀ ବ୍ରତବାଲା ଥିଲେ ମଧ୍ୟ ଏହି ପ୍ରାଣୀ ଜଗତରେ କାହିଁକି ଏତେ ପାପ ରୋଗ, ଶୋକ, ସନ୍ତାପ, ଯାତନା ଇତ୍ୟାଦି ଅନୁଭୂତ ହେଉଥାନ୍ତା ? ଏକାଦଶୀ ଦ୍ୱାରା ପାପ ତାପ ଦୂରୀଭୂତ ହୁଏନାହିଁ । ଏକାଦଶୀ ମାହାତ୍ମ୍ୟ କେବଳ ହିନ୍ଦୁସ୍ଥାନୀ ପୋପ ବା ପୁରୋହିତ ମାନଙ୍କର ଭଣ୍ଡାମି ।

ଏକାଦଶୀ ବ୍ୟବସ୍ଥା ଯେ କେବଳ ଯୁବକ ବା ବୃଦ୍ଧମାନଙ୍କ ପାଇଁ ଅଛି ତାହା ନୁହେ । ଆବାଲ ବୃଦ୍ଧ ବନିତା ସମସ୍ତେ, ବିଶେଷତଃ ବ୍ରାହ୍ମଣ ଜାତୀୟ ବିଧବାମାନେ ଏକାଦଶୀ ଉପାବାସ କରିବାକୁ ବାଧ୍ୟ । ୫ ବର୍ଷିଆ ବାଳିକା ମଧ୍ୟ ଏକାଦଶୀ ଉପବାସ କରିବାକୁ ବାଧ୍ୟହୁଏ । ପିତା ମାତା ଯେପରି ୫।୭ ବର୍ଷର ବାଳିକାକୁ ତାହାର କପାଳ ଦୋଷ ବୋଲି କହି ତାହାକୁ ବିଧବା ହେବାକୁ ବାଧ୍ୟ କରନ୍ତି ସେହି ବିଧବା ବାଳିକାକୁ ସେହିପରି ଏକାଦଶୀ ପାଳିବାକୁ ବାଧ୍ୟ କରନ୍ତି । କ୍ଷୁଧା ତୃଷାରେ ଯେଉଁ ବାଳିକା ସନ୍ତପ୍ତ ହୋଉଥାଏ ତାହାପ୍ରତି ମଧ୍ୟ ଏକାଦଶୀ ବିଧାନ ଅପରିହାର୍ଯ୍ୟ । କୌଣସି ବିଧବା ହେଉ ଏକାଦଶୀ ନକରି ରହିପାରେ ନାହିଁ । ଯଦିଚ ନିର୍ଜ୍ଜଳା ବା ସଫଳା ଏକାଦଶୀର କିଛି ଫଳଥାଏ ତେବେ ସମସ୍ତଙ୍କର ଏକାଦଶୀ ପାଳନ କରି ଲାଭ ପାଇବା ଉଚିତଥିଲା । ପୁଣି ଏକାଦଶୀ ଦିନ ଅନ୍ନ ଭକ୍ଷଣ କଲେ ଯଦି ପାପହୁଏ ତେବେ ଅନ୍ନଭୋଜୀ ସମସ୍ତଙ୍କୁ ଏହି ପାପ ଲାଗିବା କଥା ଥିଲା । କିନ୍ତୁ ଦେଖାଯାଏଯେ ବାଳିକା ହେଉ, ଯୁବତୀ ହେଉ ବା ବୃଦ୍ଧହେଉ କେବଳ ବିଧବା

ମାନଂକୁ ଏହି ପାପ ସ୍ପର୍ଶ କରେ । ସଧବାମାନେ ଓ ପୁରୁଷମାନେ ଏହି ପାପରୁ ନିସ୍ତାର ପାଆନ୍ତି । କେହି ପୁରୁଷ ଲୋକ ଏକାଦଶୀ ନପାଳିଲେ ତାହା ପ୍ରତି ନିଷେଧ ବା ଦୂଷଣ ନାହିଁ । କିନ୍ତୁ ବିଧବା ଯଦି ଏକାଦଶୀ ଦିନ ଅନ୍ନ ଭୋଜନ କରେ ତେବେ ସେ ସଂସାରୁ ଯାଏ, ନରକରେ ପଡେ । ଯେଉଁ ବାଳିକା କ୍ଷୁଧା ତୃଷାରେ ଅଥୟ ହୋଇ ପଡ଼ିଅଛି, କିଛି ଖାଇବା ପିଇବାରେ ଏକାନ୍ତ ଧ୍ୟାନ କରୁଅଛି ତାହାପ୍ରତି ଏହି ନିର୍ଜଳା ଏକାଦଶୀ ଉଥାନ ! ଯେଉଁ ବ୍ୟକ୍ତି ଏହି ଏକାଦଶୀ ବ୍ୟବସ୍ଥା କରିଅଛି, ସେକି ନିଷ୍ଠୁର ନିର୍ଦ୍ଦୟ ପାଷାଣ ହୃଦୟ ! କ୍ଷୁଧା ତୃଷାରେ ପେଟ ପୋଡ଼ିଥିବା ବେଳେ ମନରେ ଈଶ୍ୱର ଚିନ୍ତା ବା ହରିଭକ୍ତି କାହୁଁ ଆସିବ ? ସେତେବେଳେ ଯଦି କେହି ହରିଭକ୍ତି କରେ ତେବେ ସେହି କ୍ଷୁଧା ବାଧାରୁ ମୁକ୍ତ କରିବା ନିମନ୍ତେ ହରିଙ୍କ ପ୍ରାର୍ଥନା କରେ, ଏକାଦଶୀ ଦିନ କେବେ ସରିବ ଦ୍ୱାଦଶୀ କେବେ ଆସିବ ଏହି ଚିନ୍ତାରେ ଚିନ୍ତିତ ଥାଏ । ଏମାନେ ବାଧ୍ୟହୋଇ ଏକାଦଶୀ ତିଥି ନିମନ୍ତେ କେବଳ ଉପାସ କରନ୍ତି, ଈଶ୍ୱରୋପାସନା ପାଇଁ ଉପବାସ କରନ୍ତି ନାହିଁ । ଏମାନେ ହୁଅନ୍ତି କେବଳ ଏକାଦଶୀଭକ୍ତ, ଈଶ୍ୱର ଭକ୍ତ ନୁହନ୍ତି । ଯଦି ଏକାଦଶୀ ଦିନ ମନରେ କିଛି ଈଶ୍ୱର ଭାବ ଥାଏ, ଦ୍ୱାଦଶୀ ଉଦୟରେ କାହିଁ ଉଭେଇ ଯାଏ । ଯେଉଁମାନେ ମନ୍ଦିର ଭିତରକୁ ଶପଥ କରିବା ନିମନ୍ତେ ଯାଆନ୍ତି ସେମାନେ ଭାବନ୍ତି ଯେ, ଈଶ୍ୱର ମନ୍ଦିରର ବାହାରେ ନାହାନ୍ତି । ସେହିପରି ଯେଉଁମାନେ ଏକାଦଶୀ ଅମାବାସ୍ୟା ଇତ୍ୟାଦି ତିଥିରେ ଉପବାସ କରନ୍ତି ସେ ଦିନ ଅନ୍ୟ ତିଥିରେ ଈଶ୍ୱରଙ୍କଠାରୁ ବହୁ ଦୂରରେ ରହନ୍ତି ।

କେହି କେହି କହିବେ ଏକାଦଶୀ ବ୍ରତ ପାଳନ ଦ୍ୱାରା ଇନ୍ଦ୍ରିୟ ସଂଯମ କରାଯାଏ । ପନ୍ଦର ଦିନରେ ଏ ଦିନ ନିରାହାର ରହିଲେ କି ଇନ୍ଦ୍ରିୟ ଆୟତ୍ତ ହୁଏ ? ୧୪ଦିନ ପର୍ଯ୍ୟନ୍ତ ଉଚ୍ଛୃଙ୍ଖଳ ରହିବ, ଅପରିମିତ ଆହାର କରିବ, ନିଷିଦ୍ଧ କାର୍ଯ୍ୟରେ ପ୍ରବୃତ୍ତ ହେବ, ଈଶ୍ୱରାଜ୍ଞା ଅବଜ୍ଞା କରିବ, କିନ୍ତୁ ପଞ୍ଚଦଶ ଦିନ ଏକାଦଶୀ ବ୍ରତ ପାଳନ କରିବ । ଏଥିଦ୍ୱାରା କି ଇନ୍ଦ୍ରିୟ ସଂଯମ ହୁଏ ? ବରଂ ଉଦ୍ଧତ ଏବଂ ଅନାୟତ୍ତ ହୁଏ । ଦୁଇତିନିଦିନ ପର୍ଯ୍ୟନ୍ତ ନଖାଇବା ଲୋକ ଯେପରି ଖାଇଲା ବେଳେ ବେଶି ଖାଇଥାଏ, ତଦ୍ୱାରା ଅଜୀର୍ଣ୍ଣ ପେଟବ୍ୟଥା ଇତ୍ୟାଦି ରୋଗ ଯାତହୁଏ, ସେହିପରି ନିର୍ଜଳା ଏକାଦଶୀଆମାନେ ଦ୍ୱାଦଶୀ ଦିନ କଣ୍ଠ ପର୍ଯ୍ୟନ୍ତ ଭରିକରି ଖାଇଥାନ୍ତି । ଫଳରେ ଉଦ୍ଧତ ଇନ୍ଦ୍ରିୟ ବଳୀଭୂତ ହୋଇ ପଡନ୍ତି । ମିତାହାର ଦ୍ୱାରା ଯଦି ଇନ୍ଦ୍ରିୟ ଦମନ କରିବାକୁ ହୁଏ ତେବେ ପ୍ରତ୍ୟହ ସ୍ୱଳ୍ପାହାର କରିବା ଉଚିତ । ଏବଂ ସୂକ୍ଷ୍ମ ସାତ୍ତ୍ୱିକ ଆହାର କରିବା ଉଚିତ । ପ୍ରତ୍ୟେକ ଜନ୍ତୁ ମାରି ଆମିଷାହାର କରିବ; ଏକାଦଶୀଦିନ ଜଳଖିଆ କରିବ ଏହି ଜଳଖିଆରେ କିଛି ଫଳ ହୁଏନାହିଁ । ଜଣେ ଆମିଷାହାରୀଙ୍କର ଏକାଦଶୀ ପାଳନ ଦେଖନ୍ତୁ, ଦିନେ ଏକାଦଶୀ ଘଟିଛି । ସେଦିନ ଦୈବରେ ଛେଳିଆଦି ମାଂସ ଆସିଲା । ଛେଳିଆଦି ମାଂସ ସବୁଦିନେ ଘଟେନାହିଁ । ଅପୂର୍ବ ଘଟି କେତେବା କେବେ ମିଳେ । ସାମନ୍ତ ଆପଣେ ସେଦିନ ଏକାଦଶୀ ପାଳନା ଛାଡି ମାଂସ ଭୋଜନ କରିବାକୁ ଲାଗିଲେ । ଆପଣା ପାଇଁ ଏକା

ଦଶୀ କରିଦେବାପାଇଁ ଜଣେ ବ୍ରାହ୍ମଣକୁ ବରଣ କଲେ ସେହି ବ୍ରାହ୍ମଣକୁ ୫ ୬ ଦକ୍ଷିଣା ଦେଇ ଏକାଦଶୀ ବ୍ରତ ଫଳ ତାହାଙ୍କ ଠାରୁ କିଣି ନେଲେ । ଏହାକୁ କି କହି ଇନ୍ଦ୍ରିୟ ସଂଯମ ବା ଈଶ୍ୱରୋପବାସ ? ପୁଣି ଏକାଦଶୀ ଦିନ ଅନ୍ନ ଆହାର ଓ ସାମାନ୍ୟ ପଦାର୍ଥ ଆହାର ପରିତ୍ୟାଗ କଲେ ହେଁ ଅନ୍ୟ ବିବିଧ ପ୍ରକାର ଅନ୍ନ ତିଆରି କରି ଖାଆନ୍ତି ଏବଂ ଗରିଷ୍ଠ ଆହାର କରି ଦିନମାନ ବସନ୍ତି । ଭାତ ଡାଲିରେ ଯେଉଁମାନେ ଜୀବନ ନିର୍ବାହ କରନ୍ତି ସେମାନେ ଏକାଦଶୀ ଦିନ ଖିରି ପିଠା, ପୁରି ଲଡୁ ଇତ୍ୟାଦି କିଛି ଖାଇଥାନ୍ତି ।



# ହିନ୍ଦି ବୈରାଗୀ

ବୈଷ୍ଣବ ବା ବୈରାଗୀ ନାମରେ କେତେଲୋକ ବାହାରୁଛନ୍ତି । ଅନେକ ଅକର୍ମା ଓ ଅଳସୁଆ ମାନେ ଏହି ପୋଷାକ ଧାରଣ କରି ବୁଲନ୍ତି । ନାମ ସ୍ମରଣ, ମାଳି ଭଜନ, କଣ୍ଠି କୌପୀନ, ନାମରେ ବିଶ୍ୱାସ, ଜୀବରେ ଦୟା, ଏହିପରି ନାନାକଥା ଦ୍ୱାହିଦେଇ ଏମାନେ ଉଦର ନିମନ୍ତେ ନାନା ପ୍ରକାର ବେଶ ଧାରଣ କରିଥାନ୍ତି । ଜଟା, କୌପୀନ ଓ ଗେରୁଆ ବସନ ଯେପରି ବୈଷ୍ଣବ ବା ବୈରାଗୀମାନଙ୍କର ନିଶାଣ ରୂପେ ଗୃହୀତ ହୁଏ, ହିନ୍ଦିକଥା ମଧ୍ୟ ଆମ ଦେଶରେ ସେପରି ବୈରାଗୀର ଏକ ଚିହ୍ନ ହୁଏ । ଯେଉଁମାନେ ବୈରାଗୀ ବେଶ ଧାରଣ କରନ୍ତି ସେମାନେ କିଛି ହିନ୍ଦି କହିବା ଶିଖନ୍ତି । ହିନ୍ଦି ନ କହିଲେ ସେମାନଙ୍କୁ ଲୋକେ ବୈଷ୍ଣବ ବା ବୈରାଗୀ ବୋଲନ୍ତି ନାହିଁ । ଏମାନେ ଯେପରି ଆପଣାର ଧର୍ମ କର୍ମ ସବୁ ତ୍ୟାଗକରି କେବଳ ଭୋଜନ ଆଶାରେ ବୁଲିଲେ, ସେହିପରି ଆପଣାର ମାତୃଭାଷା ପରିତ୍ୟାଗ କରି ହିନ୍ଦି କହିବାକୁ ଚେଷ୍ଟା କଲେ । ହିନ୍ଦି ଭାଷାଟାକୁ ହେଲେ ଯଦି ଏମାନେ ଉତ୍ତମ ରୂପେ ଶିଖନ୍ତେ ବିଶୁଦ୍ଧ ହିନ୍ଦି ଭାଷା କହିପାରୁ ଥାନ୍ତେ ତେବେ ଏକ ଗୁଣ ହୁଅନ୍ତା, କିନ୍ତୁ ତାହା କରନ୍ତି ନାହିଁ, ବଙ୍କା ଟଙ୍କା କରି ଗୁଡିଏ ହିନ୍ଦି କହନ୍ତି । ଏମାନେ କହନ୍ତି, "କିଛି ଦିଅ ଭାଇ" "କିଛି ଗୁଡ଼ଜଳ ଦେଓ, ଦୟା କରତେ" । ଏମାନେ ଆପଣାର ବେଶ ଭୂଷା ଯେନ ବୈରାଗୀ ବା ବୈଷ୍ଣବ ବୋଲି ଯେଉଁ ଟିକିଏ ପରିଚୟ ଦେଇଥାନ୍ତି ହିନ୍ଦିଭାଷା କହିବା ଲାଗି ତାହାକୁ ନଷ୍ଟ କରନ୍ତି । ହିନ୍ଦିଭାଷା କହିବା ଲାଗି ଏମାନେ ହିନ୍ଦିଭାଷୀ ନୁହନ୍ତି ବୋଲି ଧରାପଡ଼ି କେବଳ ହାସ୍ୟାସ୍ପଦ ହୁଅନ୍ତି । ଏମାନଙ୍କର ବେଶ ଦେଖି ଏମାନଙ୍କ ପ୍ରତି ଯେଉଁ ବିଶ୍ୱାସ ବା ଭକ୍ତି ଜାତ ହୋଇଥାଏ, ଏମାନଙ୍କ ହିନ୍ଦିକଥା ଶୁଣିବା ମାତ୍ରେ ସେହି ଧାରଣାଟା ଚାଲିଯାଏ । ସେତେବେଳେ ଏମାନଙ୍କର କପଟାଚାର ପଦାରେ ପଡ଼ିଯାଏ ଏବଂ ଏମାନଙ୍କ ପ୍ରତି ଗୁରୁତର ଘୃଣା ଜାତହୁଏ । ବେଶ, ଭୂଷା ଓ ଭାଷାରୁ ଲୋକର ପରିଚୟ ମିଳେ । ବେଶ ଓ ଭୂଷାଦ୍ୱାରା ଏମାନଙ୍କର ପ୍ରକୃତି ଧରାଯାଇ ନପାରିଲେ ହେଁ ଏମାନଙ୍କ ହିନ୍ଦିଭାଷାରୁ ଏମାନଙ୍କର କପଟାଚାରର ପରିଚୟ

ମିଳେ । ଅନେକ ଦୁର୍ବୃତ୍ତ,ଦୁଶ୍ଚରିତ୍ରମାନେ ଆପଣାଙ୍କୁ ସାଧୁ ସନ୍ୟାସୀ ବୋଲି ପରିଚୟ ଦିଅନ୍ତି । ଯେଉଁ ଭାବନାରୁ ହେଉ ଅବା ଏମାନଙ୍କ ପ୍ରତି ଯେଉଁ ହିନ୍ଦି ଭାଷାର ବ୍ୟବସ୍ଥା କରାଯାଇଅଛି ତାହା ଉତ୍ତମ ହୋଇଅଛି । ତାହା ନଥିଲେ ଏମାନେ ସହଜରେ ହଠାତ୍ ଧରାଯାଇ ପାରନ୍ତେ ନାହିଁ । ହିନ୍ଦୁସ୍ଥାନରୁ ଯେଉଁ ବୈଷ୍ଣବ ବା ବୈରାଗୀମାନେ ଆସନ୍ତି ସେମାନେ ସହଜ ଚିହ୍ନା ପଡ଼ି ନପାରନ୍ତି, କିନ୍ତୁ ଉତ୍କଳ ଦେଶର ସନ୍ୟାସୀମାନେ ଅକ୍ଲେଶରେ ଧରାଯାଇ ପାରନ୍ତି । ବଙ୍କା ଟଙ୍କା ବଙ୍ଗଳା କହି ଯେପରି କେହି କେହି ଚୈତନ୍ୟ ଭକ୍ତ ବା ବୈଷ୍ଣବ ବୋଲାନ୍ତି ସେହି ପରି ବଙ୍କା ଟଙ୍କା ହିନ୍ଦି କହି ଅନେକ ବୈରାଗୀ ହୁଅନ୍ତି । ସମାଜରେ ଏହିପରି ସାଧୁ ସନ୍ୟାସୀମାନଙ୍କୁ ଦେଖି ଆମ୍ଭେମାନେ ଆମ୍ଭର ଆର୍ଯ୍ୟତ୍ୱର ଅକ୍ଷାଳନ କରୁଅଛୁଁ ।

---

# ଉପବାସର ଉପକାରିତା

ଶରୀର ରକ୍ଷା କରିବା ନିମନ୍ତେ ଆହାର କରିବାକୁ ହୁଏ । ଶରୀର ଯୋଗେ ଜୀବ ଧାରଣ କରିବାକୁ ହୁଏ । ଅତଏବ ଜୀବ ସକାଶେ ଆହାର ପ୍ରୟୋଜନ । ଆହାରର ବ୍ୟତିକ୍ରମ ଘଟିଲେ ଜୀବନ ନଷ୍ଟ ହୋଇଥାଏ । ଅନୁପଯୁକ୍ତ ଆହାର ଦ୍ୱାରା ଶରୀରରେ ଯେପରି ରୋଗ ଜନ୍ମେ, ଅତିରିକ୍ତ ଆହାର ଦ୍ୱାରା ସେହିପରି ଆୟୁ କ୍ଷୟ ହୁଏ । ଅତିରିକ୍ତ ଆହାର କରିବାରୁ ମନୁଷ୍ୟ ଅଳ୍ପ ସମୟରେ ବେଶି ଦିବସ ବଂଚି ଯାଏ, ଅର୍ଥାତ୍ ଶୀଘ୍ର ବାର୍ଦ୍ଧକ୍ୟ ପ୍ରାପ୍ତ ହୁଏ । ଏକ ଦିନର ଅତିରିକ୍ତ ଆହାରରେ କେହିଲୋକ ହୁଏତ ଦୁଇଦିନର ଆୟୁ ଏକ ଦିନରେ ଭୋଗକରି ଦେଇପାରେ । ଏହି ହିସାବରେ ଦେଖିଲେ ଅତିରିକ୍ତ ବା ମିଥ୍ୟାହାର ଦ୍ୱାରା ଶୀଘ୍ର ବାର୍ଦ୍ଧକ୍ୟ ପ୍ରାପ୍ତ ହୁଏ, ଅର୍ଥାତ୍ ଅଳ୍ପାୟୁ ହୋଇଯାଏ, ଯେ ହେତୁରୁ ପ୍ରତ୍ୟେକ ଅବୟବ ହିସେବ ଲେଖେ ବେଶି ଚାଲିଯାଏ ଏବଂ ଶୀଘ୍ର ଅକ୍ଷମ ହୋଇପଡେ । କିନ୍ତୁ ମଧ୍ୟ ମଧ୍ୟରେ ଉପବାସ ବା ଅନାହାର ରହିବା ଦ୍ୱାରା ମନୁଷ୍ୟ ନିମ୍ନ ଅବସ୍ଥାକୁ ଆସିଯାଏ । ଅର୍ଥାତ୍ ପୁନରପି ବାଲ୍ୟାବସ୍ଥା ବା ପୁନଃ ଯୌବନ ପ୍ରାପ୍ତ ହୁଏ- ଅଧିକ ବଳବାନ୍ ହୁଏ,ଅଧିକ ତେଜୀୟାନ ହୁଏ ଏବଂ ଅଧିକ ଶକ୍ତିଶାଳୀ ହୁଏ,ଯେତେହେତୁ ଉପବାସ ଦ୍ୱାରା ପରିପାକ ଶକ୍ତି ପରିବର୍ଦ୍ଧିତ ହୁଏ । ଉପବାସ ପରେ ଯେପରି କ୍ଷୁଧା ଜାତହୁଏ, ରୁଚି ବଢେ, ଅନ୍ନଜୀର୍ଣ୍ଣ ହୁଏ, ନିତ୍ୟ ମାମୁଲି ଆହାର ବେଳେ ସେହିପରି କ୍ଷୁଧା ବା ରୁଚି ହୁଏନାହିଁ । ଯେପରି ଅଙ୍ଗ ପ୍ରତ୍ୟଙ୍ଗର ଅତିରିକ୍ତ ବେଗ ବର୍ଦ୍ଧନ ଦ୍ୱାରା ଜୀବନ ଶକ୍ତି ହ୍ରାସ ପ୍ରାପ୍ତ ହୁଏ, ସେପରି ଅଙ୍ଗ ବିଶେଷର ଚ୍ଛେଦନ ଦ୍ୱାରା ଅଙ୍ଗ ସମୂହ ପରିବର୍ଦ୍ଧିତ ହୁଏ । ଦେଖିବଯେ ପ୍ରଥମ ବର୍ଷେ ଦୁଇବର୍ଷ ଯଦି କଲମ ଆମ୍ବ ଗଛ ବଉଳିବା ସମୟରେ ତାହାର ବଉଳ ଛଣ୍ଡାଇ ଦେବ ତେବେ ସେହି ଗଛରେ ବଡ ବଡ ଆମ୍ବ ଫଳେ । କଦଳୀ ଗଛର ଚେର କାଟି ପକାଇ ତା ମୂଳରେ ନୂତନ ମାଟିଦେଲେ

କଉଁଥା ଫସଲ ଉତ୍କୃଷ୍ଟ ହୁଏ । ମଲ୍ଲ ଚଛର ଡ଼ାଳ କାଟିଦେଇ ଗଛ ଉପରେ ଶାଳିଗଣ୍ଡ୍ରେ ପକାଇ ନିଆଁ ଲଗାଇ ଦେଲେ ଗଛଟା ଅଧିକ ପଲ୍ଲବିତ ହୁଏ ଏବଂ ବଡ ବଡ ଫଳ ଫଳେ । 'କୋଠନ' ଗଛର ଡାଳଖଣ୍ଡମାନ କାଟି ନେଇ ଭୂମିରେ ରୋପଣ କଲେ ତହିଁରୁ ଅଳ୍ପ ସମୟରେ ଅତି ସୁନ୍ଦର କୋଠନ ଗଛ ହୁଏ । ଏହିପରି ଉପବାସ କରିବା ଦ୍ୱାରା ମାନବ ଶରୀର ନୂତନତ୍ୱ ପ୍ରାପ୍ତ ହୁଏ ।

ସତତ୍ୱତର ପ୍ରାୟଶ୍ଚିତ ଦ୍ୱାରା ପାପର ପ୍ରତିକାର କରାଯାଏ । ଅନେକ ସମୟରେ ଅତିରିକ୍ତ ଅନୁପଯୁକ୍ତ ବା ଗୁରୁପାକ ଆହାର କରି ଶରୀର ପ୍ରତି ପାପ କରାଯାଇ ଥାଏ । ମନୁଷ୍ୟ ଯେତେ ସଂଯମଶୀଳ ଓ ଜାଗରୁକ ରହୁ ପଛେ ଅନେକ ସମୟରେ ଅତ୍ୟାହାର ବା ବିଷମାହାର କରି ପକାଇ ଥାଏ ପୁଣି ଉଦରର ଆବଶ୍ୟକତା ନଥିଲେହେଁ ଜିହ୍ୱାଲାଳସାରେ ପଡ଼ି ଆହାର କରିଥାଏ । ଏହିପରି ମନୁଷ୍ୟ ଅନେକ ସମୟରେ ଆପଣା ଶରୀର ପ୍ରତି ଅନେକ ପାପାଚରଣ କରିଥାଏ ଏହି ପାପ ନିମନ୍ତେ ତାହାକୁ ପ୍ରାୟଶ୍ଚିତ କରିବାକୁ ହେବ । ଏହି ସକଳ ପାପର ଉପଯୁକ୍ତ ପ୍ରାୟଶ୍ଚିତ ଅଟେ କେବଳ ଉପବାସ ।

ସମସ୍ତ ଧର୍ମ ଗ୍ରନ୍ଥରେ ଉପବାସର ଉଲ୍ଲେଖ ଅଛି । ନାନାବିଧ ପର୍ବ ପର୍ବାଣି ଓ ତିଥି ବିଶେଷରେ ଉପବାସର ବିଧାନ ଅଛି । ଉପବାସ ଦ୍ୱାରା ପେଟର ଅମ୍ଳ ଭାଙ୍ଗିଯାଏ, ଅଜୀର୍ଣ୍ଣ ପଦାର୍ଥ ଗୁଡାକ ଜୀର୍ଣ୍ଣ ହୋଇଯାଏ, ଦେହରୁ ନିଦ୍ରା, ତନ୍ଦ୍ରା, ଆଳସ୍ୟ ଛାଡିଯାଏ ଏବଂ ସକଳ ପ୍ରକାର କଲୁଷ ଦୂରୀଭୂତ ହୋଇଯାଏ । ଅତଏବ ଉପବାସ ବିଧାନଟା ମାନବ ପକ୍ଷରେ ଅତୀବ ଉପାଦେୟ ବ୍ୟବସ୍ଥା । ଉପବାସର ଅର୍ଥ ପରମାତ୍ମା ଈଶ୍ୱରଙ୍କ ନିକଟ ବାସ । ଯେତେବେଳେ ପାର୍ଥିବ ପଦାର୍ଥରୁ ପୃଥକ ରହିବାକୁ ହୁଏ, ସେତେବେଳେ ଈଶ୍ୱରଙ୍କ ସମୀପରେ ବାସ କରିବାକୁ ହୁଏ, ଅତଏବ ଏହାର ନାମ ଉପବାସ ।

---

# ଅହିଂସା ପରମୋ ଧର୍ମଃ

ଗଞ୍ଜାମ ଜିଲାର ବ୍ରହ୍ମପୁରର ସମୀପ ତାରିଣୀ ପର୍ବତ ଉପରେ ପ୍ରତିବର୍ଷ ଚୈତ୍ରମାସ ମଙ୍ଗଳବାରେ ତାରିଣୀ ଠାକୁରାଣୀଙ୍କର ଉତ୍ସବ ହୁଏ । ସହସ୍ର ସହସ୍ର ଯାତ୍ରୀ ଆସନ୍ତି, ଠାକୁରାଣୀ ନାମରେ ପଶୁବଧ କରି ମଦ୍ୟ ମାଂସ ଭକ୍ଷଣରେ ମତୁଆଳ ହୁଅନ୍ତି । ଜୈନ ଓ ବୈଷ୍ଣବ ସମ୍ପ୍ରଦାୟ ଧର୍ମାନୁସାରେ ଆମିଷ ଭକ୍ଷଣ ନିଷେଧ ଥିଲେହେଁ ଶିକ୍ଷିତ ଓ ବିଶିଷ୍ଟ ଲୋକମାନେ ମଧ୍ୟ ଏଠାରେ ତାରିଣୀ ଠାକୁରାଣୀ ନାମରେ ପଶୁବଧ କରି ମାଂସ ଭକ୍ଷଣ କରନ୍ତି । ଏହି ତାରିଣୀ ପୀଠରେ ପ୍ରତିବର୍ଷ ଲକ୍ଷ ଲକ୍ଷ ପ୍ରାଣୀ--ଛେଳି, ମେଣ୍ଢା, କୁକୁଡା ଇତ୍ୟାଦି ବଧ କରାଯାଏ ।

କି ଦୁଃଖର ବିଷୟ, କି ଲଜ୍ଜାର କଥା ! ଇଉରୋପ ଓ ଆମେରିକା ବାସୀ ଦୟାଶୀଳ ହୃଦୟ ବାନ୍ ସାହେବ ଲୋକମାନେ ଅନେକ ସଭା ସମିତି କରି ହିନ୍ଦୁ ଧର୍ମର ସଚ୍ଛିଦ୍ରା ନନ୍ଦ ପରଂବ୍ରହ୍ମ ଏକେଶ୍ୱର ବାଦ, ପୁନର୍ଜନ୍ମ, ପୂର୍ବକର୍ମ, ଜୀବଦୟା ଇତ୍ୟାଦି ବିଷୟ ଲୋକରେ ପ୍ରଚାର କରୁଥିବାବେଳେ ଏଣେ ପବିତ୍ର ଭାରତ ଭୂମିରେ ସହସ୍ର ସଂଖ୍ୟକ ହିନ୍ଦୁଲୋକ ଶୋଣିତ ପିପାସୁ ପିଶାଚଗଣର ପୂଜା ଆରାଧନା କରନ୍ତି । ସେହି ରାକ୍ଷାସୀର ତୃପ୍ତି ସାଧନ କରିବା ପାଇଁ ଅସଂଖ୍ୟ ନିରୀହ ପ୍ରାଣୀ ବଧରେ ରକ୍ତନଦୀ ପ୍ରବାହିତ ହୁଏ ।

ଆମ୍ଭେମାନେ ଆମର ହିନ୍ଦୁଧର୍ମକୁ ଜଗତରେ ଉତ୍କୃଷ୍ଟ ଧର୍ମ ବୋଲି କହୁଅଛୁଁ । ଆମ୍ଭ ମାନଙ୍କର ବିଶ୍ୱାସ ଯେଉଁମାନଙ୍କର ଜୀବରେ ଦୟା, ସେମାନେ ସ୍ୱର୍ଗ ଲାଭ କରନ୍ତି, ହିଂସ୍ରୁର ନିଷ୍ଠୁରମାନେ ନରକ ପ୍ରାପ୍ତ ହୁଅନ୍ତି, ଏବଂ ମନୁଷ୍ୟର ଇହଜନ୍ମର ସୁଖ ବା ଦୁଃଖ ପୂର୍ବ ଜନ୍ମର କର୍ମ ଉପରେ ନିର୍ଭର କରେ । ୟୁରୋପ ଓ ଆମେରିକା ବାସୀ ସାହେବ ଲୋକେ ଆମ୍ଭମାନଙ୍କର ବେଦ ଓ ଦର୍ଶନାଦି ଶାସ୍ତ୍ର ଶିକ୍ଷା କରନ୍ତି ଏବଂ ତାହାର ଉପଦେଶାନୁସାରେ ଜୀବିକା ନିର୍ବାହ କରି ସିଦ୍ଧିଲାଭ କରନ୍ତି । ସେମାନେ ଆପଣା ମଧ୍ୟରେ ଆମ୍ଭମାନଙ୍କର ଅହିଂସା ଧର୍ମ ଶିକ୍ଷା ପ୍ରଚାର କରୁଛନ୍ତି । ପ୍ରଭୁ ଯିଶୁଖ୍ରୀଷ୍ଟ ଖ୍ରୀଷ୍ଟିୟାନ ମାନଙ୍କୁ କହିଛନ୍ତି—"ମୋ ନାମରେ ତୁମ୍ଭେମାନେ କାହିଁକି ପଶୁହତ୍ୟା କରୁଅଛ । ଗୋରୁ ଛେଳି ଇତ୍ୟାଦି ପଶୁ ରକ୍ତରେ ମୁଁ ସନ୍ତୁଷ୍ଟ ହୁଏନାହିଁ । ତୁମର ହାତରେ ରକ୍ତ ଲାଗିଛି, ହାତଧୁଅ, ନିର୍ମଳ ହୁଅ, ମୋ ଆଗରେ ହତ୍ୟା କରନାହିଁ, ମନ୍ଦକର୍ମରୁ କ୍ଷାନ୍ତହୁଅ, ଭଲ କର୍ମ କରିବାକୁ ଶିଖ ।"

ହିନ୍ଦୁ ଭାଇମାନେ, ତୁମ୍ଭେମାନେ କାହାକୁ ପୂଜା କରୁଛ, ପ୍ରଭୁଙ୍କୁ ନା ପିଶାଚକୁ ? ଏହି ସଂସାରରେ ଦୁଇଟି ଶକ୍ତି କାର୍ଯ୍ୟ କରେ, ଦେବ ଓ ରାକ୍ଷସ । ଦେବ ପୂଜକ ମାନଙ୍କ ନିକଟରୁ ରାକ୍ଷସ ମାନେ ପଳାୟନ କରନ୍ତି । ଯେଉଁ ମାନେ ଈଶ୍ୱରଙ୍କୁ ଉପାସନା କରନ୍ତି ସେମାନେ ସକଳ ପ୍ରାଣୀଠାରେ ଦୟା କରନ୍ତି, ସର୍ବଦା ଯଥା-ଶକ୍ତି ସମ୍ଭବ ଲୋକ ଉପକାର କରିବାକୁ ମନେକରନ୍ତି । ସେମାନେ ମଲେ ସ୍ୱର୍ଗ ଲାଭ କରନ୍ତି, ସେଠାରେ ଦେବତା ମାନଙ୍କ ସଙ୍ଗରେ ରହି ନିର୍ମଳ ସୁଖ ଭୋଗ କରନ୍ତି, ପୁନରପି ଜନ୍ମ ଗ୍ରହଣ କରି ପୁଣି ସୁଖ ଭୋଗ କରନ୍ତି । ପୁଣି ଯେଉଁମାନେ ରକ୍ତ ପିପାସୁ ରାକ୍ଷସର ସେବା କରନ୍ତି ସେହି ନିଷ୍ଠୁର ମାନେ ନିରୀହ ନିରପରାଧୀ ଜନ୍ତୁ ମାନଙ୍କୁ ହତ୍ୟା କରନ୍ତି, ଜୀବ ହତ୍ୟାକୁ ଧର୍ମ ବୋଲି ଜ୍ଞାନ କରନ୍ତି । ଏହି ଘାତକ ମାନେ ମଲେ ନରକରେ ପଡ଼ନ୍ତି ଏବଂ ଇହ ଜୀବନରେ ଯେଉଁ ଜୀବମାନଙ୍କୁ ହତ୍ୟା କରିଥାନ୍ତି ସେହି ଜୀବ ମାନଙ୍କର ବିକଟ ଭୟାନକ ଭୂତ ପ୍ରେତ ଦ୍ୱାରା ପୀଡ଼ିତ ହୁଅନ୍ତି, ପୁଣି ପରେ ଜନ୍ମ ଗ୍ରହଣ କରି ଅଶେଷ ଦୁଃଖ କଷ୍ଟ ଭୋଗ କରନ୍ତି ।

ହିନ୍ଦୁ ପୁରୋହିତ ମାନଙ୍କ ନିକଟରେ ବିନୀତ ନିବେଦନ, ହେ ଗୁରୁ ପୁରୋହିତ ମାନେ ! ତୁମ୍ଭମାନଙ୍କର ଦାୟିତ୍ୱ ଅତିବଡ଼ । ତୁମ୍ଭେମାନେ କରିବା କର୍ମ ଫଳ ଥରେ ଭାବି ଦେଖ । ତୁମ୍ଭ ମାନଙ୍କ ଉପଦେଶରେ ବା ଏ ଦେଶରେ ଲକ୍ଷ ଲକ୍ଷ ପ୍ରାଣୀ ସ୍ୱର୍ଗଲାଭ କରନ୍ତି

ବା ନରକରେ ପତିତ ହୁଅନ୍ତି । ପୁରୋହିତ ମାନେ ଯେତେବେଳେ ନିଜେ ଘାତକ ହୁଅନ୍ତି, ପଶୁହତ୍ୟା କରିବାପାଇଁ ଲୋକଙ୍କୁ ଧର୍ମୋପଦେଶ ଦିଅନ୍ତି, କିବା ସେମାନଙ୍କୁ ହତ୍ୟା କର୍ମରୁ ନିବୃତ୍ତ କରନ୍ତି ନାହିଁ, ସେମାନେ ନିଶ୍ଚୟ ଘୋର କୁମ୍ଭୀପାକ ନରକରେ ପଡ଼ିବେ ଏବଂ ସେଠାରେ ବହୁ ଦୁଃସହ ଯନ୍ତ୍ରଣା ଭୋଗ କରିବେ, ଏହା ସ୍ଥିର କରନ୍ତୁ । ଯେଉଁ ଉପଦେଷ୍ଟା ପୁରୋହିତ ମାନେ ଜୀବଦୟା ପ୍ରଚାର କରନ୍ତି, ଜୀବହତ୍ୟାରୁ ଲୋକଙ୍କୁ ନିବାରଣ କରନ୍ତି ସେମାନେ ଇହ ଜନ୍ମରେ ଭକ୍ତି ପୂଜନ ଓ ଧନ୍ୟବାଦାର୍ହ ହୁଅନ୍ତି ଏବଂ ଦେହ ତ୍ୟାଗ କଲେ ସ୍ୱର୍ଗ ପ୍ରାପ୍ତ ହୁଅନ୍ତି ।

ଯେଉଁ ହିନ୍ଦୁ ମାନଙ୍କର ଦୟା ଧର୍ମ ଜଗତରେ ସୁପ୍ରସିଦ୍ଧ, ଯାହାଙ୍କର ପରମାରାଧ୍ୟ ଦେବ ଭଗବାନ ଶ୍ରୀକୃଷ୍ଣ ଭଗବତ୍ ଗୀତାରେ ଜୀବହତ୍ୟାର ନିଷେଧ କରିଛନ୍ତି, ଅହିଂସା ଯେଉଁମାନଙ୍କର ପରମଧର୍ମ, ସେହି ହିନ୍ଦୁ ମାନେ ଆଜି ପଶୁବଳି ନାମରେ ଭଗବାନଙ୍କ ସୃଷ୍ଟ ନିରୀହ ନିର୍ଦୋଷୀ ପ୍ରାଣୀମାନଙ୍କୁ ତାହାଙ୍କ ଆଗରେ ନିର୍ମମ ନିର୍ଦ୍ଦୟ ଭାବରେ ହତ୍ୟା କରନ୍ତି—ଏହାଠାରୁ ବଳି ଭୟାନକ ଗର୍ହିତ ନୃଶଂସ ପାପକର୍ମ ଆଉ କଣ ଥାଇପାରେ ?

ଏକଦିନ ରାଜାଙ୍କ ଆଗରେ ଅନେକ ପୁରୋହିତ ବ୍ରାହ୍ମଣ ସମବେତ ହୋଇ ବଳି ଦେବା ପାଇଁ ପଶୁହତ୍ୟା ଆରମ୍ଭ କଲାବେଳେ ଭଗବାନ ବୁଦ୍ଧ ଦେବ ସେହି ସ୍ଥାନରେ ଉପସ୍ଥିତ ହୋଇ ଆବଦ୍ଧ ପଶୁଟିକୁ ଫିଟାଇଦେଇ ରାଜାଙ୍କୁ କହିଲେ "ହେ ରାଜନ, ଯେଉଁ ଜୀବନ ସବୁ ପ୍ରାଣି ମାନଙ୍କର ପ୍ରେମ ଓ ଶ୍ରଦ୍ଧାର ବସ୍ତୁ, ଯାହାକୁ ସମସ୍ତେ, ନୀଚ୍ଚଦପି ନୀଚ ଲୋକମାନେ ରକ୍ଷିବାକୁ ଯତ୍ନ କରନ୍ତି, ନେହଦେଲେ କଦାପି ସେହି ଜୀବନ ଦାନ କରିପାରେ ନାହିଁ କିନ୍ତୁ ହତ୍ୟା କରିଦେଇ ପାରେ । ଦୟା ଅଟେ ପ୍ରାଣର ପ୍ରିୟକାର୍ଯ୍ୟ, ଦୟାହିଁ ଦୁର୍ବଳର ବଳ ଏବଂ ବଳବାନର ପରାକ୍ରମ । ଦୟାଯେନ ସାଧାରଣ ଦୁର୍ବଳ ପକ୍ଷରେ କୋମଳ ଏବଂ ବଳବାନ ପକ୍ଷରେ ସମ୍ଭ୍ରାନ୍ତ ବୋଧହୁଏ । ଆମ୍ଭେମାନେ ଈଶ୍ୱରଙ୍କଠାରେ କୃପା ପ୍ରାର୍ଥନା କରୁଅଛୁ, କିନ୍ତୁ ଯେଉଁ ନିରୀହ ପଶୁଜନ୍ତୁର ଆମ୍ଭେମାନେ ଈଶ୍ୱର ସ୍ୱରୂପ, ସେହି ଜନ୍ତୁପ୍ରତି ଆମ୍ଭେମାନେ ନିର୍ଦ୍ଦୟ ନିଷ୍ଠୁର ବ୍ୟବହାର କରୁଅଛୁ । ଯେଉଁ ଜନ୍ତୁ ଆମ୍ଭମାନଙ୍କୁ ଅପଣାର କ୍ଷୀର, ଅସ୍ଥି, ଚର୍ମ, ଲୋମ ଦେଇ ଆମ୍ଭମାନଙ୍କର ସୁଖ ସ୍ୱଚ୍ଛନ୍ଦ୍ୟ ବର୍ଦ୍ଧନ କରୁଅଛି ତାହାକୁ ହତ୍ୟା କରିବାକି ଆମ୍ଭମାନଙ୍କର କୃତଜ୍ଞତା ? କେହି କେବେ ଅନ୍ୟର ଅଗ୍ନିକୁ ରକ୍ତରେ ଯୌତିକରି ପରିଷ୍କୃତ କରିପାରେ ନାହିଁ, କିମ୍ବା ଦେଇ ଦୋଷରୁ ମୁକ୍ତ ହୋଇପାରେ ନାହିଁ, ଯେଯାହା କର୍ମଫଳ ନିଶ୍ଚୟ ଭୋଗ କରିବେ । ଯଦି ସକଳ ଜୀବ ପରସ୍ପର ପ୍ରତି ପ୍ରୀତି ଓ ବନ୍ଧୁତାରେ ଆବଦ୍ଧ ରହନ୍ତେ, ସମସ୍ତେ ନିର୍ଦ୍ଦୋଷ ପବିତ୍ର ଫଳ ମୂଳ ଉଦ୍ଭିଦ ଆହାର କରନ୍ତେ ତେବେ ଏହି ଜଗତ ସ୍ୱର୍ଗୀୟ ସୁଖ ଶାନ୍ତିରେ ପୂର୍ଣ୍ଣ ହୁଅନ୍ତା ।" ମହାତ୍ମା ବୁଦ୍ଧ ଦେବଙ୍କର ଏହି କଥା ଶୁଣି ପୁରୋହିତ ବ୍ରାହ୍ମଣମାନେ ଶାସ୍ତ୍ର ଫିଙ୍ଗି ଦେଲେ, ପଶୁହତ୍ୟାରୁ ନିବୃତ୍ତ ହେଲେ । ରାଜାଙ୍କ ଆଦେଶରେ କଠୋର ପଶୁହତ୍ୟା ଓ ମାଂସାହାର ନିଷେଧ କରାଗଲା । ଯେଉଁ ଲୋକ ଦୟାକରେ ସେହି କେବଳ କୃପାର ପାତ୍ରହୁଏ । କ୍ଷାନ

ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତହେଉ । ସକଳ ପ୍ରାଣୀଠାରେ ଜୀବ ଏକ । ଅତଏବ କେହି କେବେ ଜୀବହତ୍ୟା କରିପାରିବେ ନାହିଁ କିବା ମାଂସାହାର କରିବେ ନାହିଁ”—ଗ୍ରନ୍ଥରେ ସର୍ବତ୍ର ଏହି ଉପଦେଶ ଘୋଷିତ ହେଉଛି ।

ପରମ ଦୟାଳୁ ପବିତ୍ରାତ୍ମା ମହାପୁରୁଷମାନେ କେବେହେଁ ନିରୀହ ନିରପରାଧୀ ପ୍ରାଣୀ ବଧର ବ୍ୟବସ୍ଥା ଦେଇନାହାନ୍ତି । ତନ୍ତ୍ର ଓ ପୁରାଣାଦିରେ ଜୀବ ବଧର ଯେଉଁ ବ୍ୟବସ୍ଥା ଅଛି ତାହା ସବୁ କେବଳ ଦୁଷ୍ଟ ଦୁର୍ଜ୍ଜନ ଦୁରାତ୍ମାମାନେ ଲେଖି ମହାତ୍ମା ଋଷି ମୁନି ମାନଙ୍କ ନାମରେ ପ୍ରକାଶ କରିଅଛନ୍ତି ।

ଅହିଂସା ପରମଧର୍ମ୍ମ ପ୍ରଚାର କରିବା ନିମନ୍ତେ ବମ୍ବାଇ ପ୍ରଦେଶସ୍ଥ “ଜୀବଦୟା ଜ୍ଞାନ ପ୍ରସାରକ ସମାଜ” ହିନ୍ଦୁ ଧର୍ମନେତା ପୁରୋହିତ, ଗୁରୁ, ଗୋସ୍ୱାମୀ, ଯୋଗୀ ବୈରାଗୀ ସାଧୁ ସନ୍ୟାସୀ, ରାଜା ମହାରାଜା ଇତ୍ୟାଦି ଦେଶ ହିତୈଷୀ ମହାତ୍ମା ମାନଙ୍କ ନିକଟରେ ନିବେଦନ କରି ଉକ୍ତ ନିବେଦନ ପତ୍ର ସର୍ବତ୍ର ପ୍ରକଟନ କରୁଛନ୍ତି ।

ହେ ହିନ୍ଦୁ ଭାଇମାନେ, ଆପଣମାନଙ୍କୁ ଏହି ବିନୀତ ନିବେଦନ କରାଯାଉଅଛି, ଆପଣ ମାନେ ପଶୁବଳି, ଜୀବହତ୍ୟା, ମାଂସାହାର ଇତ୍ୟାଦି ନିର୍ଦ୍ଦୟ ନିଷ୍ଠୁର ପୈଶାଚିକ କର୍ମ କାଣ୍ଡରୁ ଶାନ୍ତ ହୁଅନ୍ତୁ ଏବଂ ଜୀବ ଦୟାଧର୍ମ ସର୍ବତ୍ର ପ୍ରଚାର କରି ଲୋକଙ୍କର ଧନ୍ୟବାଦ ଏବଂ ଈଶ୍ୱରଙ୍କର ଆଶୀର୍ବାଦ ଲାଭ କରନ୍ତୁ

---

## ତ୍ରିନାଥ ।

ଉତ୍କଳୀୟମାନେ ଜଗନ୍ନାଥଙ୍କୁ ସୃଷ୍ଟିକରି ଭାରତ ବ୍ୟାପୀ ଖ୍ୟାତି ଉପାର୍ଜ୍ଜନ କରିଛନ୍ତି । ଏହି ଜଗନ୍ନାଥ ତ୍ରିମୂର୍ତ୍ତିରେ ବିଭକ୍ତ—ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ସମ୍ପ୍ରତି ଏମାନେ ଆଉ ଏକ ପ୍ରକାର ତ୍ରିନାଥ ରଚନା କରିଛନ୍ତି । ଏହି ତ୍ରିନାଥଙ୍କୁ ଯେବେ ଏମାନେ ହିନ୍ଦୁ ଜଗତରେ ଖ୍ୟାତ ନିଶ୍ଚୟ କରିବେ । ତିନୋଟି ପଇସାରେ ତ୍ରିନାଥମେଳା ସମ୍ବାଦ ହେଉଥିଲା—ପଇସା ଟିକର ଗଞ୍ଜେଇ, ପଇସାକର ତେଲ ପୁଣି ଏକ ପଇସାର ଚୁଡ଼ା ଉଖୁଡ଼ା ଇତ୍ୟାଦି ଯେଉଁକି ନୈବେଦ୍ୟ । କୌଣସି ଗଛ ମୂଳରେ ପୋଖରୀ ବନ୍ଧ ଉପରେ, ଶ୍ମଶାଣିଆ ତଳେ ଇତ୍ୟାଦି ଯେ କୌଣସି ସ୍ଥାନରେ ତ୍ରିନାଥ ଦେବ ବିଜେ କରୁଥିଲେ । ବିଶେଷତଃ ଗଞ୍ଜେଇ ଖୋରମାନେ ଏହି ମେଳାରେ ଯୋଗ ଦେଉଥିଲେ । ତ୍ରିନାଥ ଦେବ କୌଣସି ଗଞ୍ଜେଇ ଖୋରମାନଙ୍କ ବିକୃତ ମସ୍ତିଷ୍କ ପ୍ରସୂତ ବୋଲି କେହି କେହି ଭାବୁଥିଲେ । ତ୍ରିନାଥଙ୍କର ଉତ୍ପତ୍ତି ଯାହାହେଉ ଆଜି ତାହାଙ୍କର ପ୍ରତିଷ୍ଠା ଉତ୍କଳ ଦେଶରେ ଉତ୍ତରୋତ୍ତର

ବୃଦ୍ଧିଲାଭ କରୁଅଛି । ଆଜି ପ୍ରାୟ ପ୍ରତ୍ୟେକ ଗ୍ରାମରେ ତ୍ରିନାଥ ପୂଜା, ତ୍ରିନାଥଙ୍କପାଇଁ ମଣ୍ଡପ ମନ୍ଦିର ନିର୍ମାଣ ହେଉଅଛି, ପଣ୍ଡା ପୂଜାରୀ ନିଯୁକ୍ତ ହେଲେଣି, କେତେ ଭୋଗରାଗ ଖଞ୍ଜା ହେଲାଣି, ରାଜାମାନେ ମଧ୍ୟ ପାତ୍ରମନ୍ତ୍ରୀ ସହ ତ୍ରିନାଥଙ୍କ ସେବା ପୂଜାରେ ଲାଗି ଗଲେଣି, କେତେ ଅଧ୍ୟା ପଡ଼ିଗଲେଣି ପୁଣି କେତେ ଲୋକ ରୋଗ ମୁକ୍ତ ହେଲେଣି । ଅନ୍ଧ ବିଶ୍ୱାସ ହେଉ ପଛେ, ବିଶ୍ୱାସର କି ବିଶ୍ୱବ୍ୟାପୀ ମହିମା । ଏଥିପାଇଁ କୁହାଯାଏ "ଦୃଢ଼େ ତରନ୍ତି ମୂଢ଼େ ତରନ୍ତି ମଝିମଝିଆ ବୁଡ଼ି ମରନ୍ତି" । ବ୍ରାହ୍ମଣ ପଣ୍ଡିତମାନେ ମଧ୍ୟ ତ୍ରିନାଥ ଆରାଧନାରେ ଲାଗି ପଡ଼ିଲେଣି । ରାଜାମାନେ ତ୍ରିନାଥ ମନ୍ଦିର ସ୍ଥାପନ କରିଦେବେ, ବ୍ରାହ୍ମଣମାନେ ତ୍ରିନାଥ ଗାଥା ଗାଇବେ ଏବଂ ସ୍ୱପ୍ନାବିଷ୍ଟ ଭକ୍ତମାନେ ତ୍ରିନାଥଦେବଙ୍କ ମହିମା କୀର୍ତ୍ତନ କରିବେ, ତେବେ ତ୍ରିନାଥଙ୍କ ପ୍ରତ୍ୟକ୍ଷ ପ୍ରତିଷ୍ଠା ବଢ଼ିବାରେ ବାଧକ କ'ଣ ।

ଜୀବମାନଙ୍କ ପାଇଁ ପରମେଶ୍ୱର ବିଶ୍ୱ ସର୍ଜନ କରନ୍ତି । ମନୁଷ୍ୟମାନେ ଆପଣା ପାଇଁ ବିବିଧ ଦେବଦେବୀର ସୃଷ୍ଟି କରନ୍ତି, ପୁରୀ ମହାରାଜା ଆମ୍ଭମାନଙ୍କ ପାଇଁ ଜଗନ୍ନାଥ ଛପ୍ପାରି କରିଦେଲେ । ମଦ୍ୟ ମାଂସ ପ୍ରଲୋଭନରେ ବ୍ରାହ୍ମଣମାନେ ଗୋପନରେ ଦେବୀ ପୂଜାକୁ ଉଆଣିଲେ, ଏକମାତ୍ର ବିଜୟୀ ଯେନ ତ୍ରିନାଥଦେବଙ୍କର ବିଜୟ ।

ଏହି ସବୁ ବିଧାନ ଓ ବ୍ୟାପାର ବେଦୋକ୍ତ ବା ଶାସ୍ତ୍ର ସିଦ୍ଧ ନହେଲେହେଁ ପ୍ରତ୍ୟେକ ବ୍ୟାପାରର ମୂଳରେ କଷ୍ଟକଳ୍ପିତ ତତ୍ତ୍ୱ ନିହିତ ଅଛି । ଅବିଦ୍ୟ, ସ୍ୱାର୍ଥପର, ଇନ୍ଦ୍ରିୟ ସୁଖାଭିଳାଷୀ ବ୍ୟକ୍ତିମାନେ ମୂଳ ନିୟମର ତତ୍ତ୍ୱ ନବୁଝି ଅର୍ଥର ଅନର୍ଥକର ଏହି ସକଳ ବିକୃତ ବ୍ୟବସ୍ଥା ଓ କଦର୍ଯ୍ୟ ଅନାର୍ଯ୍ୟ ବ୍ୟାପାରର ଅବତାରଣା କରନ୍ତି । ସୃଷ୍ଟି, ସ୍ଥିତି ଓ ପ୍ରଳୟ ଏହି ତିନି ଜଗତର, ମୂଳନୀତି । ସୃଷ୍ଟି କ୍ରମ କ୍ରିୟା ତିନୋଟି ଯଥା ସର୍ଜ୍ଜନ, ପାଳନ ଓ ସଂହାର । ଏହି ତିନି ମୂଳ ସୂତ୍ରର ନିୟନ୍ତା ବା ଅଧିଷ୍ଠାତା ସ୍ୱରୂପ ତ୍ରିଦେବ, ତ୍ରିମୂର୍ତ୍ତି, ତ୍ରିନାଥ ଇତ୍ୟାଦିର ଅବତାରଣା । ଯଥା ବ୍ରହ୍ମା ବିଷ୍ଣୁ ଓ ଶିବ, ଜଗନ୍ନାଥ, ବଳଭଦ୍ର, ବିଶ୍ୱନାଥ, ଲୋକନାଥ, ତ୍ରିନାଥ ଇତ୍ୟାଦି । ଏମାନଙ୍କର ଅଧିଷ୍ଠାନ ପୁରୀ ଭୁବନେଶ୍ୱର ଯାଜପୁର,—ବଟ, ଅଶ୍ୱତ୍ଥ ପଳାଶ,— ଶିଉ କାଉଡ଼ି ପୋଲ କବା ଅଫୁ ମଦ ଗଞ୍ଜେଇ ଇତ୍ୟାଦି ।

ଯଥ ଦେବେ ତଥାଦେବେ । ଦେବ ସକାଶେ ଖାଦ୍ୟପାନ, ରାଗ ଭୋଗ, ବେଶ ଭୂଷା, ତୋଷାମଦ ଖୋସାମଦ ଇତ୍ୟାଦି ଯାହା ଆବଶ୍ୟକ ଏହି ଦେବାଦେବୀ ମାନଙ୍କ ପାଇଁ ସେସବୁ ଲୋଡ଼ାହୁଏ । ବହୁ ନାୟିକା ହେଲେ ଘର ମେଣ୍ଟର ଭାଙ୍ଗିଯାଏ ସେହିପରି ଜଗତରେ ଏତେ ଗୁଡ଼ିଏ ନାଥ ହେଲେ ପରିଣାମରେ ଜଗତ ସୁଦ୍ଧା ଅନାଥ ହୋଇ ଉଠିବ ।



# ଦୁର୍ଭିକ୍ଷ

ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ କରନ୍ତି । ସୁଭିକ୍ଷ କରନ୍ତୁ ବା ଦୁର୍ଭିକ୍ଷ କରନ୍ତୁ, ଅତିବୃଷ୍ଟି କରନ୍ତୁ ବା ଅନାବୃଷ୍ଟି କରନ୍ତୁ, ଆରୋଗ୍ୟ ସଦା ସହଚର ହେଉ ବା ସଂକ୍ରାମକ ରୋଗ ରାଜତ୍ୱ କରୁ, ଦୀର୍ଘ ଜୀବନ ଲାଭ ହେଉ ବା ଅକାଳ ମରଣ ହେଉ, ସ୍ୱଦେଶୀ ହେଉ ବା ବିଦେଶୀ ହେଉ, ଖ୍ରୀଷ୍ଟଙ୍କ ପ୍ରଭୁତ୍ୱ ହେଉ ବା କୃଷ୍ଣଙ୍କ କର୍ତ୍ତୃତ୍ୱ ହେଉ, ହିନ୍ଦୁ ପଣ୍ଡିତ ହେଉ ବା ଇଂରାଜ ଆଚାର ହେଉ, ବେଦ ହେଉ ବା ବାଇବଲ ହେଉ, ନିରାକାର ଉପାସନା ହେଉ ବା ମୂର୍ତ୍ତି ପୂଜା ହେଉ, ଅନନ୍ତ ନରକ ହେଉ ବା ଜନ୍ମ ମରଣ ଲାଗି ଥାଉ, ସନ୍ନ୍ୟାସ ହେଉ ବା ସଂସାର ହେଉ, ଗୃହ ହେଉ ବା ପ୍ରବାସ ହେଉ, ସେକ୍ସପିଅର ହୁଅନ୍ତୁ ବା ବରାହ ମିହିର ହୁଅନ୍ତୁ, ସତ୍ୟକାଳ ହେଉ ବା କଳିଯୁଗ ହେଉ,—ଏହି ସବୁ ଈଶ୍ୱରଙ୍କ ସୃଷ୍ଟି । ପୁଣି ବିଶ୍ୱର ମଙ୍ଗଳ ନିମନ୍ତେ ସୃଷ୍ଟି ହୋଇଅଛି । କୌଣସି ନୈସର୍ଗିକ ଘଟଣା ବ୍ୟକ୍ତି ବିଶେଷ ପକ୍ଷେ ସୁଖକର ବା ଦୁଃଖଦ ହେଲେହେଁ, ଲୋକ ସମଷ୍ଟି ଦୃଷ୍ଟିରେ ମଙ୍ଗଳ ଜନକ ହୋଇଥାଏ । ପ୍ରତ୍ୟେକ ମନୁଷ୍ୟ ସ୍ୱଭାବତଃ ଯେ ଯାହାପାଇଁ, କେବଳ ଈଶ୍ୱର ସମଷ୍ଟି ପାଇଁ । ଅଘଟନ ସଙ୍ଘଟନ ପଟୁ, ବିଶ୍ୱପିତାଙ୍କ ପ୍ରତ୍ୟେକ ଘଟନାରେ ଆମ୍ଭମାନଙ୍କୁ ଶ୍ରଦ୍ଧା କରିବାକୁ ହେବ, ଆନନ୍ଦ ଉପଲବ୍ଧି କରିବାକୁ ହେବ ଏବଂ ମହୋତ୍ସବ ପୂର୍ବକ ଦାନପୁଣ୍ୟ କରିବାକୁ ହେବ । ଅନାବୃଷ୍ଟି ହେତୁ ଅନେକ ସ୍ଥାନରେ ହୋମ କରାଯାଏ । ଏହି ହୋମର ଉଦ୍ଦେଶ୍ୟ ଏହା ହେବା ଉଚିତ ଯେ,ଆମ୍ଭେମାନେ ଦୁର୍ଭିକ୍ଷର ଆଗମନ ସମ୍ଭାବନାରେ ପ୍ରୀତ ହୋଇ ଯାଗ, ହୋମ ପୂର୍ବକ ଈଶ୍ୱରଙ୍କ ଆରାଧନା କରୁଅଛୁଁ, ଯେହେତୁ ଆମ୍ଭେମାନେ ଦୁର୍ଭିକ୍ଷର ପ୍ରକାଣ୍ଡ ପ୍ରଚଣ୍ଡ ତାଣ୍ଡ ପର୍ଯ୍ୟାଲୋଚନା କରି ଅପର୍ଯ୍ୟାପ୍ତ ଆନନ୍ଦ ଭୋଗ କରି ଥାଉଁ । ଦୁର୍ଭିକ୍ଷର ଫଳାଫଳ ବିବେଚନା କଲେ ଅତି ସହଜରେ ଏବଂ ସ୍ଥୂଳ ଭାବରେ ଦେଖାଯିବ ଯେ, ଏଥିଦ୍ୱାର ଅସଂଖ୍ୟ ଲୋକକ୍ଷୟ ହୁଏ, ଧରାର ଭାର ବହୁ ପରିମାଣରେ ଦୂର ହୁଏ ଏବଂ କେତେ ସୁନ୍ଦର ସୁବ୍ୟବସ୍ଥା ସର୍ବସାଧାରଣ ହିତକର କାର୍ଯ୍ୟର ଅନୁଷ୍ଠାନ ହୁଏ ଯଥା Famine works, Relief works ଇତ୍ୟାଦି —ବୃହତ୍ କାର୍ଯ୍ୟମାନ କରାଯାଏ, ନାଳ ଓ ପୋଖରୀମାନ ଖୋଳା ଯାଏ, ନଦୀମାନଙ୍କରେ ଅନିକଟ, ପୋଲ ବାନ୍ଧ ବନ୍ଧାଯାଏ, ରୋଡ଼ ନିର୍ମାଣ ହୁଏ ଏବଂ ରେଲ ଚଳାଯାଏ ଇତ୍ୟାଦି । ପାଠକେ, ଦେଖନ୍ତୁ ଦୁର୍ଭିକ୍ଷର ମଙ୍ଗଳ ହାତେ ୨ ଧରାପଡ଼ୁଅଛି । "ଦୁଷ୍ଟନାଶି ଶାନ୍ତ ପାଳୁ, ତୁମେ ପରମ ଦୟାଳୁ" । ଦୁର୍ଭିକ୍ଷରେ କେତେ ଦୁଷ୍ଟ ନଷ୍ଟ ହୁଅନ୍ତି ଏବଂ କେତେ ଶ୍ରେଷ୍ଠକର୍ମର ଅନୁଷ୍ଠାନ ହୁଏ, ତାହା କିଏ କଳନା କରିପାରେ ? ପରମପିତା ପରମେଶ୍ୱରଙ୍କ ମହିମା ଅସୀମ । ରାବଣକୁ ଯେ ସୃଷ୍ଟି କରି ଅଛନ୍ତି ରାମଙ୍କୁ ମଧ୍ୟ ସେ ସୃଷ୍ଟି କରି ଅଛନ୍ତି, କୃଷ୍ଣଙ୍କୁ ଯେ ସୃଷ୍ଟି କରି ଅଛନ୍ତି କଂସର ମଧ୍ୟ ସ୍ରଷ୍ଟା ସେହି । ଯେ କୂର୍ମ ଏବଂ ବରାହ ଅବତାର ଧାରଣ କରନ୍ତି ସେ ଦୁର୍ଭିକ୍ଷ ଏବଂ ମହାମାରୀ ରୂପେ

ଅତି ଶୀର୍ଣ୍ଣ ହୋଇଥାନ୍ତି । ସୁତରାଂ ଦୁର୍ଭିକ୍ଷକୁ ଦୁର୍ଭାଗ୍ୟ ମନେ ନ କରି ଆଗ୍ରହର ସହିତ ଗ୍ରହଣ କରିବା ଉଚିତ । ଏହାକୁ ବିଶେଷ ଧନୀମାନଙ୍କ ପକ୍ଷେ ଏକ ଦୁର୍ଲ୍ଲଭ ସୁଯୋଗ ବୋଲି- ବାକୁ ହେବ । ଏହି ସମୟରେ ସେମାନେ ସତ୍‌ପାତ୍ରରେ ଆପଣାର ଉଦ୍‌ବୃତ୍ତ ଧନ ବିତରଣ କରି ପାରିବେ । ଏହି ସୁବର୍ଣ୍ଣ ସୁଯୋଗରେ ଯେ ଯାହାର କର୍ତ୍ତବ୍ୟ କରନ୍ତୁ, ଦେଖିବ ଯେ ଦୁର୍ଭିକ୍ଷର କୁଫଳ ନିବାରିତ ହୋଇ ତହିଁରୁ ସୁଫଳ ଫଳିବ । ଛାତ୍ରମାନେ ଅଦମ୍ୟ ଚେଷ୍ଟା କରି ଧନ ସଂଗ୍ରହ କରି ନିରନ୍ନ ପ୍ରାଣିମାନଙ୍କୁ ବଞ୍ଚାଇ ରଖନ୍ତୁ । ଲେଖକ ଏବଂ ସମ୍ପାଦକ ମାନେ ଦୁର୍ଭିକ୍ଷର ଆହାର ବିଷୟକ ପୁସ୍ତକ ମାନ ପ୍ରଣୟନ କରନ୍ତୁ, ରାଜା ଜମିଦାର ଓ ଇତର ଧନୀ ବ୍ୟକ୍ତି ମାନେ ଅକାତର ଭାବରେ ଧନ ବିତରଣ କରନ୍ତୁ, ଯେହେତୁ 'ଏମାନେ ଦୁର୍ଭିକ୍ଷର କରାଳ କବଳକୁ ଅତିକ୍ରମ କରି ପାରିଛନ୍ତି, " କାଠ ସିନା ସହେ କରତର ଦାଉ", ପୁଣି ଗବର୍ଣ୍ଣମେଣ୍ଟ Relief works ଖୋଲି ଏହି ଅଭାବ ନିବାରଣ କର୍ମୀବିଶେଷ ପୂର୍ଣ୍ଣ କରନ୍ତୁ, ତେବେ ମୋଟା ମୋଟିରେ ଦେଖିବ ଯେ ଦୁର୍ଭିକ୍ଷ ଜଗତର ଉପକାର କରୁଅଛି । ବିଶ୍ୱକୁଟୁମ୍ବୀ ଉଦାରତା ନ ପାଇଲେ ଦୁର୍ଭିକ୍ଷର ମହିମା ବୁଝାଯାଇ ପାରେନାହିଁ, ତହିଁର ଆଗମନରେ ଆନନ୍ଦ ଉପଲବ୍ଧି ହୁଏନାହିଁ ଏବଂ ତହିଁର ନିବାରଣୋପାୟରେ ମନୋଯୋଗ ଦିଆଯାଏ ନାହିଁ । ସଂକୀର୍ଣ୍ଣ ସ୍ୱାର୍ଥପର ବ୍ୟକ୍ତି ମାନେ ଦୁର୍ଭିକ୍ଷାଶଙ୍କାରେ ବହୁ ଦୂରରୁ ଭୀତି ପ୍ରାପ୍ତ ହୋଇ ପଡ଼ନ୍ତି, ଚିନ୍ତାକୁଳ ହୋଇ ଦୁର୍ଭିକ୍ଷର ଦୁର୍ନାମ ରଟନା କରନ୍ତି । ଏମାନେ ଦୁର୍ଭିକ୍ଷର କୁଫଳମାତ୍ର ଭୋଗ କରି ତହିଁର କରାଳ ବ୍ୟାଦାନରେ କବଳିତ ହୁଅନ୍ତି । କିନ୍ତୁ ପ୍ରକୃତ କଥା ବୁଝିଲେ ଦୁର୍ଭିକ୍ଷରେ କୌଣସି ଚିନ୍ତାନାହିଁ, ଯେତେବେଳେ ଇଚ୍ଛା ଅସ୍ତ୍ର, ତଦ୍ୱାରା ମଧ୍ୟ ଲୋକକଲ୍ୟାଣ ସାଧିତ ହୁଏ ।

ଆଉ ଏକ ବିଷୟ—ଦୁର୍ଭିକ୍ଷର ଆଗମନ ଦେଖି ଧାନ୍ୟ-ଧନୀ ମାନଙ୍କ ମନରେ ଦୁର୍ଭାବନା ଜନ୍ମିଥାଏ । ଧାନ ଦର ଯେତେ ଚଢ଼େ ଏମାନଙ୍କର ଧାନ ଓ ଧନ ସଂଗ୍ରହ କରିବା ଉତ୍କଣ୍ଠା ସେତେ ବଢେ । ଲୋକଙ୍କର ନିରନ୍ନ ଦଶାରେ ଏମାନେ ଧନ ସଞ୍ଚୟର ସୁଯୋଗ ପାଇ ଥାନ୍ତି । ଏହିପରି କେତେଗୋଟା ଦୁର୍ଭିକ୍ଷ ଭୋଗ କଲେ ଧାନବାଲା ମାନେ ଉତ୍ତରୋତ୍ତର ଧନୀ ହୋଇ ଉଠନ୍ତି । କିନ୍ତୁ ମନେ ରଖିବାକୁ ହେବ, ଲୋଭରୁ ଲାଭ ହେଲେ ସୁଦ୍ଧା ତହିଁରୁ ମୃତ୍ୟୁ ହୁଏ । ଉଦର ଜ୍ୱାଳାରେ ଉତ୍ତେଜିତ ହୋଇ ଯେତେବେଳେ ଲୋକେ ଏହି ଲୋଲୁପର ଧନ ଲୁଣ୍ଠନ କରନ୍ତି, ତେବେ ସେ ସର୍ବସ୍ୱାନ୍ତ ହୋଇ ପ୍ରାଣ ପର୍ଯ୍ୟନ୍ତ ଦେଇ ଥାଏ । ଦୁର୍ଭିକ୍ଷକୁ ସାଦର ଅଭ୍ୟର୍ଥନା କଲେହେଁ ଦୂରରୁ ଯୁହାର କରିବାକୁ ହେବ ।



# ଧର୍ମ ଓ କର୍ମ

ନଖକୁ ମାଂସ ଲାଗିଥିବା ପରି, ରକ୍ତ ଓ ମାଂସର ସମ୍ବନ୍ଧ ପରି ନତୁବା ବାଗର୍ଥ ସମ୍ବନ୍ଧପରି ଧର୍ମ ଓ କର୍ମ ମଧ୍ୟରେ ନିତ୍ୟ ସମ୍ବନ୍ଧ ବିଦ୍ୟମାନ । ବିନା କର୍ମରେ ଧର୍ମ ତିଷ୍ଠି ପାରେ-ନାହିଁ । କିବା ଧର୍ମବିହୀନ କର୍ମ ସତ୍‌କର୍ମ ବୋଲି ଯାଏନାହିଁ । କର୍ମ ଘେନି ଧର୍ମ କରିବାକୁ ହୁଏ, ଏବଂ ଧର୍ମପାଇଁ କର୍ମ କରିବାକୁ ହୁଏ । ସେହିପରି ଈଶ୍ୱର ଓ ସଂସାର ମଧ୍ୟରେ ନିତ୍ୟ ସମ୍ବନ୍ଧ ବିଦ୍ୟମାନ । ଈଶ୍ୱର ବ୍ୟତୀତ ସଂସାର, କିବା ସଂସାର ଛଡ଼ା ଈଶ୍ୱର କଦାପି ତିଷ୍ଠିପାରେ ନାହିଁ । କର୍ମ ବିହୀନ ଧର୍ମ କିବା ସଂସାର ବ୍ୟତୀତ ଈଶ୍ୱର ଅନ୍ଧ ବିଶ୍ୱାସ ବା ଆତ୍ମ ପ୍ରତାରଣା ମାତ୍ର । କର୍ମ ତ୍ୟାଗକରି କୌଣସି ପ୍ରାଣୀ କ୍ଷଣେ ମାତ୍ର ରହିପାରେ ନାହିଁ ; ଭଲ ହେଉକିବା ମନ୍ଦହେଉ ଯେ କୌଣସି କର୍ମକରେ । ହଳକରିବା, ହଳ ବାହିବା, ଖାଇବା, ଶୋଇବା, ଦେବା, ନେବା, ଉପାସନା କରିବା, ଜପ କରିବା, ହୋମ କରିବା, କିମ୍ବା ନିଆଁ ପୋଇଁବା ସବୁ ଅଟେ କର୍ମ । ଯେଉଁ କର୍ମ ଧର୍ମଯୁକ୍ତ ନୁହେଁ, ବା ଅଧର୍ମ ଜଡ଼ିତଥାଏ, ତାହାକୁ ମନ୍ଦ-କର୍ମ କୁହାଯାଏ, ପୁଣି ଯାହା ଅଧର୍ମ ରହିତ ଏବଂ ଧର୍ମ ସଙ୍ଗତଥାଏ, ତାହାକୁ ସତ୍ କର୍ମ କୁହାଯାଏ । ଦେଶ କାଳ ପାତ୍ର, ରୀତିଗତି, ଉପାୟ, ଉଦ୍ଦେଶ୍ୟ ଇତ୍ୟାଦି ଭେଦରେ କର୍ମ ଭଲହୁଏ ବା ମନ୍ଦହୁଏ । ଶୋଇବା କର୍ମ ଦେଖନ୍ତୁ, ଶୋଇବାରେ ପୁଣ୍ୟହୁଏ ଏବଂ ପାପମଧ୍ୟ ହୁଏ । ସତ୍ର ଉନ୍ନିଦ୍ର ରହିଲେ ଦୋଷ ହୁଏ ଏବଂ ଦିବା ନିଦ୍ରା ନିଷିଦ୍ଧ ହୁଏ । ଉପାସନା ମଧ୍ୟ ଧର୍ମ ସହିତ ବା ପାପଯୁକ୍ତ ହୁଏ । ଶୁଦ୍ଧ ମନରେ ନିବିଷ୍ଟ ଚିତ୍ତରେ ଈଶ୍ୱରୋପାସନାରେ ଧର୍ମ ଲାଭହୁଏ, ପୁଣି ଅସମ୍ୟକ୍ ସଂକଳ୍ପ ଘେନି, ବାହ୍ୟାଡମ୍ବର ଦେଖାଇବା ନିମନ୍ତେ ଆଖି ବୁଜିଦେଇ ମନ ଅନ୍ୟ ଦିଗରେ ରଖି ଜପ ଧ୍ୟାନକଲେ ତହିଁରେ ଧର୍ମ ହୁଏନାହିଁ, ବରଂ ପାପବଢ଼େ । ଧନ ଉପାର୍ଜନରେ ଏବଂ ବ୍ୟୟରେ ଧର୍ମ ବା ପାପ କରାଯାଇ ପାରେ । କୃଷି ବାଣିଜ୍ୟାଦିରୁ ଧନଉପାର୍ଜନ କରିବାକୁ ହୁଏ, । ଏହି ଉପାର୍ଜନରେ ଧର୍ମ ବା ପୁରୁଷାର୍ଥ ପ୍ରକାଶ ପାଏ, ପୁଣି ଚୌର୍ଯ୍ୟ ଦ୍ୟୂତାଦିରୁ ଧନ ସଂଗ୍ରହ କରିବାକୁ ହୁଏ ଏବଂ ବାଣିଜ୍ୟରେ ଠକାମି ଭଣ୍ଡାମି କରି ଧନ ସଂପାଦନ କରିବାକୁ ହୁଏ । ଏହାକୁ କହି ଅସଦ୍ଧନ, ଯେହେତୁ ମିଥ୍ୟା ଭାଷଣାଦି ଅସଦ୍‌ମାର୍ଗରେ ଏହି ଧନ ଉପାର୍ଜିତ ହୁଏ । ଋଣ ବ୍ୟବସାୟୀ ହେଉ, ଜମି-ଦାର ହେଉ, କୃଷକ ହେଉ ଅବା ଓକିଲାତି ହେଉ, ପ୍ରତ୍ୟେକ କର୍ମରେ ଧର୍ମ ବା ଅଧର୍ମ କରାଯାଇପାରେ । ସମ୍ବଳହୀନ ଲୋକଙ୍କୁ ସାହାଯ୍ୟ କରିବାପାଇଁ ଧନ ଋଣ ଦିଆଯାଏ, ପୁଣି ଅନ୍ୟାନ୍ୟ ଲୋକଙ୍କୁ ଅଧିକ ଋଣ ଦେବାପାଇଁ ସୁଦ ରୂପେ ସଂଗୃହୀତ ଧନ ଗଚ୍ଛିତ ରହେ, ପ୍ରଜା ପୋଷଣ ନିମନ୍ତେ ଜମିଦାରି ପରିଚାଳନ ହୁଏ, ଜନ ସେବା ସକାଶେ ଚାକିରି କରିବାକୁ ହୁଏ ଏବଂ ଜୀବନ ରକ୍ଷାର୍ଥେ ବେତନ ଗ୍ରହଣ କରିବାକୁ ହୁଏ, ପ୍ରତାରିତ ବା ଉତ୍ପୀଡ଼ିତ ବ୍ୟକ୍ତିର ଉପକାର କରିବାପାଇଁ ଓକିଲାତି କରିବାକୁ ହୁଏ ।

ଏହିସବୁ କାର୍ଯ୍ୟ କରିବା ଦ୍ୱାରା ଧର୍ମ କରିବାକୁ ହୁଏ, କିନ୍ତୁ ସାହୁକାର ଧର୍ମ ଛାଡ଼ି ଖାତକର କର୍ମବାଡ଼ିତକ ଅପହରଣ କରିବା ଉଦ୍ଦେଶ୍ୟରେ ବୃଦ୍ଧି କଳନ୍ତରରେ ଯେଉଁ ଋଣ ଦିଆଯାଏ, ପ୍ରଜା ଶୋଷଣ ପୂର୍ବକ ଯେଉଁ ଅତିରିକ୍ତ ରାଜସ୍ୱ ଆଦାୟ କରାଯାଏ, ଉତ୍କୋଚ ରସଦ ଡାଲି ଇତ୍ୟାଦି ଗ୍ରହଣକରି ଯେଉଁ ଚାକରି କରିବାକୁ ହୁଏ ପୁଣି ଫିସ୍‌ଲୋଭରେ ଯେଉଁ ବାଗ୍‌ବିତଣ୍ଡା, ଅଯଥା ବାଦ ଓ ମିଥ୍ୟା ସାକ୍ଷ ସଂଗ୍ରହ କରିବାକୁ ହୁଏ-ଇତ୍ୟାଦି କାର୍ଯ୍ୟରେ ଅଧର୍ମାଚରଣ କରିବାକୁ ପଡ଼େ । ଏହି ସବୁ ଅଧର୍ମ ବିତ୍ତ ବଢେ ବଢୁଛି, କିନ୍ତୁ ଗଲାବେଳେ ଯାଏ ମୂଳ ସହିତ ।

ଅତଏବ ସର୍ବଦା ସର୍ବଥା ସମସ୍ତ ଅବସ୍ଥାରେ ସକଳ କାର୍ଯ୍ୟରେ ଧର୍ମ କରାଯାଇପାରେ ଏବଂ ଅଧର୍ମ ବି କରାଯାଇଥାଏ । ଧର୍ମ କରିବାପାଇଁ କେବଳ ଦେଉଳ ତୋଳାଇବା, ଗୃହତ୍ୟାଗ କରିବା, ବନବାସୀ ହେବା, କିମ୍ବା ସନ୍ନ୍ୟାସ ଅବଲମ୍ବନ କରିବା ଆବଶ୍ୟକ ନୁହେ । ଶାନ୍ତିରେ, ବିପ୍ଳବରେ, ଗାର୍ହସ୍ଥ୍ୟରେ, ସନ୍ନ୍ୟାସରେ, ରାଜ ଖଟରେ କିମ୍ବା ସାମାଜିକଭାବେ, ସବୁଠିରେ ଧର୍ମ ରହିଅଛି । ଧର୍ମ ସକାଶେ କର୍ମ ତ୍ୟାଗ କରିବା କିମ୍ବା କର୍ମଲାଗି ଧର୍ମ ଛାଡ଼ିବା ଅବିବେକତାର କାର୍ଯ୍ୟ । ଧର୍ମେ ରହି ଭାଇ ସବୁକର୍ମ କରି, ଧର୍ମଯୁକ୍ତ କର୍ମକୁ ତ୍ୟାଗ ନହେବ ସରି ।



# ପ୍ରାତଃସ୍ନାନ ମାହାତ୍ମ୍ୟ

ଶରୀର ରକ୍ଷା ସକାଶେ ଭୋଜନ କିପରି ଆବଶ୍ୟକ ତାହା ଶରୀର ଧାରୀ ମାତ୍ରେ ସମସ୍ତେ ଜାଣନ୍ତି । ଶରୀର ପକ୍ଷରେ ସେହି ଆହାର ଅପେକ୍ଷା ସ୍ନାନର ପ୍ରୟୋଜନ ଅଧିକ । ସ୍ନାନ ମଧ୍ୟରେ ସାନ୍ଧ୍ୟସ୍ନାନ ମହୋପକାରୀ । ପ୍ରାତଃସ୍ନାନ ଅଟେ ଅତ୍ୟନ୍ତ ସହଜ, ସରଳ ଓ ସ୍ୱାଭାବିକ ବ୍ୟବସ୍ଥା । ଏହା ସମୟ ସାପେକ୍ଷ, ବ୍ୟୟ ବହୁଳ ବା କଷ୍ଟସାଧ୍ୟ ନୁହେ, ତଥାପି ଅତ୍ୟନ୍ତ ହିତ ଜନକ, ଆରୋଗ୍ୟପ୍ରଦ ଏବଂ ଲାଭକର । ବେଦ ସ୍ମୃତିଶାସ୍ତ୍ର ଆଦିରେ ପ୍ରାତଃସ୍ନାନର ମାହାତ୍ମ୍ୟ ଉଦ୍‌ଘୋଷିତ ହୋଇଛି । କି ବ୍ରାହ୍ମଣ, କି ଶୂଦ୍ର, କି ବାଳକ, କି ବୃଦ୍ଧ ପ୍ରତ୍ୟେକ ଲୋକର ପ୍ରାତଃସ୍ନାନ ଏକାନ୍ତ କର୍ତ୍ତବ୍ୟ, ପୁଣି ଯେଉଁ ମାନେ ପ୍ରାତଃ ସ୍ନାନ କରନ୍ତି ନାହିଁ ସେମାନେ ପାପଭାଗୀ ହୁଅନ୍ତି । ଏହି ବ୍ୟବସ୍ଥା ବେଦାଦି ସମସ୍ତ ଧର୍ମ ଶାସ୍ତ୍ରରେ ଦିଆଯାଇ ଅଛି ।

ପ୍ରତ୍ୟେକ ପ୍ରାଣୀ ଯଥାଜ୍ଞାନ ଓ ଧାରଣା ଅନୁସାରେ ପରମ ପବିତ୍ରାତ୍ମା ପରମେଶ୍ୱରଙ୍କର ପ୍ରଥମେ ଉପାସନା କରନ୍ତୁ, କେବଳ ପବିତ୍ର ଭାବରେ ପବିତ୍ରାତ୍ମା ପରମେଶ୍ୱରଙ୍କର ସ୍ମରଣ, ମନନ, ଧ୍ୟାନ, ଧାରଣା କରିବାକୁ ହୁଏ । ଅପବିତ୍ର ଭାବରେ ପରମେଶ୍ୱରଙ୍କୁ କେହି

କେବେ ସ୍ତୁତି ଉପାସନା ପ୍ରାର୍ଥନା କରିପାରେ ନାହିଁ । ପରମେଶ୍ୱର ପବିତ୍ର ଅଟନ୍ତି, ସେ ଅପବିତ୍ରତାର ବହୁଦୂରରେ । ଆତ୍ମା, ମନ ଓ ଶରୀର ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ । ଶରୀର ନିର୍ମଳ ହେଲେ ମନ ପରିଶୁଦ୍ଧ ହୁଏ, ମନ ପରିଶୁଦ୍ଧ ହେଲେ ଆତ୍ମା ପ୍ରସନ୍ନ ହୁଏ । ଶରୀରକୁ ସର୍ବଦା ସ୍ନାନଦ୍ୱାରା ନିର୍ମଳ ଏବଂ ପରିଶୁଦ୍ଧ କରିବାକୁ ହୁଏ । ଅତଏବ ସନ୍ଧ୍ୟୋପାସନା ପୂର୍ବରୁ ସ୍ନାନକରିବା ଏକାନ୍ତ କର୍ତ୍ତବ୍ୟ । ସ୍ନାନରୁ ସାତ୍ତ୍ୱିକତାର ଉଦ୍ରେକ ହୁଏ, ଦ୍ୱେଷ ହିଂସା କ୍ରୋଧ ମନରୁ ନିବୃତ୍ତ ହୁଏ, ତମୋଗୁଣ ଦୂରୀଭୂତ ହୁଏ । ମଳ ମୂତ୍ରାଦି ଅଶୁଦ୍ଧପଦାର୍ଥ ସ୍ପର୍ଶକଲେ କିମ୍ବା ଚଣ୍ଡାଳାଦି ଦୁଷ୍ଟଜନ ସଂସର୍ଗ କଲେ ଯେପରି ଶରୀର ଅଶୁଦ୍ଧ ହୋଇଯାଏ, ପୁଣି ସେହି ବାହ୍ୟ ଶୌଚ ଦୂର କରିବା ସକାଶେ ସ୍ନାନ କରିବାକୁ ହୁଏ । ସେହିପରି ମନମଧ୍ୟ ଯେତେବେଳେ ହିଂସା, ଦ୍ୱେଷ, ଲୋଭ, ମୋହାଦି ଦୁଷ୍ଟ ଭାବନା ଓ ପର୍ଯ୍ୟାଲୋଚନା ଯୋଗୁଁ କଳୁଷିତ, ଅପବିତ୍ର ହୋଇ ଯାଏ ସେତେବେଳେ ସ୍ନାନକରି ପକାଇଲେ ମନର ପାପ କଳୁଷ ଅନେକ ପରିମାଣରେ ଦୂରୀଭୂତ ହୁଏ, ପୁଣି ମନର ସନ୍ତାପ ଓ ଅଶାନ୍ତି ଦୂରୀଭୂତ ହୋଇ ମନ ଶାନ୍ତ ଓ ପବିତ୍ର ହୁଏ ଏବଂ ଚିତ୍ତ ପ୍ରସନ୍ନ ହୁଏ । ଏଣୁକରି ମନର ଶାନ୍ତି ଓ ପବିତ୍ରତା ରକ୍ଷା କରିବା ସକାଶେ ସ୍ନାନର ପ୍ରୟୋଜନ ।

ଆୟୁର୍ବେଦ ମତ ଅନୁସାରେ ପ୍ରାତଃସ୍ନାନ ଏକାନ୍ତ ଆବଶ୍ୟକ, ଯେହେତୁ ଏହା ଅତ୍ୟନ୍ତ ଆରୋଗ୍ୟ ପ୍ରଦ ଏବଂ ବ୍ୟାଧି ବିନାଶକ । ରାତ୍ରି ଭାଗରେ ପୃଥିବୀ ଲୋକର ଅଭାବ, ଶୈତ୍ୟ ଓ ବାୟୁ ପ୍ରକୋପରୁ ରୁଦ୍ଧ ଗୃହରେ ରହିବାକୁ ହୁଏ, ଶୟନ କାଳୀନ ନିଶ୍ୱାସ ପ୍ରଶ୍ୱାସ ଯୋଗୁଁ ବାୟୁ ମଣ୍ଡଳ ଦୂଷିତ ହୋଇ ଯାଇଥାଏ, ଦୂଷିତ ବାୟୁ ଓ ସ୍ୱେଦ କ୍ଲେଦାଦି ଜନିତ କୀଟାଣୁ ଶରୀରକୁ ଆକ୍ରମଣ କରିଥାନ୍ତି । ଏହି ବିବିଧ କାରଣରୁ ଶରୀର ସଙ୍ଗେ ମନ ରୁଗ୍ଣ, ନିସ୍ତେଜ ଅବସନ୍ନ ଓ ଉଦ୍‌ବିଗ୍ନ ହୋଇ ପଡ଼ିଥାଏ । ସ୍ନାନ କରିବା ମାତ୍ରେ ଏହି ନିସ୍ତେଜତା, ଆଳସ୍ୟ ଉଦ୍‌ବେଗ ସବୁ ଦୂରୀଭୂତହୋଇଯାଏ, ନୂତନ ତେଜ, ଓଜ, ଉତ୍ସାହ, ବଳ, ବୀର୍ଯ୍ୟ, ଶରୀରରେ ସଞ୍ଚାର କରେ ଏବଂ ମନର ସ୍ଫୂର୍ତ୍ତି ବିକଶିତ ହୁଏ । ଏହି ସ୍ନାନର ଆଉ ଏକ ଉପକାର ଅଛି । ନିର୍ମଳ ବାୟୁ ଅଭାବରୁ, ଅଙ୍ଗପ୍ରତ୍ୟଙ୍ଗର ଚଳନାଭାବରୁ, ପୁଣ ଅଧିକ ଉତ୍ତାପ ଯୋଗୁଁ ଉଦର କୋଷରେ ଅନ୍ନର ଅବଶେଷ ଜୀର୍ଣ୍ଣହୋଇ ନପାରି ରହିଥାଏ । ସ୍ନାନ କରିବାମାତ୍ରେ ଉକ୍ତ ଅପରିପକ୍ୱାବଶେଷ ଶୀଘ୍ର ଜୀର୍ଣ୍ଣ ହେବାକୁ ଲାଗେ । ଏହିକଥା ଅନେକଙ୍କ ଶ୍ରୁତଗୋଚର ଓ ନିଜର ଅନୁଭୂତରେ ଆସିଅଛି ଯେ, ଅନେକ ଲୋକ ଯେଉଁମାନେ କି ସୂର୍ଯ୍ୟୋଦୟ ପରେ ମଧ୍ୟ କିଛିକାଳ ଶୋଇରେ ପଡିଥାନ୍ତି, ପ୍ରାତଃସ୍ନାନ କରନ୍ତି ନାହିଁ, ସେମାନେ ସ୍ନାନ କଲାପର୍ଯ୍ୟନ୍ତ ଆଳସ୍ୟ ଓ ତନ୍ଦ୍ରାଯୁକ୍ତ ନିରାନନ୍ଦ ଭୋଗ କରନ୍ତି, ପୁଣି ଅନେକେ ସ୍ନାନ କରିବା ମାତ୍ରେ ସେମାନଙ୍କ କ୍ଷୁଧାର ଉଦ୍ରେକ ହୁଏ । ଅନେକେ କହୁଥାନ୍ତି ଯେ ଏତେବେଳୁଁ ସ୍ନାନ କଲେ ଚଳିବ ନାହିଁ, କାରଣ, ଘରେ ରହିବା ହୋଇନାହିଁ, ଗାଧୋଇ ପକାଇଲେ ଭୋକ ହେବ । ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ ପ୍ରାତଃକାଳୀନ ସ୍ନାନଦ୍ୱାରା ଆଳସ୍ୟ, ତନ୍ଦ୍ରା, ଅବସନ୍ନତା ଦୂର ହୁଏ, ସଙ୍ଗେ ସଙ୍ଗେ ଉତ୍ସାହ ଆନନ୍ଦ ଓ ସ୍ଫୂର୍ତ୍ତି ଜନ୍ମେ, ପୁଣି ଅନ୍ନ ଜୀର୍ଣ୍ଣ ହୋଇ କ୍ଷୁଧା ଜାତହୁଏ ।

ସ୍ନାନପରେ ପ୍ରାୟ ପ୍ରତ୍ୟେକ ଲୋକ ଯେଝା ଜ୍ଞାନ ଓ ଭକ୍ତି ଅନୁସାରେ କିଛି କିଛିଏ ଈଶ୍ୱରୋପାସନା କରନ୍ତି, କେହି ନିର୍ମାଲ୍ୟ କିଛିଏ ସେବାକରେ, କେହି ବା କୃଷ୍ଣବୋଲି ଥରେ ନାମଟା ଉଚ୍ଚାରଣ କରେ । ଏହି ଉପାସନା ଫଳରୁ ଲୋକେ ଯେଝା ଜ୍ଞାନ ଓ ଭକ୍ତି ଅନୁସାରେ ଈଶ୍ୱରାଶୀର୍ବାଦ ଲାଭକରନ୍ତି । ଏହି ଆଶୀର୍ବାଦ ଯୋଗେ ମହାନ୍ ପାପାତ୍ମା ଲୋକ ପାପ କର୍ମ କରିବାକୁ କିଛିଏ କୁଣ୍ଠିତ ହୁଏ । ପୁଣି ପ୍ରାତଃ ସ୍ନାନ ହେତୁ ଆଳସ୍ୟ, ତନ୍ଦ୍ରା ଜଡୁତା, ନିରାନନ୍ଦ ଦୂରହୋଇ ଶରୀର ସୁସ୍ଥ ରହିବା ଯୋଗୁଁ ଏବଂ ମନ ପ୍ରଫୁଲ୍ଲ ପ୍ରସନ୍ନ ରହିବା ଲାଗି ବୁଦ୍ଧି ଓ ବିବେକ ସୂକ୍ଷ୍ମ ଓ ତେଜସ୍ୱୀ ହେବା ଯୋଗୁଁ କାର୍ଯ୍ୟରେ ଅଧିକ ମନ ଲାଗେ । ସୁତରାଂ ଅଳ୍ପ ସମୟରେ ବେଶି କାର୍ଯ୍ୟ କରିପାରି ପାରେ ଏବଂ ଅଧ୍ୟୟନ ଅଧ୍ୟାପନାରେ ସହଜ ମନୋନିବେଶ କରିହୋଇ ପାରେ । ସ୍ନାନାଦି ଶୌଚକ୍ରିୟା କରିସାରି କାର୍ଯ୍ୟରେ ଲାଗିଥିବା ଲୋକ ଅଗାଧୁଆ ଲୋକ ଅପେକ୍ଷା ସାଧାରଣତଃ ଅଧିକ କାମ କରିପାରୁଥିବା ଦେଖାଯାଉ ଅଛି । ରାତ୍ରିଶେଷ ପ୍ରହର କିମ୍ବା ପାଞ୍ଚ ଘଣ୍ଟା ସମୟରେ ଶଯ୍ୟା ତ୍ୟାଗ କରି ଯେଉଁ ଲୋକ ସ୍ନାନ କରିଅଛି, ମଧ୍ୟାହ୍ନବେଳେ କିମ୍ବା ପହରେ ଛ ଘଡ଼ିବେଳେ ତାହାର ଆଉ ସ୍ନାନ କରିବା ଅବଶ୍ୟ ନଥାଏ । ସେହିଲୋକ ନିରୁଦ୍ବିଗ୍ନ ଭାବରେ ଉକ୍ତ ସମୟରେ ଆପଣା କାର୍ଯ୍ୟରେ ଲାଗିଥାଏ । ସ୍ନାନ ସକାଶେ ଯେଉଁ ସମୟତକ ନଷ୍ଟ ହୁଅନ୍ତା ଏବେ ତାହା ବଂଚିଲା ଏବଂ ଉକ୍ତ ସମୟରେ ଅଧିକ କାର୍ଯ୍ୟ କରିବାକୁ ହେଲା । ଆଉ ଏକ କଥା, ସ୍ନାନକରି ନ ଥିବା ଲୋକ ଅନେକ ସମୟରେ ଅନେକ କାର୍ଯ୍ୟରୁ ବଞ୍ଚିତ ରହେ । ଦେବପୂଜନ ବା ହୋମାଦି ଶୁଭାନୁଷ୍ଠାନ ଉପସ୍ଥିତ ହେଲେ କିମ୍ବା କୌଣସି ଭୋଜନର ଆୟୋଜନ ହୋଇଥିଲେ ଅସ୍ନାନିଆଁ ଲୋକମାନେ ବଞ୍ଚିତ ହୁଅନ୍ତି ନାହିଁ ବା ଉପେକ୍ଷିତ ହୁଅନ୍ତି । ପୁଣି ଅଗାଧୁଆ ଲୋକଙ୍କୁ ଅସ୍ପୃଶ୍ୟ ମନେକରି ଅନେକ ଲୋକ ଛୁଅନ୍ତି ନାହିଁ ।

ସ୍ନାନର ସୁଖ—ସ୍ନାନର ସୁଖ ବର୍ଣ୍ଣନାତୀତ, ବିନାନୁଭବରେ ଜଣାଯାଏ ନାହିଁ । ଯେଉଁମାନେ ସ୍ନାନ କରୁଛନ୍ତି ସେହିମାନେହିଁ ସ୍ନାନର ସୁଖ ଜାଣନ୍ତି । ବିନା ଭୋଜନରେ ସୁଦ୍ଧା ସ୍ନାନରୁ ଆରାମ ଓ ସନ୍ତୋଷ ଜାତହୁଏ । ସ୍ନାନଦ୍ୱାରା ଯେପରି ଶରୀର ସତେଜ ଓ ମନ ପବିତ୍ର ହୁଏ ସେହିପରି ମନରେ ମଧ୍ୟ ଏକପ୍ରକାର ଆନନ୍ଦ ପ୍ରମୋଦ ଜାତହୁଏ । ମନର ଏହି ସନ୍ତୋଷ ବା ପ୍ରମୋଦ ହେତୁ ଦେହ ସୁସ୍ଥ ଏବଂ ସବଳ ରହେ ।

ସ୍ନାନ ବିଷୟରେ ଏହିମତ ବାକ୍ୟଅଛି । ଶତେକ କାର୍ଯ୍ୟ ଛାଡ଼ି ଆଗ ଭୋଜନ କରିବ, ସହସ୍ର କାର୍ଯ୍ୟ ତ୍ୟାଗ କରି ସ୍ନାନ କରିବ, ଲକ୍ଷେ ଛାଡ଼ି ପରୋପକାର କରିବ ଏବଂ କୋଟି ସଂଖ୍ୟକ ବିଷୟ ପରିତ୍ୟାଗ କରି ଈଶ୍ୱରୋପାସନା କରିବ । ଏହି ସଂସାରରେ ଦେହଧାରୀ ମାନେ ଆହାରକୁ ମୂଳକରି ଧରିଥାନ୍ତି । ସେହି ଆହାର ଅପେକ୍ଷା ଗୁରୁତର ଓ ଶ୍ରେଷ୍ଠତର ଅଟେ ସ୍ନାନ । ସ୍ନାନ ଓ ଭୋଜନ ମଧ୍ୟରେ ନିର୍ବାଚନ କରିବାକୁ ହେଲେ ଜ୍ଞାନୀ ଲୋକମାନେ ସ୍ନାନକୁ ଆଦର କରନ୍ତି ବ୍ରାହ୍ମଣମାନେ ସ୍ନାନ କରନ୍ତି ଏବଂ ଶୂଦ୍ରମାନେ ଭୋଜନ ପ୍ରିୟ ଦେଖାଯାନ୍ତି ।

ଯେଉଁମାନେ ସ୍ନାନ ତତ୍ପର ନୁହନ୍ତି, ଦ୍ୱିଜ ବୋଲାଇଲେ ମଧ୍ୟ ସେମାନେ ଅସନ୍ଧ୍ୟ ସମାଜ। ପ୍ରାତଃସ୍ନାନକୁ ତୀର୍ଥ ସ୍ନାନ କହି । ଯେଉଁମାନେ ନିତ୍ୟ ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟା ତ୍ୟାଗ କରି ସ୍ନାନକରନ୍ତି, ସେମାନେ ତୀର୍ଥସ୍ନାନ ଫଳ ଲାଭକରନ୍ତି । ସେମାନଙ୍କ ପକ୍ଷରେ ତୀର୍ଥସ୍ନାନ ଅନାବଶ୍ୟକ । ଯେଉଁମାନେ ନିତ୍ୟନିୟମ ପଦ୍ଧରେ ବା ଦୁଇପହର ପର୍ଯ୍ୟନ୍ତ ସ୍ନାନ କରନ୍ତି ନାହିଁ, ଦୁଇ ଚାରି ବର୍ଷରେ ଥରେ ତୀର୍ଥଯାତ୍ରା କରି ଗଙ୍ଗା ଯମୁନା ନଦୀରେ ବୁଡ଼ପାରି ବୁଡ଼ିଯାଆନ୍ତି, ସେମାନେ ପ୍ରାତଃସ୍ନାନ ଫଳ ହରାଇ ଥାନ୍ତି ଏବଂ ତୀର୍ଥଫଳ ମଧ୍ୟ ଭୋଗକରି ପାରନ୍ତି ନାହିଁ ।

କେହି କହନ୍ତି ଯେ ପ୍ରାତଃସ୍ନାନ କେବଳ ଭୋଗୀ, ଯୋଗୀ, ବା ବ୍ରହ୍ମଚାରୀମାନଙ୍କୁ ପାଏ, ବ୍ୟବସାୟୀ ଲୋକମାନେ ଭୋରରୁ ଉଠି ଗାଧୋଇଲେ ଚଳି ପାରିବେ ନାହିଁ । ଏହି କଥା ଠିକ ନୁହେ, ନିତାନ୍ତ ଅମୂଳକ । କି ଯୋଗୀ, କି ରୋଗୀ, କି ବ୍ୟବସାୟୀ, କୃଷକ, ବଣିକ, ବାହକ ଇତ୍ୟାଦି ଲୋକପକ୍ଷରେ ପ୍ରାତଃସ୍ନାନ ସହଜସାଧ୍ୟ ସୁଖଧାଜନକ ଏବଂ ହିତକାରକ । ନିଦରୁ ଉଠି ସକାଳୁ ମୁହଁ ନ ଧୋଇ କେହି କେବେ ରହିପାରିବେ କି ? ହସ୍ତ ପାଦ ଧୌତ, ମୁଖ ପ୍ରକ୍ଷାଳନ ଓ ଦନ୍ତଧାବନ କରି କେଉଁ ଲୋକ ସୁଖ ବୋଧ ନ କରେ ? ଯଦି ମୁଖ ପ୍ରକ୍ଷାଳନ ଓ ଦନ୍ତ ମାର୍ଜନ ହେଉ ଏତେ ସୁଖ ଲାଭ ହୁଏ ତେବେ ସର୍ବାଙ୍ଗ ସ୍ନାନ ଦ୍ୱାରା ଅଧିକ ସୁଖ ସ୍ୱଚ୍ଛନ୍ଦ୍ୟ ଓ ପବିତ୍ରତା ବୋଧହୁଏ, ଏହା କିଏ ବା ଅସ୍ୱୀକାର କରିପାରେ ? ଗୁରୁ, ପୁରୋହିତ, ଶିକ୍ଷକ, ଛାତ୍ର, ଲେଖକ, ପାଠକ ଇତ୍ୟାଦି ମାନସିକ କାର୍ଯ୍ୟ କରି ମାନଙ୍କ ପକ୍ଷରେ ପ୍ରାତଃସ୍ନାନ ଯେ ଅପରିହାର୍ଯ୍ୟ ବିଧି, ଏହାବୋଲି ବାହୁଲ୍ୟମାତ୍ର । କୃଷି ଆଦି ବ୍ୟବସାୟୀ ମାନଙ୍କ ପକ୍ଷରେ ଏହା ଅତ୍ୟନ୍ତ ଉପାଦେୟ । କୃଷକର ଧାନଭୂଣା ଅନୁକୂଳକୁ ମହନ୍ତର ବୁଢ଼ା ଯାଏ । ମହନ୍ତର ହରି କୃଷକ ଅତି ପ୍ରଭାତରୁ ଉଠି ସ୍ନାନସାରି କ୍ଷେତକୁ ଧାନ ବୁଣିବାକୁ ଯାଏ, ସମସ୍ତ ଶୁଭଦାତା ପରମେଶ୍ୱରଙ୍କୁ ଚନ୍ଦ୍ରାକରି ହୃଷ୍ଟ ମନରେ ପ୍ରଫୁଲ୍ଲ ହୃଦୟରେ କୃଷି କ୍ଷେତ୍ରରେ କାର୍ଯ୍ୟ କରେ । ସେହିପରି ପ୍ରାତଃସ୍ନାନ କୃଷକ ପକ୍ଷରେ ନିତ୍ୟ ମହନ୍ତର ହୁଏ, ନିତ୍ୟ ଈଶ୍ୱରାଶୀର୍ବାଦ ଲାଭକରି ନିଜ କର୍ମ କ୍ଷେତ୍ରରେ ପ୍ରବୃତ୍ତ ହେବାକୁ ହୁଏ । କେହି କହୁଥାନ୍ତି ଯେ ମୋ ଦେହରେ ପ୍ରାତଃସ୍ନାନ ଯାଏନାହିଁ, ସହେନାହିଁ ଇତ୍ୟାଦି । ତାହାଙ୍କର ଏହା କେବଳ ନିତାନ୍ତ ଭ୍ରାନ୍ତ ଧାରଣା, ଦୁର୍ବୃଦ୍ଧି, ଅଳସ୍ୟ ପରାୟଣ ଲୋକର କଥା, କେହି କହିବ, ସୂର୍ଯ୍ୟାଲୋକ ମୋଦେହରେ ଯାଏନାହିଁ, ଅନ୍ନଭୋଜନ ମୋ ଦେହରେ ସହେନାହିଁ ବିଦ୍ୟାଶିକ୍ଷା କରିବା ଆମଘରେ ସୁହାନାହିଁ, ଏହିକଥାପରି ପ୍ରାତଃସ୍ନାନ ଦେହରେ ନ ଯିବା ମଧ୍ୟ ଏକକଥା । ଏହି ମହୋପକାର ଜନକ ବ୍ୟବସ୍ଥା ଯାହାପ୍ରତି ଖଟେନାହିଁ, ସେ ନର ନୁହେ ବାନର ନୁହେ, କିଂଭୂତ କିମାକାର ଜନ୍ତୁ ବିଶେଷ । ଏହି ପ୍ରକୃତ ଛଡ଼ା ଲୋକର କଥା ଛାଡ଼ି । ଏହିପରି ଯେଉଁ ଆଡ଼ୁ ଦେଖ ଶାରୀରିକ, ମାନସିକ, ବୈଷୟିକ, ଆତ୍ମିକ, ବ୍ୟକ୍ତିଗତ ବା ସାମାଜିକ ସକଳ ଭାବରେ ସବୁ ଲୋକ ପକ୍ଷରେ ପ୍ରାତଃସ୍ନାନ ଶ୍ରେୟସ୍କର ।

# ଫଳାହାର

ଫଳାହାର ଅଟେ ସୂକ୍ଷ୍ମପାଚକ ଏବଂ ସାତ୍ତ୍ୱିକ ଆହାର ପୁଣି ସ୍ୱାସ୍ଥ୍ୟକର, ଆରୋଗ୍ୟକର ଏବଂ ବଳବୀର୍ଯ୍ୟ ଉତ୍ପାଦକ । ଆଉ ଭାତ, ରୁଟି, ଡାଲି, ବେସର, ଆମ୍ବିଳ, ମତ୍ସ୍ୟ, ମାଂସ ଇତ୍ୟାଦି ଖାଦ୍ୟରେ ଲୋକେ ଏତେଦୂର ଅଭ୍ୟସ୍ତ ହୋଇଛନ୍ତି ଯେ ଫଳାହାର ଏକା ବେଳକେ ପାଶୋରି ପକାନ୍ତି, ପୁଣି ଫଳାହାରରେ ତୃପ୍ତି ଲାଭ କରି ପାରନ୍ତି ନାହିଁ । ଏକାଦଶୀ, ଅମାବାସ୍ୟା, ଚତୁର୍ଦ୍ଦଶୀ, ସଂକ୍ରାନ୍ତି ଇତ୍ୟାଦି ବିଶେଷ ତିଥିର ବିଧାନ ନଥିଲେ ଅନେକ ଲୋକ, ବୋଧହୁଏ, ଜୀବନରେ ଥରେ ହେଲେ ଫଳାହାର କରି ରହି ପାରନ୍ତେ ନାହିଁ । ଫଳାହାରକୁ ଜଳଖିଆ ମଧ୍ୟ କହନ୍ତି । ଏହା ଅଟେ ସ୍ୱଳ୍ପାହାର । ଯେଉଁମାନେ ସ୍ୱଳ୍ପାହାର ଚାହାନ୍ତି ସେମାନେ ଫଳାହାର ବା ଜଳଖିଆ କରନ୍ତି ।

ଖିରି ଖେଚେଡ଼ି ଭାତ ଡାଲି ବେସର ଇତ୍ୟାଦିକୁ ଅନ୍ନ କୁହାଯାଏ । ବିଶେଷତଃ ଭାତକୁ ଅନ୍ନ କହନ୍ତି, ଯେହେତୁ ଭାତ ହିଁଏ ଆହାରର ପ୍ରଧାନ ଭାଗ ଏବଂ ବୃହତ୍ତର ଅଂଶ । ଉତ୍କଳ ଅଞ୍ଚଳରେ ଚାଉଳ ଯେପରି ନିତ୍ୟଖାଦ୍ୟ ପଦାର୍ଥ, ପଶ୍ଚିମାମାନେ ସେହିପରି ଗହମ ଖାଆନ୍ତି । ସାଧାରଣତଃ ଯାହାକୁ ଜଳ ଲବଣ ମିଶାଇ ଅଗ୍ନିତାପରେ ସିଦ୍ଧ କରନ୍ତି ତାହାକୁ ଅନ୍ନ ବା ସଖଡ଼ି ସାମଗ୍ରୀ କହନ୍ତି । ଏହାଛଡ଼ା ଅନ୍ୟସକଳ ପଦାର୍ଥ ଜଳଖିଆ ବା ଫଳାହାର ଅନ୍ତର୍ଭୁକ୍ତ । ପାଚୁଆ, ପୋଳ, ଚକୁଳି, କାକରା, ମାଳପୁଆ, ଲଡ଼ୁ, ପୁରି, କଚୁରି ଇତ୍ୟାଦି ମଧ୍ୟ ଜଳଖିଆରେ ଯାଏ । ଧାନକୁ ଭାଜି ଲିଆ କରି ବା ଚାଉଳକୁ ଭୁଞ୍ଜି କରି ଚକଟା କରି, ସେ ସବୁ ଆଉ ଅନ୍ନ ବୋଲାଏ ନାହିଁ, ଜଳଖିଆ ନାମରେ କଥିତ ହୁଏ । ଜଳଖିଆ ବା ଫଳାହାର ସ୍ୱଳ୍ପ, ସୂକ୍ଷ୍ମ ଏବଂ ଆରୋଗ୍ୟକର ହେବା ଉଚିତ, କିନ୍ତୁ ଲୋକେ ବିଳାସିତାର ଅଭ୍ୟାସ କବଳରେ ପଡ଼ି ଏହି ପବିତ୍ର ଆହାରକୁ ମଧ୍ୟ ବିକୃତ କରି ପକାଇ ଅଛନ୍ତି, ଯେହେତୁ ଆରିସା, କାକରା, ମୋଦକ, ମୋହନଭୋଗ ଇତ୍ୟାଦି ଗରିଷ୍ଠ, ଗୁରୁପାକ ପଦାର୍ଥକୁ ନେଇ ଏଥି ଭିତରେ ଭରିଦେଇ ଅଛନ୍ତି । ପ୍ରକୃତ ଫଳାହାର ବା ଜଳଖିଆ କାହାକୁ କହି ? ଯେ କୌଣସି ଫଳ ବା ମୂଳ କଞ୍ଚାହେଉ, ପାଚିଲା ହେଉ ବା ସିଝାଇ କରିହେଉ ଖାଇବାକୁ ହୁଏ, ଦୁଧ ଟିକେ ପିଇବାକୁ ହୁଏ, ବା ନଡ଼ିଆ ଟିକିଏ ପାଣି କରି ପିଇବାକୁ ହୁଏ, ଏହାକୁ କହନ୍ତି ଫଳାହାର । ଫଳାହାରୀମାନଙ୍କୁ ଫଳ ନମିଳିବା ଏଭଳି କଥା ନାହିଁ । ବର୍ଷ ତମାମ୍ ଯେ କୌଣସି ହେଲେ ଫଳ ମୂଳ, ଫୁଲ, ପତ୍ର ଶାକ ସବୁ ମିଳିବ । ଯେ ଋତୁରେ ସେ ଫଳ ମିଳିବ; ନଡ଼ିଆ, କଦଳୀ, ପଣସ, ଆମ୍ବ, ଜାମୁ, କମଳା, କରୁଣା, ଅଙ୍ଗୁର, କନ୍ଦମୂଳ ବାଇଗଣ କାକୁଡ଼ି, ଜନହି, ପୋଟଳ, କଲରା, ତୋରଡ଼ା, ଭେଣ୍ଡି, ଜାହ୍ନି ଇତ୍ୟାଦି, ଯେଉଁ କାଳେ ଯେଉଁ ଫଳ ଫଳେ । ଶାଗ, ପରିବା, ଫଳମୂଳ ଇତ୍ୟାଦି ଉଦ୍ଭିଦ ହିଁ ଜୀବର ସ୍ୱାଭାବିକ ଆହାର, ଜୀବ କେବେହେଁ ଜୀବର ଆହାର ହେବା ଉଚିତ ନୁହେଁ । ପ୍ରାଣୀମାନେ ଯେତେ ଉଚ୍ଚଶ୍ରେଣୀ ଭୁକ୍ତ ହୁଅନ୍ତି, ଆମିଷ ବା ଜୀବାହାର ସେତେ ପରିମାଣରେ ପରିତ୍ୟାଗ କରନ୍ତି । ବିରାଡ଼ି, କୁକୁର, ବାଘ, ଭାଲୁ ଇତ୍ୟାଦି ନୀଚ ଶ୍ରେଣୀର ଜନ୍ତୁମାନେ ଆପଣା ଜୀବନ ପାଇଁ

ଜୀବହତ୍ୟା କରନ୍ତି, କିନ୍ତୁ ଉଚ୍ଚ ମାନବ ଜାତି ପକ୍ଷରେ ଜୀବପାଇଁ ଜୀବହତ୍ୟା କରିବା ଆବଶ୍ୟକ ହୁଏ ନାହିଁ । ମାନବ ଜାତି ଅନ୍ୟାନ୍ୟଜନ୍ତୁ ଅପେକ୍ଷା ଅଧିକ ବୁଦ୍ଧିମାନ, ଅଧିକ ମେଧାବାନ୍ । ମାନବ ଜାତି ଯଦି ଏହିବୁଦ୍ଧି ଓ ବିବେକ ସହିତ ଆପଣା ପୂର୍ବବଂଶ ବା ନର ଜାତିର ଆହାର ପ୍ରଣାଳୀର ରକ୍ଷା କରିଥାନ୍ତେ ତେବେ ମାନବ ଜାତି ଉତ୍ତରୋତ୍ତର ଉଚ୍ଚଜାତି ହୋଇଥାନ୍ତା । କିନ୍ତୁ ଅବନତିର ବିଷୟ, ଜଗତର ମାନବ ଜାତି ବ୍ୟାଘ୍ର, ଭଲ୍ଲୁକାଦି ନୀଚ, ହିଂସ୍ର ଜନ୍ତୁପରି ଆହାର କରନ୍ତି ।

ଉଦ୍ଭିଦ ଅଟେ ଉତ୍କୃଷ୍ଟ ଖାଦ୍ୟ ପଦାର୍ଥ କିନ୍ତୁ ଉଦ୍ଭିଦ ଜାତି ପଦାର୍ଥକୁ ଅନ୍ୟାନ୍ୟ ପଦାର୍ଥ ସଂଯୋଗରେ ସିଦ୍ଧକରି ତାହାକୁ ବିକୃତ କରି ଦିଆଯାଏ । ଏହାହିଁ ଆମ୍ଭମାନଙ୍କର ଭାତ ଡାଲି, ମହୁର, ଶାକରାଶି ଇତ୍ୟାଦି । ସ୍ୱାସ୍ଥ୍ୟୋନ୍ନତି ସାଧନ କାମନାରେ ପ୍ରତ୍ୟହ ଏକ ପ୍ରକାର ଅନ୍ନ ନଖାଇ ସମୟେ ସମୟେ ଅନ୍ନ ଭିନ୍ନ କରିବାକୁ ହୁଏ, ଯଥା, ଭାତ ନଖାଇ ଲିଆ ହୋଇଡା, ଖିର ବା ପାଲୁଅ ଖାଆନ୍ତି । ପୁଣ୍ୟ ପର୍ବ ଓ ତିଥି ବିଶେଷରେ ଯେତେବେଳେ ଏହିପରି ଅନ୍ନ ଭିନ୍ନ କରାଯାଏ, ଏଥିକି ମଧ୍ୟ ଜଳଖିଆ ବା ଫଳାହାର କହନ୍ତି । ଏହି ଭିନ୍ନ ଅନ୍ନର ସ୍ୱଳ୍ପତା ଏବଂ ସୂକ୍ଷ୍ମତାହେତୁ ଏହାକୁ ଫଳାହାର ବା ଜଳଖିଆ କୁହାଯାଏ । କିନ୍ତୁ ପ୍ରକୃତ ଦେଖାଯାଏ ଯେ ଏଥିରେ କେବଳ ଫଳାହାର ବା ଜଳପାନର ନାମମାତ୍ର ଅଛି । ବସ୍ତୁତଃ ଏହା ଅନେକ ସମୟରେ ଅଧିକରୁ ପୁଣି ଗୁରୁପାକ ଥାଏ ।

ଜଳପାନ ବା ଫଳାହାର ଅଟେ ସାତ୍ତ୍ୱିକ ଏବଂ ପବିତ୍ର ଆହାର । ଉପବାସ ଦିନରେ ଏହି ଆହାରର ବ୍ୟବସ୍ଥା ହୋଇଅଛି । ଈଶ୍ୱରଙ୍କ ନିକଟରେ ବାସ କରିବାହିଁ ଉପବାସ । ଈଶ୍ୱରଙ୍କ ସମୀପରେ ବାସ କରିବା ଅର୍ଥାତ୍ ବ୍ରହ୍ମଚିନ୍ତନ କରିବା ବେଳେ ମନକୁ ବିଷୟ ଭ୍ରମଣରୁ ଦୂରରେ ରଖିବାକୁ ହୁଏ, ରାଜସିକ ଉଗ୍ରତା ଓ ତାମସିକ ଜଡ଼ତ୍ୱରୁ ନିବୃତ୍ତି ସାଧନ କରିବାକୁ ହୁଏ, ଏଣୁକରି ଉତ୍ତେଜକ, ଅବସାଦଜନକ, ନିଦ୍ରାତନ୍ଦ୍ରାପ୍ରଦ ଆହାର ପରିତ୍ୟାଗ କରିବାକୁ ହୁଏ । ଅତଏବ ଫଳାହାର, ଜଳଖିଆ, ପୟଃପାନ ଇତ୍ୟାଦି ସ୍ୱଳ୍ପସୂକ୍ଷ୍ମ ଆହାରକୁ ଉପବାସ କହନ୍ତି । ଉପବାସ କରି ନପାରିଲେହେଁ ଯେଉଁ ଲୋକ ଫଳାହାର ଇତ୍ୟାଦି କରନ୍ତି, ତାହାଙ୍କର ସେତେବେଳେ ଉପବାସ ହେଲାବୋଲି କହନ୍ତି । କିଛି ନଖାଇ ରହିବାକୁ ମଧ୍ୟ ଉପବାସ କହନ୍ତି । କେହିଲୋକ ଉପବାସୀ ହୋଇ ନଥିଲେହେଁ ଖାଇବାକୁ କିଛି ପାଇ ନପାରିବା ଦିନ ଉପବାସ ହେଲାବୋଲି କୁହାଯାଏ । ବର୍ତ୍ତମାନ ଏପରି ଅବସ୍ଥା ଉପସ୍ଥିତ ଅଛିଯେ, ଚୁଡ଼ା ଚକଟା, ଖଇଦହି, ଖିରି ବାଟିଗ, ପଣ୍ଡା ଲଡ଼ୁ, ଇତ୍ୟାଦି ହୁଏ ଫଳାହାର; ପୁଣି ମାମୁଲି ଅନ୍ନ ଭିନ୍ନ କରିଦେଇ ବେଶି, ବହୁ ମୂଲ୍ୟବାନ ଏବଂ ଗୁରୁପାକ ଦ୍ରବ୍ୟ ଖାଇବାହିଁ ହୁଏ ଉପବାସ ।

ଲୋକେ ଆମିଷ ଲାଳସାରେ ପଡ଼ିଥାନ୍ତି, ବିବିଧ ଅନ୍ନ ବ୍ୟଞ୍ଜନାଦି ଅନ୍ନମଦରେ ଭୁଲିଥାନ୍ତି, ଫଳାହାର କରିବାକୁ ଚାହାନ୍ତି ନାହିଁ, ସାମାନ୍ୟ ସ୍ୱଳ୍ପ ଜଳ ବା ଫଳରେ ତୃପ୍ତ

ହୁଅନ୍ତି ନାହିଁ, ସମସ୍ତେ କ୍ରମେ ଏମାନଙ୍କୁ ବାଧ୍ୟକରି ଫଳାହାର କରାଇବାକୁ ହୁଏ । ଏପରି ଆହାର ଦ୍ୱାରା ମନର ସଂଯମ କରାଯାଏ । ପୁଣ୍ୟ ପର୍ବାଦ ତିଥି ବିଧାନ ସୃଷ୍ଟି ଦ୍ୱାରା ଏହି ଆହାରର ନିୟମ ଓ ଯଥାଯୋଗ୍ୟ ପରିବର୍ତ୍ତନ କରାଯାଏ । ପଞ୍ଜିକାର ଏହା ଏକ ମହତ୍ ଉପାଦେୟତା— ପର୍ବ ପାଳନରେ ତିଥି ଭେଦରେ ଏହି ଆହାର ଅଭ୍ୟାସ କରାଯାଏ । ପାଞ୍ଜିରେ ଏତେ ମେଘଅଛି କିନ୍ତୁ ଗୃହୀ କୁଳ କାଳେ ଟୋପେ ଜଳ ପାଆନ୍ତି ନାହିଁ । ସେ ଯାହାହେଉ, କିନ୍ତୁ ତିଥି ବିଧାନ ଦ୍ୱାରା ଲୋକଙ୍କର ଏକ ଦଗରେ ଉପକାର ହୁଏ ।

ସ୍ୱଳ୍ପ ସାମାନ୍ୟ ସାଦା ମିଠା ଆହାର ପୂର୍ବକ ରସନେନ୍ଦ୍ରିୟ ଲାଳସା ଦମନ କରାଯାଇ ପାରେ । ଏହି ବିଷୟରେ ଅମ୍ଭେମାନେ ବାରମ୍ବାର ଫଳାହାର ଯୋଗାଡର ପ୍ରସ୍ତାବ କରୁଁ କିନ୍ତୁ ସ୍ତ୍ରୀଲୋକେ ଆମକଥା ବୁଝନ୍ତିନାହିଁ, ଏହି ଅନୁରୋଧ ରକ୍ଷା କରିବାରେ କୁଣ୍ଠ କରନ୍ତି । ଯେତେବେଳେ ଏପରି ଆହାର କରିବା ତିଥିର ବିଧାନ ବୋଲି କୁହାଗଲା, ସେତେବେଳେ ଆନନ୍ଦ ଉତ୍ସାହ ସହକାରେ ଫଳାହାର ବା ଅନାହାରର ଯୋଗାଡ କରିଦେଉଅନ୍ତି । ଆଉସବୁ ଯୋଗ୍ୟପାଠ ତେଣେଥାଉ ପାଞ୍ଜିଖଣ୍ଡେ ଆଣି ଘରେ ରଖିବା ପାଇଁ ମାଇପିଲୋକ ଅନୁରୋଧ କରନ୍ତି, କିନ୍ତୁ ଫଳାହାର ବଦଳରେ ସ୍ତ୍ରୀଲୋକମାନେ ଗରଷୁ ପିଠାପଣା ତିଆରି କରନ୍ତି ଏବଂ ପୁରୁଷମାନେ ପୂର୍ଣ୍ଣ ଆହାରକରି ଉପବାସ ନାମରେ ପର୍ବ ପାଳନ ବିଧିରକ୍ଷା କରନ୍ତି ।

ଏପରି କର୍ମକାଣ୍ଡର ପରିଣାମ ଫଳ ହୁଏ ଇନ୍ଦ୍ରିୟ ସଂଯମ । ଏପରି ନୈମିତ୍ତିକ କର୍ମ ସକାଶେ ଅନେକ ଦିନ ଏକାହାର, ସ୍ୱଳ୍ପାହାର ଏବଂ ଅନାହାର କରିବାକୁ ହୁଏ । ବର୍ଷରେ ଅନ୍ତତଃ ପ୍ରାୟ ତିନିମାସ ପାଇଁ ଉପବାସାଦି ଅନେକ ବ୍ୟବସ୍ଥା ବିଧିବଦ୍ଧ ହୋଇଅଛି । ୨୪ ଏକାଦଶୀ, ଷଡ ଜୟନ୍ତୀ, ଅମାବାସ୍ୟା, ସଂକ୍ରାନ୍ତି ଇତ୍ୟାଦି ତିଥିମାନଙ୍କରେ ନାନାବିଧ କର୍ମ କାଣ୍ଡ ସୃଷ୍ଟି ହୋଇଅଛି । କେବେ ଅନ୍ନ ବଦଳାଇବାକୁ ହୁଏ ଅର୍ଥାତ୍ ଭାତ ଡାଲି ବଦଳରେ ଖିରି, ଖେଚଡି କରିବାକୁ ହୁଏ, କେବେ କେବଳ ପୟଃପାନ କରିବାକୁ ହୁଏ, କେବେ ଫଳାହାର କରିବାକୁ ହୁଏ, କେବେ ଆମିଷ ତ୍ୟାଗ କରିଦେବାକୁ ହୁଏ, କେବେ କେବେ ଲୁଣ, ମରିଚ ପିଆଜ, ରସଣ ଖାଇବାକୁ ହୁଏନାହିଁ, କେବେ ହବିଷ୍ୟ କରି ଓଳିଟେ ମାତ୍ର ଖାଇବାକୁ ହୁଏ, କେବେ ରାତିବେଳେ ଭୋଜନ କରାଯାଏ ନାହିଁ, କେବେ ବା ଦିନଯାକ ନିରାହାର ରହିବାକୁ ହୁଏ ଇତ୍ୟାଦି ବ୍ୟବସ୍ଥା କରଯାଇ ଅଛି । ଏହି ସମସ୍ତ ବିଧାନମାନ ପାଳନ କରିବା ଦ୍ୱାରା ଜିହ୍ୱା ଲାଳସା କ୍ରମଶଃ ପରିତ୍ୟକ୍ତ ହୁଏ ଏବଂ ଇନ୍ଦ୍ରିୟ ସଂଯମ ସକାଶେ ଶକ୍ତି ଜାତହୁଏ, ଶରୀର ସୁସ୍ଥ ଏବଂ ସବଳହୁଏ, ଯେହେତୁ ଅତିରିକ୍ତ ଏବଂ ଅଯଥା ଆହାର ଅଭାବରୁ ଶରୀରରେ ଆଧିଭୌତିକ ପୀଡା ଉଣାହୁଏ, ସୁତରାଂ ପରିଣାମରେ ମନ ପବିତ୍ର ଓ ପ୍ରସନ୍ନ ରହେ ପୁଣି ଈଶ୍ୱରୋପାସନାର ଉପଯୁକ୍ତ ହୁଏ ।

ଏହି ଶରୀର ଅଟେ ରୋଗର ଆକର ପୁଣି ଏହି ଶରୀର ଅଟେ କର୍ମକ୍ଷେତ୍ର ଏବଂ ଜୀବାତ୍ମାର ପବିତ୍ର ମନ୍ଦିର । ଆହାର ଯେତେବେଳେ ଅତିରିକ୍ତ, ଅନିୟମିତ ବା ଅସାର ହୁଏ, ସେତେବେଳେ ଶରୀର ହୁଏ ରୋଗର ଆକର । ପୁଣି ଆହାର ଯେତେବେଳେ ପରିମିତ, ନିୟମିତ, ସୂକ୍ଷ୍ମ ଏବଂ ସାରବିଶିଷ୍ଟ ହୁଏ ସେତେବେଳେ ସେହି ଶରୀର ହୁଏ ଜୀବର ପବିତ୍ର କର୍ମକ୍ଷେତ୍ର । ଅତଏବ ଆହାରର ବିଶୁଦ୍ଧତାରେ ଶରୀରର ସୁରକ୍ଷା ହୁଏ । ହିନ୍ଦୁ ସମାଜର ସମସ୍ତ କର୍ମକାଣ୍ଡର ଉଦ୍ଦେଶ୍ୟ ଅଟେ ସଂଯମ ଓ ସାଧନା । ଏହି ସଂଯମ ଓ ସାଧନା ଆହାର ଉପରେ ବହୁ ପରିମାଣରେ ନିର୍ଭର କରେ । ଅତଏବ ବିଶୁଦ୍ଧ ପରିମିତ ଆହାର ସର୍ବଥା ବାଞ୍ଛନୀୟ ।



## ଯୋତା ଭିତରେ ଜଗତ

ସେ ଦିନ ମୋ ଯୋତା କାମୁଡିଲା, ଛାଡିଦେଇ ଆସିଲି, ହିଡ଼ିକିଗଲା । ପୁଣି ପାଦରେ ବ୍ରଣ ହେବାରୁ ଅନ୍ୟପ୍ରକାର ଆଉ ଏକ ଯୋତା ଲଗାଇ ପାରିଲିନାହିଁ । ଯୋତା ନଥିବାରୁ ଚାଲିବାକୁ କଷ୍ଟ ହୁଏ । ପ୍ରଶସ୍ତ ରାସ୍ତା ମଧ୍ୟ ଆବର୍ଜନା ପୂର୍ଣ୍ଣ ଓ କଣ୍ଟକମୟ ବୋଧ ହୁଏ । ଆମ ଦେଶର ଯୋତା ବ୍ୟବହାର ରୀତି ପୃଥକ୍ । ଆମ ଦେଶରେ ଘର ଭିତରେ ଯୋତା ବ୍ୟବହାର କରନ୍ତି ନାହିଁ । ଦାଣ୍ଡକୁ ଆସି ବାହାରେ ଯୋତା ଲଗାନ୍ତି । ପୁଣି ଅନେକ ନୈଷ୍ଠିକ ବ୍ୟକ୍ତିଙ୍କ ମତରେ ଏହା ଗୋଟାଏ ଅପବିତ୍ର, ଅସ୍ପୃଶ୍ୟ ପଦାର୍ଥ । କିନ୍ତୁ ଇଂରାଜୀ ଶିକ୍ଷାରେ ଅନେକଙ୍କର ରୀତି ବଦଳି ଯାଇଅଛି । ଏମାନେ ଘରେ ବାହାରେ ସର୍ବଦା ଯୋତା ପିନ୍ଧନ୍ତି । ଘର ବ୍ୟବହାର ସକାଶେ କୋହଳର ପୃଥକ ଯୋତା ଥାଏ, ଘର ବାହାର ସର୍ବତ୍ର ଚର୍ମମୟ ହୋଇଥିଲା । କିନ୍ତୁ ଆଜି ଘରେ ନାହିଁ କି ବାହାରେ ନାହିଁ । ଚତୁର୍ଦ୍ଦିଗ ଶୂନ୍ୟ । ମାଟି, ଚୋଡ଼, ବାଲି, ପଥର, ଗୋବର, କାଦୁଅ ଇତ୍ୟାଦି ସାମାନ୍ୟ ପଦାର୍ଥମାନେ ପାଦକୁ ଆକ୍ରମଣ କରିବାକୁ ଲାଗିଲେ ।

ଯୋତା ଭିତରେ ସମସ୍ତ ଜଗତ ଚର୍ମାବୃତ । ଯୋତା ପିନ୍ଧିବା ବେଳେ ସମସ୍ତ ପୃଥିବୀ ଚର୍ମାବୃତ ଥିବା ପରି ଲାଗେ । ପୃଥିବୀର ଖାଲ, ଢିପ, କଣ୍ଟା, ଖଣ୍ଡ, କଠିନତା, କୋମଳତା ଓ ଶୀତ ଉଷ୍ଣ ସକଳ ଅବସ୍ଥା ଧରାଯାଇ ପାରେନାହିଁ । ଯୋତା ବାହାର କରିଦେଇ ଯେତେବେଳେ ଚାଲିବାକୁ ହୁଏ, ସେତେବେଳେ ଜଗତର ବିଭିନ୍ନ ଅବସ୍ଥାର ଅନୁଭବ ଉପଲବ୍ଧି କରିବାକୁ ହୁଏ । ସେହିପରି ଉଚ୍ଚ ଅବସ୍ଥାପନ୍ନ ଲୋକମାନେ ନୀଚ ଶ୍ରେଣୀ ଲୋକର ଅବସ୍ଥା ହୃଦୟଙ୍ଗମ କରି ପାରନ୍ତିନାହିଁ । ଦୁଃଖୀ ଲୋକର ମନୋବେଦନା ସୁଖୀ ଲୋକ ବୁଝି ପାରନ୍ତି ନାହିଁ । କୌଣସି ଲୋକ ଏକ ଅବସ୍ଥାରେ ଥିଲେ ଅପର ଅବସ୍ଥାର କଥା ଜାଣି ପାରନ୍ତିନାହିଁ । ଅର୍ଥାତ୍ ଏକ ଅବସ୍ଥାରେ ନିମଗ୍ନ ରହିଲେ ଅପର ଅବସ୍ଥା ସମ୍ୟକ୍

ପ୍ରକାରେ ହୃଦୟଙ୍ଗମ କରିପାରି ପାରେନାହିଁ । କୌଣସି ଅବସ୍ଥାରେ ଏକାନ୍ତ ନିମଗ୍ନ ରହିବାହିଁ ଉକ୍ତ ଅବସ୍ଥା ପ୍ରତି ଆସକ୍ତି । ଆସକ୍ତି କଳଙ୍କିତ ହୃଦୟରେ ପ୍ରକୃତ ଭାବ ପ୍ରତିବିମ୍ବିତ ହୋଇପାରେ ନାହିଁ । ଅବସ୍ଥାର ପରିବର୍ତ୍ତନ ଏବଂ ଅବସ୍ଥାଗତ ଭେଦ ଦର୍ଶନହିଁ ଅଜ୍ଞାନର ମୂଳକାରଣ । ଜଗତରେ କୌଣସି ଦୁଇବସ୍ତୁ, ବିଷୟ ବା ଅବସ୍ଥାର ସାମ୍ୟନାହିଁ ପୁଣି ସାମ୍ୟଅଛି । ଏହି ସମତାରେ ବିଭିନ୍ନତା ଦେଖିବା ଏବଂ ବିଭିନ୍ନତାରେ ସମାନତା ଦେଖିବାହିଁ ଜ୍ଞାନ । ଏହି ଜ୍ଞାନ ଉପଲବ୍ଧି କରିବାକୁ ହେଲେ ଉପସ୍ଥିତ ଅବସ୍ଥାକୁ ଅତିକ୍ରମ କରିବାକୁ ହେବ । ସକଳ ପଦାର୍ଥ ବା ଅବସ୍ଥା ପ୍ରତି ସମଭାବ ପୋଷଣ କରିବାକୁ ହେବ । ଅବସ୍ଥାର ବଶୀଭୂତ ହୋଇ ତତ୍‌ପ୍ରତି ଆସକ୍ତ ରହିବାହିଁ ଅଜ୍ଞାନର ମୂଳାଧାର ଏବଂ ସକଳ ପ୍ରକାର ଦୁଃଖର କାରଣ । ଅବସ୍ଥାକୁ ପରିବର୍ତ୍ତନ କରିଦେବା କ୍ଷୁଦ୍ର ପ୍ରାଣୀ ପକ୍ଷରେ ଅସାଧ୍ୟ କିନ୍ତୁ ଅବସ୍ଥା ପ୍ରତି ଅନାସକ୍ତ ରହିବା ମାନବ ସାଧ୍ୟାୟତ୍ତ । ଅତଏବ ଅବସ୍ଥା ଭେଦ ବାଞ୍ଛନୀୟ, ତହିଁରେ ପ୍ରସନ୍ନ ବା ବିଷନ୍ନ ହେବା ଉଚିତ ନୁହେ ।



## ଆତ୍ମସଂଯମ—ବ୍ରହ୍ମଚର୍ଯ୍ୟ ।

ମହାତ୍ମା ଗାନ୍ଧୀ କହନ୍ତି ଯେ, ଇନ୍ଦ୍ରିୟ ଓ ଅବୟବ ମାନଙ୍କୁ ଆପଣାର ବଶୀଭୂତ ରଖିବାହିଁ ବ୍ରହ୍ମଚର୍ଯ୍ୟ । ପୂର୍ଣ୍ଣ ବ୍ରହ୍ମଚାରୀ ପକ୍ଷରେ କୌଣସି କଥା ଅସାଧ୍ୟ ରହି ପାରେ ନାହିଁ । କିନ୍ତୁ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ଅଟେ ପରମ ଚରମ ଆଦର୍ଶ । ଏହା ସାଧାରଣ ଜୀବନରେ ଅପ୍ରାପ୍ୟ । ଜ୍ୟାମିତିର ରେଖା କେବଳ କଳ୍ପନାବିଶେଷ । ତାହା ହାତରେ କଟାଯାଇ ପାରେ ନାହିଁ । ତଥାପି ସେହି ରେଖାର ଅବଲମ୍ବନରେ ଗୁରୁତର ସମସ୍ୟାମାନଙ୍କର ପୂରଣ କରାଯାଏ । ସେହିପରି ପୂର୍ଣ୍ଣ ବ୍ରହ୍ମଚାରୀ ଆମ୍ଭମାନଙ୍କର କଳ୍ପନା ବିଶେଷ ହେଲେହେଁ ତାହାଙ୍କୁ ଆଦର୍ଶସ୍ୱରୂପ ଆଗରେ ନ ରଖିଲେ ଜୀବନ ସୁନିର୍ବାହିତ ହୁଏନାହିଁ, ସଂସାର ସାଗରରେ ଜୀବନର ଅବସ୍ଥା କାତ ନଥିବା ନାବପରି ହୁଏ । ଯେଉଁ ବ୍ୟକ୍ତି ଯେତେଦୂର ଏହି ଆଦର୍ଶର ନିକଟବର୍ତ୍ତୀ ହୁଏ ସେହି ଲୋକ ସେତେ ସିଦ୍ଧି ଲାଭ କରେ ।

ଆଧ୍ୟାତ୍ମିକ ଉନ୍ନତି ସାଧନ ସକାଶେ କାୟମନୋ ବାକ୍ୟରେ ପୂର୍ଣ୍ଣ ସଂଯମ ନିତାନ୍ତ ଆବଶ୍ୟକ । ପୁଣି ଯେଉଁ ଜାତିରେ ସଂଯମୀ ବା ବ୍ରହ୍ମଚାରୀମାନଙ୍କ ସଂଖ୍ୟା ଯେତେନ୍ୟୂନ ସେହି ଜାତି ସେତେ ବଳହୀନ । ଭାରତ ଜାତୀୟ ଅଭ୍ୟୁତ୍ଥାନର ବର୍ତ୍ତମାନ ଅବସ୍ଥାରେ ଅବିବାହିତ ଜୀବନ ରୂପକ ବ୍ରହ୍ମଚର୍ଯ୍ୟ ଅତ୍ୟନ୍ତ ଆବଶ୍ୟକ । ଭାରତର ଅବସ୍ଥା ଆଜି କାଲି ବଡ଼ ଶୋଚନୀୟ । ଦାରିଦ୍ର୍ୟ, ଦୁର୍ଭିକ୍ଷ, ବ୍ୟାଧି, ଅନାହାର ଇତ୍ୟାଦି ହେତୁ ଭାରତବାସୀ ଅତ୍ୟନ୍ତ ପୀଡ଼ିତ, ଦାସତ୍ୱର ସୂକ୍ଷ୍ମ ଶୃଙ୍ଖଳରେ ଏପରି ଆବଦ୍ଧ ଅଛନ୍ତି ଯେ, ଦାସତ୍ୱକୁ ଆଉ ଦାସତ୍ୱ ଜ୍ଞାନ କରି ପାରୁ ନାହାନ୍ତି,

ଆପଣାର ମାନସିକ, ନୈତିକ ଓ ଆର୍ଥିକ ଦୁରବସ୍ଥାକୁ ଉନ୍ନତ ଭାବନା କରନ୍ତି । ଏପରି ଅବସ୍ଥାରେ ବିବାହକରି ସନ୍ତାନ ଜାତ କରିବାକି ଶ୍ରେୟସ୍କର ହୋଇପାରେ ? ଆମ୍ଭେମାନେ ଏପରି ରୋଗଗ୍ରସ୍ତ, ଦୁର୍ଭିକ୍ଷ ଓ ଅନାହାର ପୀଡିତ, ଅସହାୟ ଥିବାବେଳେ ସନ୍ତାନ ଜାତ କରିବା କେବଳ କ୍ଷୀଣକାୟ ଦୁର୍ବଳ ଦାସ ସଂଖ୍ୟା ବଢାଇବା କଥା । ଭାରତ ଯେ ପର୍ଯ୍ୟନ୍ତ ସ୍ୱରାଜ୍ୟ ପାଇନାହିଁ, ସ୍ୱାଧୀନ ହୋଇନାହିଁ, ଦୁର୍ଭିକ୍ଷ କାଳରେ ଅନାଶନ, ଅନାହାରରେ ପ୍ରତିକାର କରି ପାରି ନାହିଁ ଏବଂ ଆପଣାର ଶିକ୍ଷା ଓ ସଭ୍ୟତାର ଆୟୋଜନ କରି ପାରି ନାହିଁ, ସେ ପର୍ଯ୍ୟନ୍ତ ଭାରତବାସୀ ପକ୍ଷରେ ବିବାହ କରି ଜନସଂଖ୍ୟା ବଢାଇବା କଦାପି ଉଚିତ ହୋଇ ପାରେ ନାହିଁ ।କୌଣସି ଗୃହରେ ପୁତ୍ର କନ୍ୟା ଜାତ ହେବା ଆଜି ଆନନ୍ଦର ବିଷୟ ନୁହେଁ; କେବଳ ଦୁଃଖ ଓ ଚିନ୍ତାର ବିଷୟ । ଭାରତର ଜନସଂଖ୍ୟା ଅତି ବେଶି ହୋଇନାହିଁ କିନ୍ତୁ ବିଦେଶୀୟ ବ୍ୟାପାର କାଣ୍ଡର ଅତ୍ୟାଚାରରେ ଶୋଷିତ, ସର୍ବସ୍ୱାନ୍ତ ହୋଇ ଆପଣାର ବର୍ତ୍ତମାନ ଜନସଂଖ୍ୟାର ରକ୍ଷଣାବେକ୍ଷଣ କରି ପାରୁ ନାହିଁ । ଅତଏବ ସନ୍ତାନ ଉତ୍ପାଦନ କିମ୍ବା ବର୍ତ୍ତମାନ ସ୍ଥଗିତ ରହିବା ଆବଶ୍ୟକ । ଏହା କିପରି ବନ୍ଦ କରାଯାଇ ପାରେ ?

ୟୁରୋପ ଦେଶର ପରି ମାତୃବରୁଦ୍ଧ ଅସ୍ୱାଭାବିକ କୃତ୍ରିମ ଉପାୟ ଦ୍ୱାରା ନୁହେ, କେବଳ ଶିକ୍ଷା ସଂଯମାଦି ବ୍ରହ୍ମଚର୍ଯ୍ୟଦ୍ୱାରା କରାଯାଇ ପାରେ । ପିତାମାତା ମାନଂକର ଆପଣା ସନ୍ତାନମାନଂକୁ ବ୍ରହ୍ମଚର୍ଯ୍ୟ ଶିକ୍ଷା ଦେବାକୁ ହେବ । ଆର୍ଯ୍ୟ ଧର୍ମଶାସ୍ତ୍ରାନୁସାରେ ପୁଂବ ପକ୍ଷରେ ବିବାହର ବୟସ ୨୫ ବର୍ଷରୁ ଊଣା ହେବାନାହିଁ । ଭାରତର ଜଳବାୟୁ ଓ ଶୀତୋଷ୍ଣାବସ୍ଥା ପ୍ରଭାବରୁ ବାଳିକାମାନେ ଅଳ୍ପବୟସରେ ରଜସ୍ୱଳା ହୋଇ ପଡନ୍ତି । ଏହି ଧାରଣା ନିତାନ୍ତ ଭ୍ରାନ୍ତ । ଏହାଠାରୁ ବଳ ଅନ୍ଧ ବିଶ୍ୱାସ ନାହିଁ ବୋଲିବାକୁ ହେବ । ବାର୍ଦ୍ଧକ୍ୟ ଜୀବନର ଶାରୀରିକ, ମାନସିକ ଓ ନୈତିକବେଷ୍ଟନୀ କେବଳ ଏହି ଅକାଳ ପରିପକ୍ୱତାର କାରଣ । ପିତା ମାତା ଓ ବନ୍ଧୁବାନ୍ଧବମାନେ ଅଜ୍ଞାନ ବାଳକବାଳିକାମାନଙ୍କ ବିବାହ କଥା ଶିଖାଉଥାନ୍ତି । ଅମୁକ ସମୟରେ ଅମୁକବର୍ଷ ସେମାନଂକର ବିଭାଘର ହେବବୋଲି ସେମାନଂକୁ କହୁଥାନ୍ତି । ଶିଶୁମାନଂକର ବିବାହ ନିର୍ବନ୍ଧ କରାଯାଇଥାଏ, ଏମନ୍ତକି ଗର୍ଭର ପିଲ୍ଲପାଇଁ ମଧ "ଗଣ୍ଡିବନ୍ଧା" ବା ବିବାହ ନିର୍ବନ୍ଧ କରାଯାଇ ଥାଏ । ସେମାନଙ୍କର ବେଶ ଭୂଷା ପୋଷାକ ଓ ଆହାର ମଧ ଅତ୍ୟନ୍ତ ଉତ୍ତେଜକ ହୋଇଥାଏ । ପିତାମାତାମାନଂକ ଆନନ୍ଦ ଓ ସନ୍ତୋଷ ସକାଶେ ସନ୍ତାନମାନଙ୍କୁ କଣ୍ଢେଇଭଳି ବା ଖେଳ କୁଣ୍ଢାଇ ପରି ଚିତ୍ରବିଚିତ୍ର ବେଶ ଭୂଷାରେ ସଜାଇବାକୁ ହୁଏ । ପିଲ୍ଲମାନେ ଏହିପରି ଖାଇବା ପିନ୍ଧିବାକୁ ନଚାହିଁଲେ ମଧ୍ୟ ବାପାମାଆମାନେ ଆପଣାର ଶ୍ରଦ୍ଧା ଓ ସନ୍ତୋଷ ସକାଶେ ସେମାନଙ୍କ ଅନିଚ୍ଛାରେ ଏବଂ ଅଯଥା ଅଶନ, ବସନ, ଭୂଷଣ ଇତ୍ୟାଦି ଦେଇ ଭୋଗୀ, ବିଳାସୀ, ଅକର୍ମଣ୍ୟ ଏବଂ ଅଳ୍ପାୟୁ କରି ପକାନ୍ତି । ପିତାମାତା ମାନେ ଯେଉଁ ଶିକ୍ଷା ଦିଅନ୍ତି, ଆଦର୍ଶ ଦେଖାନ୍ତି, ସନ୍ତାନମାନେ ତାହା ଅଭିସନ୍ଧନରେ ଗ୍ରହଣ କରନ୍ତି । ଅଯଥା ଅନୁରାଗ ଦ୍ୱାରା ପିତାମାତାମାନେ ସନ୍ତାନମାନଙ୍କୁ ଯେପରି ଚେଷ୍ଟା କରନ୍ତି,

ସେମାନେ ସେତେ ଅସଂଯମ ଓ ସ୍ୱେଚ୍ଛାଗୃହିତା ଶିକ୍ଷା କରନ୍ତି । କାଳ, ଅବସ୍ଥା, ବପୁ, ବୟସ ଯାହାଥାଉ, ଘରେ ସନ୍ତାନଟିଏ ହେଲେ ଆନନ୍ଦ ଉତ୍ସବର ସୀମା ନଥାଏ । ପ୍ରତିକୂଳ ଅବସ୍ଥାରେ ମଧ୍ୟ ସଂଯମ ଶୀଳତା ନାହିଁ ।

ସନ୍ତାନମାନଙ୍କୁ ବିବାହ କରି ଦେବା କିମ୍ବା ସେମାନଙ୍କୁ ବିବାହିତ ଜୀବନ ସର୍ବାଂଶେ ପ୍ରସ୍ତୁତ କରିବା ଯଦି ପାପକର୍ମ ବୋଲି ଭାରତ ମାତାମାନେ ଭାବନ୍ତେ ଭାରତରେ ଅକାଳ ବିବାହ ସଂଖ୍ୟା ଅଧେ କମିଯାଆନ୍ତା । ଯଦି ଗୃହସ୍ଥମାନେ ସ୍ୱଦେଶର ମଙ୍ଗଳ କାମନା କରନ୍ତି, ଭାରତ ଜାତି କୁ ସୁନ୍ଦର, ସବଳ, ସ୍ୱାଧୀନ, ଉନ୍ନତ ଜାତି କରିବାକୁ ଚାହାନ୍ତି, ତେବେ ସେମାନେ ଆତ୍ମସଂଯମ ଶିକ୍ଷାକରନ୍ତୁ, ସନ୍ତାନ ଉତ୍ପାଦନରୁ ବର୍ତ୍ତମାନ କ୍ଷାନ୍ତ ରହନ୍ତୁ । କୌଣସି କର୍ମରୁ ନିବୃତ୍ତ ହେବାଠାରୁ ଉକ୍ତ କର୍ମରେ ଆଦୌ ପ୍ରବୃତ୍ତ ନ ହେବାହିଁ ସହଜ ସାଧ୍ୟ । ମଦ୍ୟପାନ ଛାଡ଼ିବାଠାରୁ ପ୍ରଥମରୁ ମଦ ନ ପିଇବା ସହଜ । ପଙ୍କ ପ୍ରକ୍ଷାଳନ ଦୂରେ ଥାଉ ପଙ୍କକୁ ନ ଯିବା ଶ୍ରେୟସ୍କର । କେବଳ ଅନୁଭବୀ ଲୋକ ସହଜ ସଂଯମ ଶିକ୍ଷା କରିପାରେ, ଏହା ଠିକ୍ ନୁହେ, ପୁଣି ଭୋଗ ବିଳାସ ଲାଳସାରେ ଦୁର୍ବଳ ହୋଇଗଲା ପରେ ଆଉ ଧୈର୍ଯ୍ୟ ଶିକ୍ଷାର ବା କି ଫଳ ଥାଇପାରେ? ବାଲ୍ୟକାଳେ ଯେଅସଂଯମୀ ଏବଂ ସ୍ୱେଚ୍ଛାଗୃହୀ,ଯୌବନରେ ବା ବାର୍ଦ୍ଧକ୍ୟରେ ସେ କି ସଂଯମୀ ଏବଂ ସ୍ୱାଧୀନ ହୋଇପାରେ ? ସେତେବେଳେ ସଂଯମ ବା ବ୍ରହ୍ମଚର୍ଯ୍ୟ ଆଉ ଫଳପ୍ରଦ ହୁଏନାହିଁ, ବରଂ ଦୁଃଖଦ ବା କ୍ଷତିକାରକ ହୁଏ । ସେ ଯାହାହେଉ, ବର୍ତ୍ତମାନ ଦେଶର ଅବସ୍ଥାରେ ଯୁବକ, ବୃଦ୍ଧ, ନବଶିକ୍ଷିତ ବା କୁଶିକ୍ଷିତ, ଅଗ୍ନି-ମୂର୍ତ୍ତିକାସ୍ୱ ବା ପୁରାତନ ଭକ୍ତ, ସମସ୍ତଙ୍କ ପକ୍ଷରେ ସଂଯମ ଅତ୍ୟନ୍ତ ଆବଶ୍ୟକ, ଅଜ୍ଞାନ ପଶୁ ବା ଦୁର୍ବଳ ଦାସ-ବଂଶ ବଢ଼ାଇବା ପାଇଁ ସନ୍ତାନ ଉତ୍ପାଦନ କରିବା ଅକର୍ତ୍ତବ୍ୟ । ଦମ୍ପତି ମଧ୍ୟରେ ପରସ୍ପର ସହଯୋଗିତା ଆବଶ୍ୟକ ହେଲେହେଁ ଅତିରିକ୍ତ ଭୋଗବିଳାସ ନିମନ୍ତେ କେବଳ ଅନୁମତି ଆବଶ୍ୟକ, ଯଦି ସର୍ବାଂଶେ ଆବଶ୍ୟକ ନାହିଁ ।

ଭାରତ ଜାତିର ରାଜନୈତିକ ସ୍ୱାତନ୍ତ୍ର୍ୟ ନାହିଁ । ସେମାନେ ଯଦି ଜୀବନର ପବିତ୍ରତା ସମ୍ପାଦନ କରନ୍ତି ନାହିଁ, ସେମାନେ ସ୍ୱାତନ୍ତ୍ର୍ୟ ବା ସ୍ୱରାଜ୍ୟ ପାଇ ପାରିବେ ନାହିଁ । ସେହି ଆର୍ଯ୍ୟଜାତି ଭବିଷ୍ୟତରେ କେବଳ ଦାସ ଜାତିରେ ପରିଣତ ହେବ । ପାଶ୍ଚାତ୍ୟ ଜାତିରେ ଆଧ୍ୟାତ୍ମିକ ମୂଳଧର୍ମର ସମାଦର ନ ଥିଲେହେଁ,ସେମାନେ ଅନ୍ତତଃ ଶାରୀରିକ କାର୍ଯ୍ୟରେ ତାହା ପାଳନ କରିଥାନ୍ତି । ସୁତରାଂ ପ୍ରତିଯୋଗିତା କ୍ଷେତ୍ରରେ ସେମାନେ ଉପେକ୍ଷଣୀୟ ନୁହନ୍ତି । ୟୁରୋପରେ ଅନେକ ଲୋକ ଆଜୀବନ ଅବିବାହିତ ରହନ୍ତି । ସେମାନଙ୍କର ଆପଣା ଦେଶର ରାଜନୀତି ଆନ୍ଦୋଳନ କାରୀ ମାନଙ୍କ ମଧ୍ୟରେ ଆମ୍ଭମାନଙ୍କଠାରୁ ଅଧିକ ସଂଖ୍ୟକ ସ୍ତ୍ରୀ ପୁରୁଷ, ଅନେକ ଲୋକ ଅବିବାହିତ ରହନ୍ତି ।ଆମ୍ଭ ଦେଶରେ ଅବିବାହିତା ସ୍ତ୍ରୀ କାର୍ଯ୍ୟତଃ କେହି ନାହାନ୍ତି ବୋଲିବାକୁ ହେବ । ପୂର୍ବେ ଯେଉଁମାନେ ସନ୍ନ୍ୟାସିନୀ, ସେମାନେ ସ୍ୱଜାତି—ଯେଉଁଭଳି କିଛି ନୁହନ୍ତି ।

ମହାତ୍ମା ଗାନ୍ଧି ବ୍ରହ୍ମଚର୍ଯ୍ୟ ପାଳନ ସକାଶେ ନିଜ ଅନୁଭବରୁ କେତେକ ନିୟମ ସଙ୍କଳନ କରିଛନ୍ତି ଯଥା:—

୧— ବାଳକ ବାଳିକାମାନେ ପବିତ୍ର ଏବଂ ପବିତ୍ରା ରହି ପାରିବେ । ଏହି ଭିତ୍ତିରେ ସେମାନଙ୍କୁ ସରଳ ସ୍ୱାଭାବିକ ନିୟମାନୁସାରେ ପାଳନ କରିବାକୁ ହେବ ।

୨— ସେମାନେ ଉଷ୍ଣ କାରକ, ଉତ୍ତେଜକ ପଦାର୍ଥ ଯଥା— ଆଚାର, ମରିଚ, ପିଠା, ଖଜା, ଭଜା ଇତ୍ୟାଦି ଖାଇବେ ନାହିଁ ।

୩— ପତି ପତ୍ନୀ ଭିନ୍ନ ଗୃହରେ ଶୟନ କରିବେ । ଉଭୟେ ଏକାନ୍ତ ରହିବେ ନାହିଁ ।

୪— ମନ ଏବଂ ଶରୀର ଉଭୟଙ୍କୁ ସୁସ୍ଥ ରଖି ସର୍ବଦା କାର୍ଯ୍ୟରେ ଲଗାଇବ ।

୫— ଯଥା ସମୟରେ ଶୟନ ଓ ଶଯ୍ୟା ପରିତ୍ୟାଗ କରିବ, ଅର୍ଥାତ୍ ୧୦ ଟାରେ ଶୋଇବ ଏବଂ ୪ ଟାରେ ଉଠିଯିବ ।

୬— ଅଶ୍ଳୀଳ ପୁସ୍ତକ ପଢ଼ା ଶୁଣା କରିବନାହିଁ । ସର୍ବଦା ସଚ୍ଚିନ୍ତା କରିବ । ସଦ୍‌ଭାବହିଁ ଅସଦ୍ ଭାବର ପ୍ରତିକାର ।

୭— ଉତ୍ତେଜକ ନାଟକାଦି ଦୃଶ୍ୟ ଦେଖିବ ନାହିଁ ।

୮— ଶୀତଳ ଜଳ ସ୍ନାନରେ ସ୍ୱପ୍ନ ସ୍ଖଳନ ଦୂରୀଭୂତ ହୁଏ । ସାମୟିକ ସମ୍ଭୋଗ ଦ୍ୱାରା ସ୍ୱପ୍ନ ଦୋଷ ନିବାରିତ ହୁଏ, ଏହା କେବଳ ଭ୍ରାନ୍ତ ଧାରଣା ।

୯— ଦମ୍ପତି ମଧ୍ୟରେ ସୁଦ୍ଧା ସଂଯମ ଅସାଧ୍ୟ ନୁହେ । ଆତ୍ମ ସଂଯମହିଁ ଜୀବନର ସାଧାରଣ ସ୍ୱାଭାବିକ ସାଧନା ।

୧୦— ପବିତ୍ରତା ସକାଶେ ନିତ୍ୟ ସହୃଦୟ ପ୍ରାର୍ଥନା କଲେ ଦିନକୁଦିନ ମନ ଓ ଶରୀର ପବିତ୍ର ହେବାକୁ ଲାଗେ ।



# ଆତ୍ମସମର୍ପଣ ।

ଅର୍ପଣ, ସମର୍ପଣ, ଫଳ ସମର୍ପଣ ଏବଂ ଆତ୍ମ ସମର୍ପଣ । ଏହି କ୍ରମରେ ପରିଶେଷରେ ଆତ୍ମ ସମର୍ପଣ କରିବାକୁ ହୁଏ । ଏହାକୁହିଁ ତ୍ୟାଗ କହନ୍ତି, ବନ୍ଧନ ମୋକ୍ଷ କହନ୍ତି, ସର୍ବାଂଗତି ବା ପରିତ୍ରାଣ କହନ୍ତି । କୌଣସି ବ୍ୟକ୍ତିକ କୌଣସି ପଦାର୍ଥ ଦେଲେ, ସେ ତହିଁରେ ସନ୍ତୁଷ୍ଟ ହୁଏ, ପୁଣି ଯେଉଁ ଲୋକ ଆପଣାର କୌଣସି ପ୍ରିୟପଦାର୍ଥ ଦେଇ ଥାଏ, ତାହାପ୍ରତି ପାଇବା ଲୋକର ତଥା ସେହି ଅନ୍ୟାନ୍ୟ ଲୋକଙ୍କ ମଧ୍ୟ ପ୍ରୀତି ହୁଅନ୍ତି । କୌଣସି ପ୍ରତ୍ୟାଶା ନ ଥାଇ ଯେତେକୌଣସି

ପଦାର୍ଥ ଦେଇ ଦେବାଙ୍କୁ ତ୍ୟାଗ କରନ୍ତି । ତ୍ୟାଗ ଦ୍ୱାରା କ୍ଷତି ହୁଏନାହିଁ, ବରଂ ଐଶ୍ୱର୍ଯ୍ୟ ପ୍ରାପ୍ତହୁଏ । ତ୍ୟାଗଦ୍ୱାରା ସଦ୍ୟ କୌଣସି ପଦାର୍ଥ ଦେଇ ଦେବାକୁ ବାଞ୍ଛିତ ଦେବାକୁ ହେଲେ ମଧ୍ୟ ଭବିଷ୍ୟତ ପାଇଁ ସଂଗ୍ରହ କରିବାକୁ ହୁଏ । ତ୍ୟାଗଦ୍ୱାରା ଆଖିରେ ଦେଖିବା ଭଳି ବା ହାତରେ ଧରିବା ଭଳି କୌଣସି ଫଳ ସଦ୍ୟ ପ୍ରାପ୍ତ ହୁଏନାହିଁ ବୋଲି ଲୋକ ସାଧାରଣ ତ୍ୟାଗର ମହିମା ବୁଝି ପାରନ୍ତି ନାହିଁ, ସାମାନ୍ୟ ପାର୍ଥିବ ବସ୍ତୁର ପ୍ରଲୋଭନରେ ପଡ଼ି ତ୍ୟାଗ କରିବାକୁ କୁଣ୍ଠିତ ହୁଅନ୍ତି । ଯେଉଁମାନେ ତ୍ୟାଗମଧ୍ୟରେ ଆତ୍ମସମର୍ପଣ କରିପାରନ୍ତି, ସେମାନେ ସକଳ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇ ପାରନ୍ତି । 'ଆତ୍ମାକୁ ଆତ୍ମା ଯେତେବେ ସମ୍ପେ, ପରମାନନ୍ଦେ ସେ ରହିଲେ ।' ଏହି ଅଷ୍ଟିପ୍ରକାର ଭଗବତ ବାକ୍ୟରେ ଆତ୍ମ ସମର୍ପଣ ମହିମା ନିହିତ ଅଛି । କୌଣସି ଜୀବ ଯଦି ଅପର କୌଣସି ଜୀବଠାରେ ଆତ୍ମ ସମର୍ପଣ କରିପାରେ, ତେବେ ଉଭୟ ଆତ୍ମା ଏକ ହୋଇ-ଯାଏ । ସେ ଉଭୟଙ୍କ ମଧ୍ୟରେ କୌଣସି ପ୍ରଭେଦ ରହେନାହିଁ । ଏକର ସୁଖ ଦୁଃଖରେ, ସମ୍ପଦ ବିପଦରେ ଅପରବ୍ୟକ୍ତି ଭାଗୀହୁଏ । ଆତ୍ମାକୁ ଆତ୍ମା ସାଦରେ ଗ୍ରହଣ କରେ । ଆତ୍ମା ଓ ଆତ୍ମା ମଧ୍ୟରେ କୌଣସି ପ୍ରଭେଦ ରହେ ନାହିଁ । ଆତ୍ମା ବା ଜୀବର ମଳନଦାହିଁ ଅର୍ଥାତ୍ ଶଠତା ବା କାପଟ୍ୟହିଁ ଜୀବ ଓ ଜୀବ ମଧ୍ୟରେ ପ୍ରତିବନ୍ଧକ ଅନୁଭୂତ । ଅନ୍ତଃକରଣ ବିଶୁଦ୍ଧ ନିର୍ମଳ ହେଲେ ଆତ୍ମା ଓ ଆତ୍ମା ମଧ୍ୟରେ ସ୍ୱରୂପତା ବା ଏକତା ଅନୁଭୂତ ହୁଏ । ଏକବ୍ୟକ୍ତି ଅପରବ୍ୟକ୍ତି ଠାରେ ଆତ୍ମସମର୍ପଣ କଲେ, ସେହି ଅପରବ୍ୟକ୍ତି ଆପଣାର ଜ୍ଞାନ ଶକ୍ତି ଓ ସାମର୍ଥ୍ୟାନୁସାରେ ପ୍ରତିଦାନ କରିବାକୁ କଦାପି କୁଣ୍ଠିତ ହୁଏନାହିଁ । ସ୍ୱଳ୍ପଜ୍ଞ ସ୍ୱଳ୍ପଶକ୍ତି ବାନ କ୍ଷୁଦ୍ରଜୀବ ବା କ'ଣ ପ୍ରତିଦାନ କରିପାରେ, ତଥାପି ତହିଁରେ ଜୀବ ପରମାନନ୍ଦ ଓ ଆତ୍ମପ୍ରସାଦ ଲାଭ କରେ । ପରମାତ୍ମା ପରମେଶ୍ୱରଙ୍କ ଜ୍ଞାନ ଅସୀମ, ଶକ୍ତି ଅନନ୍ତ, ମହିମା ଅପରିମିତ ଏବଂ ଦୟା ଅଶେଷ । ଜୀବ ଯଦି ପରମାତ୍ମାଙ୍କଠାରେ ଆତ୍ମସମର୍ପଣ କରେ, ତେବେ ସେ କଅଣ ପ୍ରତିଦାନ ପାଇ ନପାରେ ? ତାହାର କୌଣସି ବାଞ୍ଛା ଅପୂର୍ଣ୍ଣ ରହେ ନାହିଁ, ସେ ପୂର୍ଣ୍ଣ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ କରେ, ଯେହେତୁ ସେ ପରମାତ୍ମାଙ୍କକୃପରୁ ପରମୈଶ୍ୱର୍ଯ୍ୟ ଲାଭ କରେ । ପରମେଶ୍ୱରଙ୍କ ଠାରେ ଆତ୍ମ ସମର୍ପଣ କଲେ ଆଉ ମାଗିବା ପାଇଁ କିଛି କଥା ନଥାଏ । ଜୀବ ଅଟେ ଅଳ୍ପଜ୍ଞ । ସେ ନିଜେ ତାହାର ଭଲ ମନ୍ଦ ଜାଣି ପାରେନାହିଁ, ସୁତରାଂ ଆବଶ୍ୟକ ମତେ ଲୋଡ଼ା ହେବା ଏତେ ମାଗି ଜାଣେ ନାହିଁ ଏବଂ ମାଗେ ନ ଥାଏ, ପରନ୍ତୁ ପରମାତ୍ମା ତାହାକୁ ଅଭିରକ୍ତ ଦିଅନ୍ତି, ଯାହାକ ସେ ତ୍ରିକାଳରେ ଭାବି ସୁଦ୍ଧା ପାରି ନ ଥାଏ । ଅତଏବ ତ୍ୟାଗ ବା ଅର୍ପଣ ମଧ୍ୟରେ ଆତ୍ମସମର୍ପଣହିଁ ପରମଯୋଗ, ସର୍ବାପରିନିର୍ବାଣ ବା ଜୀବନ୍ମୁକ୍ତାବସ୍ଥା । ଆତ୍ମସମର୍ପଣହିଁ ପରମଯୋଗ ଏହି ଯୋଗ ସାଧନା କରି ଋଷି, ମୁନି, ତପୀ, ବୈରାଗୀ, ସନ୍ୟାସୀ ଆଦି ମହାତ୍ମାମାନେ ପରମ ଗତି ବା ମୁକ୍ତି ପ୍ରାପ୍ତ ହୁଅନ୍ତି ।

ତେବେ ଆତ୍ମସମର୍ପଣ କ'ଣ ? କାହାକୁ କହି ଆତ୍ମ ସମର୍ପଣ ? ତିଳକ ଏବଂ ତୁଳସୀ ରୁଦ୍ରାକ୍ଷ ଇତ୍ୟାଦି ମାଳାଧାରଣ କରିବା ଆତ୍ମସମର୍ପଣ ନୁହେଁ, ଶାଳଗ୍ରାମ ଶିଳା ଓ କାଷ୍ଠ

ପାଷାଣାଦି ମୂର୍ତ୍ତିର ପୂଜା ଆରାଧନା ଆତ୍ମସମର୍ପଣ ନୁହେ । ପୁତ୍ର ପୌତ୍ର ପ୍ରାପ୍ତି ଆଶାରେ, ମକଦ୍ଦମାରେ ଜୟ ଲାଭ କରିବା କିମ୍ବା ଶତ୍ରୁ ସଂହାର ସକାଶେ ଠାକୁର ଠାକୁରାଣୀ ନାମରେ ଅନ୍ନବସ୍ତ୍ର ଅଳଙ୍କାରାଦି ଭୋଗରାଗ ଦେବା ମଧ୍ୟ ଆତ୍ମସମର୍ପଣ ନୁହେ । ପୁତ୍ରକନ୍ୟା ଜନ୍ମ ହେଲେ ତାହାକୁ ରଘୁନାଥଙ୍କର, ଗୋପୀନାଥଙ୍କର ଇତ୍ୟାଦିବୋଲି କହିବା, କିମ୍ବା ପୁରୀ ବଡଦେଉଳର ଜଗନ୍ନାଥଙ୍କ ପିଣ୍ଡିକାରେ ପଣ୍ଡାମାନଙ୍କୁ ବକ୍ଷ ଦେବା ମଧ୍ୟ ଆତ୍ମ ସମର୍ପଣ ନୁହେ । ଈଶ୍ୱରଙ୍କ ଇଚ୍ଛା, ପରମେଶ୍ୱର ଯାହା କରନ୍ତି ସେ ଯେପରି ମତେ ନିଯୁକ୍ତ କରିଛନ୍ତି ମୁଁ ତାହାହିଁ କରେ, ମୋହର କୌଣସି କର୍ତ୍ତୃତ୍ୱ ନାହିଁ—ଦୁଷ୍ଟ ଦୁର୍ଯ୍ୟୋଧନ ଭଳି ଏପରି କହିବାରେ ଆତ୍ମସମର୍ପଣ ହୁଏ ନାହିଁ । କାର୍ଯ୍ୟ ସିଦ୍ଧ ହେଲେ ମୋହର ପରାକ୍ରମ ଓ ପୁରୁଷାର୍ଥ, ପରନ୍ତୁ ଅକୃତକାର୍ଯ୍ୟ ହେଲେ ସବୁ ଈଶ୍ୱରାଧୀନ, ଈଶ୍ୱର କର୍ତ୍ତୃତ୍ୱ, ମନୁଷ୍ୟର କି ଅଧିକାର, ଦୁର୍ଦ୍ଦୈବ, ଈଶ୍ୱର ନିଗ୍ରହ, ଭଗବାନଙ୍କ ଇଚ୍ଛା, ଇତ୍ୟାଦି କଥାରେ ଆତ୍ମସମର୍ପଣ ହୁଏନାହିଁ ।

ସର୍ବଜ୍ଞ ସର୍ବନିୟନ୍ତା ସକଳ ଅନ୍ତର୍ଯ୍ୟାମୀ ଜଗଦୀଶ୍ୱରଙ୍କ ନିୟମ ବ୍ୟବସ୍ଥା ଓ ଆଦେଶାନୁସାରେ ନିରପେକ୍ଷ ଭାବରେ କର୍ତ୍ତବ୍ୟ କର୍ମ କରିବାହିଁ ଆତ୍ମସମର୍ପଣ । ନଶ୍ୱର ପାର୍ଥିବ ପଦାର୍ଥରେ ଅନାସକ୍ତ ରହିବା, ଶାଶ୍ୱତ ବ୍ରହ୍ମଜ୍ଞାନ ଲାଭ କରିବା, କାମନାରହିତ ହୋଇ କେବଳ କର୍ତ୍ତବ୍ୟ ଜ୍ଞାନରେ କର୍ମ କରିବା, କେବଳ ମୋକ୍ଷସାଧନ ଉଦ୍ଦେଶ୍ୟ ଧର୍ମ ଅର୍ଥ କାମରେ ପ୍ରବୃତ୍ତ ହେବା, ଅଭିମାନ ପରିତ୍ୟାଗ କରି ପରମାତ୍ମା ପରମେଶ୍ୱରଙ୍କ କର୍ତ୍ତୃତ୍ୱ ମାନି ତାହାଙ୍କରେ ଏକାନ୍ତ ନିର୍ଭରଶୀଳ ହେବା, କର୍ତ୍ତବ୍ୟକୁ ଏବଂ ଆପଣାର ଜ୍ଞାନକର ଫଳାଫଳକୁ ପରମାତ୍ମାଙ୍କର ଜ୍ଞାନ କରିବା ଇତ୍ୟାଦି କି ଆତ୍ମସମର୍ପଣ କୁହାଯାଏ ।

ଆତ୍ମସମର୍ପଣ ବା ପରମାତ୍ମନିର୍ଭରଶୀଳତା ନୁହେ ଅକର୍ମଣ୍ୟତା, ଆଳସ୍ୟପରାୟଣତା ବା ଉଦାସୀନତା । କର୍ମଠ, ନିରଳସ ଏବଂ ଉତ୍ସାହୀ ହେବା ଆବଶ୍ୟକ । ପରମେଶ୍ୱରଙ୍କ ବ୍ୟବସ୍ଥାନୁସାରେ ଆତ୍ମା ଶରୀର ଧାରଣକରି ଏହି କର୍ମଭୂମିରେ ଜନ୍ମଗ୍ରହଣ କରିଅଛି । କର୍ମ ଭୂମିରେ କର୍ମ କରିବାହିଁ ପ୍ରାଣୀର ବିଶେଷତ୍ୱ । କର୍ମ ନ କରି କେହି କଦାପି ରହି ପାରେ ନାହିଁ, ଭଲ ହେଉ ବା ମନ୍ଦ ହେଉ ଯେ କୌଣସି କର୍ମ କରିବାକୁ ହୁଏ; କିନ୍ତୁ କାମନାରହିତ ହୋଇ କାମ କରିବାକୁ ହେବ । ଅର୍ଥାତ୍ ଫଳାଫଳପ୍ରତି ଆସକ୍ତ ବା ବିରକ୍ତ ନ ହୋଇ କର୍ମ କରିବାକୁ ହେବ, ଆପଣାର କର୍ତ୍ତବ୍ୟ ବୋଲି ଜାଣିକରି କର୍ମ କରିବାକୁ ହେବ । ମାୟା ମୋହ ଓ ମମତା ତ୍ୟାଗକରି ଈଶ୍ୱରାଦେଶ ପାଳନପୂର୍ବକ ଧର୍ମଯୁକ୍ତ କର୍ମ କରିବାହିଁ ଆତ୍ମ ସମର୍ପଣ । ମାଲିକର ଆଦେଶାନୁସାରେ ଚାକର ଲୋକ କାମ କରେ । କର୍ମର ହାନି ଲାଭରେ ତାହାର ଶୋଚନା ନ ଥାଏ । କୌଣସି ବଡ଼ କାରଖାନାର ସ୍ୱତ୍ୱାଧିକାରୀ ପ୍ରତିଦିନ ସହସ୍ରାଧିକ ମୂଲିଆଙ୍କୁ ମଜୁରି ଦେଇ କାମ କରାନ୍ତି । କୁଲି ଲୋକ ମଜୁରି ଆଶାରେ କାମ କରୁଥିଲେହେଁ କର୍ମ ଫଳ ପ୍ରତି ତାହାର କୌଣସି ଭାବନା ନଥାଏ, କେତେ ବସ୍ତା ଚିନି ପ୍ରସ୍ତୁତ ହେଲା, କେଉଁ ଦରରେ ବିକି

ହୋଇ କେତେ ଲାଭ ବା ଲୋକଶାନ ହେଲେ ତତ୍‌ପ୍ରତି ମଜୁର ଦ୍ୱାରା ହର୍ଷ ବିଷାଦ କରୁ ନଥାଏ । ସେହିପରି ଜଗଦୀଶ୍ୱରଙ୍କ କର୍ମ କ୍ଷେତ୍ରରେ ତାହାଙ୍କର ନିର୍ଦ୍ଦିଷ୍ଟ ନିୟମ ଓ ବ୍ୟବସ୍ଥାନୁସାରେ ପ୍ରାଣି-ମାନଙ୍କୁ କର୍ମ କରିବାକୁ ହୁଏ । ଫଳାଫଳରେ କେବଳ ଜଗତର ଲାଭ ବା କ୍ଷତି ହୁଏ, ତାହା ପରମାତ୍ମା ଜାଣନ୍ତି । ତହିଁରେ ବ୍ୟକ୍ତି ବିଶେଷର କୌଣସି ଅଧିକାର ନାହିଁ । ଏହି ଜ୍ଞାନରେ କର୍ମ କରିବାହିଁ ଆତ୍ମ ସମର୍ପଣ ।

ସର୍ବତ୍ୟାଗ ଦ୍ୱାରା ଆତ୍ମ ସମର୍ପଣ କରିବାକୁ ହୁଏ, ଅର୍ଥାତ୍ ଆତ୍ମ ସମର୍ପଣରେ ସର୍ବତ୍ୟାଗ କରିବାକୁ ହୁଏ । ସର୍ବତ୍ୟାଗ ଅର୍ଥାତ୍ ସର୍ବଫଳାଶା ତ୍ୟାଗ କରିବାକୁ ହେବ । ଫଳାଶା କର ବା ନକର, କର୍ମର ଫଳ ସୁନିଶ୍ଚିତ । ଫଳାଶା ଯେତେ ବୃଦ୍ଧି ତ୍ୟାଗ କରାଯିବ ଫଳ ଫଳିବା ସେତେଦୂର ସୁନିଶ୍ଚିତ । ଫଳାଶା ହେତୁ କର୍ତ୍ତବ୍ୟ କର୍ମରେ ତ୍ରୁଟି ଘଟିବା ସମ୍ଭାବନା । ଫଳପ୍ରତି ଝୋଙ୍କ ଯେତେ ଅଧିକ ଆଶାଯୁକ୍ତ ହୁଏ, କର୍ତ୍ତବ୍ୟପ୍ରତି ସେତେଦୂର ଅମନୋଯୋଗୀ ହୋଇ ପଡ଼େ । ସୁତରାଂ କର୍ତ୍ତବ୍ୟ ଜ୍ଞାନୀ ଓ କର୍ମୀ ପକ୍ଷରେ ଫଳାଶାର ପ୍ରୟୋଜନ ନାହିଁ । ଫଳାଶା ନଥିଲେ କେହି କର୍ମ କରିବାକୁ ଉତ୍ସାହିତ ହୁଏ ନାହିଁ ସତ୍ୟ, କିନ୍ତୁ ଧାର୍ମିକ ଓ କର୍ତ୍ତବ୍ୟ ଜ୍ଞାନୀ ପକ୍ଷରେ ଫଳାଶାର ପ୍ରୟୋଜନ ନାହିଁ । ଯେହେତୁ ସେ ଫଳ ପାଇଁ କର୍ମ କରେ ନାହିଁ; କିନ୍ତୁ ଆପଣାର କର୍ତ୍ତବ୍ୟ ବୋଲି କର୍ମ କରେ । ପାର୍ଥିବ ଫଳ କଥା ଛାଡ଼, ମୋକ୍ଷ ଫଳାଶା ମଧ୍ୟ ପରିତ୍ୟାଗ କରାଯାଇ ପାରେ । ସତ୍କର୍ମ ଏବଂ ସତ୍ୟଭାଷଣାଦିଧର୍ମାଚରଣ ଦ୍ୱାରା ମୁକ୍ତି ଲାଭ ହୁଏ, ତୁମ୍ଭେ ମୁକ୍ତି ଇଚ୍ଛା କର ବା ନକର । ଅତଏବ କର୍ମ ଫଳାଶା ତ୍ୟାଗହିଁ ଆତ୍ମସମର୍ପଣ ।



## ଓଡଗାଁ ଓ ଶାରଣଙ୍କୁଳ ।

ନୟାଗଡ଼ ରାଜ୍ୟରେ ଏହି ଦୁଇ ଗ୍ରାମ ସୁପ୍ରସିଦ୍ଧ, ରଘୁନାଥ ଓ ଲାଡ଼ୁବାବା ପିଠମାନଙ୍କ ଲାଗି ଏହି ଦୁଇସ୍ଥାନର ପ୍ରଖ୍ୟାତି । ଉତ୍କଳର ନାନା ସ୍ଥାନରୁ ଯାତ୍ରିମାନେ ଏଠାକୁ ଆସନ୍ତି । କେହି ମନସ୍କାମନା ସିଦ୍ଧି ସଙ୍କାଶେ ଅସି ଏହି ମହାପ୍ରଭୁ ମାନଙ୍କଠାରେ ଭୋଗରାଗ କରନ୍ତି, କେହି ଜଉ ମାନଙ୍କର ପ୍ରସାଦ ସେବନ କରିବାକୁ ଆସନ୍ତି, କେହି ବିବିଧ ପ୍ରକାର ମିଷ୍ଟାନ୍ନ କିଣି ଖାଇବା ଆଶାରେ ଆସନ୍ତି, କେହି ବା ଦେବତା ମାନଙ୍କର ପ୍ରଶଂସା ଓ ପ୍ରତ୍ୟକ୍ଷତାରେ ଆକୃଷ୍ଟ ହୋଇ ଯେ କୌଣସି ଉତ୍କୃଷ୍ଟ ଫଳ, ମୂଳ ଧରି ଆସନ୍ତି । ଏହି ଯାତ୍ରିମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସୁବିଧା ନିମନ୍ତେ ଏହି ଦୁଇଗୋଟି ମନ୍ଦିର ଏକ୍ୟ ଅନ୍ନ ସସ୍ଥାନ । ଏହି ମନ୍ଦିରମାନଙ୍କ ପରିଚାଳନା ଓ ତତ୍ତ୍ୱାବଧାରଣ ସଙ୍କାଶେ ରାଜା ସରକାରଙ୍କର ଅନେକ କର୍ମଚାରୀ ନିଯୁକ୍ତ ଅଛନ୍ତି—ସୁପରିଣ୍ଟେଣ୍ଡେଣ୍ଟ, ସୁପରଭାଇଜର, ସଦାର ଓ

ମୋଫସଲଜାର୍ଗୀ, ମେହରର ଇତ୍ୟାଦ । ଜଗନ୍ନାଥଙ୍କର ଡଳଧୂପ, ପଞ୍ଚ ଅବକାଶ ହୁଏ । ଏଥିରେ ବିବିଧ ପ୍ରକାର ମିଷ୍ଟାନ୍ନ ଅପ୍ରୋଜନର ବ୍ୟବସ୍ଥା କରାଯାଇ ଅଛି । ଠାକୁର ମାନଙ୍କର ଧୂପ ଏବଂ ପାଞ୍ଚ ଅବକାଶ—

ବାଲଭୋଗ—ମୁଆଁ

ପହ୍ନଲଭୋଗ ସକାଳ ଧୂପ—ଖେଚଡ଼ି, ଡାଲି, ତରକାରି ଆଦ ବିବିଧବ୍ୟଞ୍ଜନ, ଉଦୟ ବିଳାସ, କଦଳୀ, ଦହି, ଅନ୍ନ ଖଇରାଜ ଭୋଗ ।

ମଧ୍ୟାହ୍ନ ଧୂପ—ଭାତ, ଡାଅଣ ପୁଣି ଷୀରପୋଲୀ, ଟେରାପଡ଼ା ଭୋଗ, ଛେନାପଣା ଓ ଗୋପାଳ ।

ସନ୍ଧ୍ୟାଧୂପ—ଦୁଧ, ଚୁଡ଼ା, ରାମଚନ୍ଦ୍ର ବଲ୍ଲଭ, ରଘୁନାଥ ବଲ୍ଲଭ, ଲକ୍ଷ୍ମଣ ବଲ୍ଲଭ, ସୀତା ପାକସୁଧା ରସାବଳୀ ।

"ଚତୁଃସମ" ଭୋଗ—ଗୋପାଳ

ରାତ୍ରିଧୂପ—ଅନ୍ନ, ତରକାରୀ ।

ବଡ଼ଶିଂଗାର—କାକରା, ପାରିଜାତକ, ଗଜା, କଦମ୍ବା, ଖଜୁରୀ, ବିଳଥା, ପଣା ସରସ୍ୱାଳ ।

ଏପରି ଭୋଗରାଗ ଗ୍ରହଣରେ ତ ଠାକୁରଙ୍କର ଦନସବୁ ବତିଯାଏ ଆଉ ସେ ଯାତ୍ରିମାନଙ୍କର ଖବର କେବେ ବୁଝନ୍ତି ?

ଏହି ବ୍ୟବସ୍ଥାର କାର୍ଯ୍ୟ ପରିଣତ ଓ କାର୍ଯ୍ୟକାରିତା ଦେଖିବା ଉଚିତ । ଠିକାଦାର ଅନେକ ସମୟରେ ଖରାପ ଜିନିଷ ଦେଇଥାଏ । ପୂଜାରୀ ମାନେ ତାହାକୁ ଯେଚ୍ଛାଚା କରି ଅସିଦ୍ଧା ମଧ୍ୟ ରଖିଦେଇ ଥାନ୍ତି । ତହିଁରେ ପୁଣି ଚଞ୍ଚୁ- ପ୍ରତ୍ୟଗ୍ରଂହର ଭାଗ, ଯାହାକୁ ପଣ୍ଡା, ସ୍ୱାର, ପଢିଆରି ମାନେ ଅଧିକ ମୂଲ୍ୟରେ ବିକ୍ରି କରିଥାନ୍ତି । ପୁଣି ଏହି ଜିନିଷ ଅନେକ ସମୟରେ ଅପ୍ରାପ୍ୟ ହୁଏ ଏବଂ କର୍ମଚାରୀ ମାନଙ୍କ ଠାରୁ ବଳିଲେ ଯାତ୍ରିମାନେ ପାଆନ୍ତି । ଯାତ୍ରିମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ସାଧନ ଓ ମନସ୍କାମନା ପୂରଣ କରିବାହିଁ ଦେବତା ମାନଙ୍କର ବିଶେଷତ୍ୱ । ଏହିକାର୍ଯ୍ୟ ସାଧନ ସଙ୍କାଶେ ପଣ୍ଡା ସ୍ୱାର ପ୍ରଭୃତି ଅନେକ ସେବକ ଏବଂ କାର୍ଯ୍ୟ ସୁପରିଭାଇଜର ଇତ୍ୟାଦ ଅନେକ ତତ୍ତ୍ୱାବଧାରକ ନିଯୁକ୍ତ ହୋଇ ଅଛନ୍ତି । ଏମାନେ ଯଦି ପବିତ୍ର ଭାବରେ ନିଜର କର୍ତ୍ତବ୍ୟ ପାଳନ ନ କରନ୍ତି ତେବେ ଦେବତାର ମହିମା, ପ୍ରତିଷ୍ଠା ଓ ପ୍ରତ୍ୟକ୍ଷତା କାହିଁ ଆସିବ ? ଅନେକ ସମୟରେ ତୀର୍ଥସ୍ଥାନ ମାନଙ୍କରେ ପଣ୍ଡା ସେବକମାନେ ଯାତ୍ରୀ ପ୍ରତି ଅତ୍ୟାଚାର କରିଥାନ୍ତି ପୁଣି ତତ୍ତ୍ୱାବଧାରକ କର୍ମଚାରୀ ମାନେ, ଯାତ୍ରି ମାନଙ୍କର କଷ୍ଟ ଅସୁବିଧା ହେଲେ ହେଉ ସିନା, ମନ୍ଦରର ଭଣ୍ଡାର ବୃଦ୍ଧି କରିବାକୁ ଚାହାନ୍ତି । ଗହମ, ଚାଉଳ, ଗୁଡ଼, ଘିଅ ଇତ୍ୟାଦ ପଦାର୍ଥ ଦରିଦ୍ରୋଚିତ ମୂଲ୍ୟରେ ଖରିଦ କରିନେଇ ଯୋଗାଇ ଦେବା ନିମନ୍ତେ ଠିକାଦାର ନିଯୁକ୍ତ ହୁଅନ୍ତି । ଏହା ଏକ ସୁନ୍ଦର ବ୍ୟବସ୍ଥା, କିନ୍ତୁ ଭଣ୍ଡାର

ବୃଦ୍ଧି ସଙ୍ଗେ ସଙ୍ଗେ ଯାତ୍ରିମାନଙ୍କର ସୁବିଧା ଓ ସ୍ୱାଚ୍ଛନ୍ଦ୍ୟ ପ୍ରତି ଲକ୍ଷ ରଖିବାକୁ ହେବ । ଏକ ଦୃଷ୍ଟାନ୍ତ ଦିଆଯାଇପାରେ । ମନେ କରନ୍ତୁ, କେହି ଲୋକ ନିଜ ବାଡ଼ିଅଟେ ନିଜ ହାତରେ ଲଗାଇ ଯେଉଁ ପରି ବଢ଼ାଇଥିବା ନଡ଼ିଆ ଗଛର ପ୍ରଥମ ଫଳଟି ରଘୁନାଥଙ୍କୁ ଦେବାକୁ ସଜିଥିଲା । ସେହି ଲୋକ ଏଥିପାଇଁ ୨୫ । ୫୦ କୋଶ ଦୂରବାଟ ଚାଲି ସେହି ପ୍ରଥମ ଫଳ ନଡ଼ିଆଟି ଧରି ଆସିଥିଲା, ସେହି ଫଳଟା ଭୋଗ କରାଇନେବା ପାଇଁ କୋଠ ଭଣ୍ଡାରରେ ଟଙ୍କାରେ ଚାରି ଅଣା ଦେବା ବାହାରେ ଠିକାଦାରଙ୍କୁ ତାହାର ଲାଭାଂଶ ଦେବାକୁ ହେଲା । ଏଥିସକାଶେ ସେହି ଯାତ୍ରୀ ଉଗ୍ରସିଙ୍କୁ ପୁଣି କେତେ ଅନୁସନ୍ଧାନ, କେତେ ଅପେକ୍ଷା, କେତେ ଅନୁସରଣ କରିବାକୁ ପଡ଼ିଲା । ପୁଣି ସମ୍ଭବତଃ ସେହି ଗରିବ ଯାତ୍ରୀ ତାହାର ପ୍ରଭୁଙ୍କଠାରେ ନୈବେଦ୍ୟ କରାଇ ନପାରି ହତାଶ ହୋଇ ଫେରିଥିଲା । ଦେବତାମାନେ ପ୍ରତ୍ୟକ୍ଷୀଭୂତ ହୋଇ ପୂଜକର ହାତରୁ ପୂଜାଦ୍ରବ୍ୟ ନେଇ ଯାନ୍ତି ବୋଲି ଶୁଣାଅଛି । କିନ୍ତୁ ବାସ୍ତବରେ ପଣ୍ଡା, ପଡ଼ିଆରି ଓ କର୍ମଚାରୀମାନେହିଁ ପ୍ରତ୍ୟକ୍ଷ ଦେବତା

ସେ ଯାହା ହେଉ ରଘୁନାଥ ଜୀଉଙ୍କ ସେବକ ପଣ୍ଡାମାନେ ଅତ୍ୟନ୍ତ ଲୋଭୀ ବା ଅତ୍ୟାଚାରୀ ଦେଖାଗଲେ ନାହିଁ । ଦୁଇ ଟଙ୍କା ଟଙ୍କେ ପାଇ କେହି ଅତୃପ୍ତ ହୋଇ ନଥିଲେ । ଓଡ଼ଗାଁ ରଘୁନାଥଙ୍କଠାରୁ ଖରଣକୂଳ ଲଡ୍ଡୁବାବାଙ୍କ ପ୍ରସାଦ ଉତ୍କୃଷ୍ଟ ବୋଧ ହୋଇଥିଲା ।

ଦେବସ୍ୱ ଭଣ୍ଡାର ଲୁଣ୍ଠନ କରିବା ଯେପରି ଅପରାଧ, ଯାତ୍ରିଙ୍କର କଷ୍ଟ ଓ ଅସୁବିଧା ସତ୍ତ୍ୱେ ଭଣ୍ଡାର ବୃଦ୍ଧି କରିବା ସେହିପରି ଅପରାଧ । ଯଥା ସମ୍ଭବରେ ଯଥାଯଥ ବୁଝାବଣା ହେଉ ଥାଉ, ପରେ ଈଶ୍ୱରଙ୍କର ଯେ ଇଚ୍ଛା ।



## ସଂସାର ବନ୍ଧନ ।

ସଂସାରର ଏକମାତ୍ର ସ୍ରଷ୍ଟା ପରାତ୍ପର ପରମେଶ୍ୱର ବିଶୁଦ୍ଧ ମୁକ୍ତ ପରମାତ୍ମା । ସେ ଆପଣାର ଉତ୍ତମ ଗୁଣ କର୍ମ ଓ ସ୍ୱଭାବାନୁସାରେ ଏହି ଚରାଚର ବିଶ୍ୱ ବ୍ରହ୍ମାଣ୍ଡର ସର୍ଜନା କରିଛନ୍ତି । ଏହି ସଂସାର କଦାପି କୌଣସି ପ୍ରକାର ବନ୍ଧନ ହୋଇ ନପାରେ । ଏହା କେବଳ ମୁକ୍ତଜୀବାତ୍ମା ମାନଙ୍କର ଅବଲୀଳାକ୍ଷେତ୍ର । ଈଶ୍ୱର ବ୍ୟାଧ ନୁହନ୍ତି ଯେ ସେ ଏକ ଫାଶ ରଚନା କରି ତହିଁରେ ଜୀବଜନ୍ତୁ ମାନଙ୍କୁ ଆବଦ୍ଧ ରଖିବେ ଏବଂ ସେମାନଙ୍କର ପ୍ରାଣ ହତ୍ୟା କରିବେ । ଜୀବାତ୍ମା ମୁକ୍ତ ଅଟେ । ମୁକ୍ତିହିଁ ତାହାର ଉଦ୍ଦେଶ୍ୟ । ମୁକ୍ତିହିଁ ତାହାର ଉପାଦାନ ଓ ପରିଣାମ । ଜୀବାତ୍ମା ଯେତେବେଳେ ଅଜ୍ଞାନ ଓ ଅନ୍ଧକାରରେ ପଡ଼ି ଈଶ୍ୱରଙ୍କ ସଂସାର ଛାଡ଼ି ନିଜର ଏକ ପୃଥକ୍ ସଂସାରର ସୃଷ୍ଟି କରେ, ଅପରିସର ସେହି ସଙ୍କୀର୍ଣ୍ଣ ସଂସାର ମଧ୍ୟରେ ବିଚରଣ କରେ, ସେତେ-

ହେଲେ ସେ ନିଶ୍ଚୟ ବନ୍ଧନରେ ପଡ଼େ, ଯେହେତୁ ତାହାର ସେହି କଳ୍ପିତ ସଙ୍କୀର୍ଣ୍ଣ ସଂସାର ଆଉ କିଛି ନୁହେ, କେବଳ ଜାଲ, ପାଶ ବା ବନ୍ଧନ ବିଶେଷ । ଏହି କଳ୍ପିତ ସଙ୍କୀର୍ଣ୍ଣ ଅସାର ସଂସାରକୁ ନଷ୍ଟ କଲେ ଜୀବ ବନ୍ଧନରୁ ଉଦ୍ଧାର ପାଇ ମୁକ୍ତିଲାଭ କରେ । ପରମାତ୍ମା ପରମେଶ୍ୱର ଅଟନ୍ତି ସର୍ବଜ୍ଞ,ସର୍ବ ଶକ୍ତିମାନ୍,ସର୍ବ ଅନ୍ତର୍ଯାମୀ । ସେସବୁ ଆଡୁ ଦେଖି ଶୁଣି ବୁଝି ସୁଝି,ବିଚାର କରି ଯେଉଁ ଉତ୍ତମର ବିଶ୍ୱ ବ୍ରହ୍ମାଣ୍ଡ ରଚନା କରିଛନ୍ତି, ତହିଁରେ କୌଣସି ଭୁଲ ନାହିଁ, ତ୍ରୁଟି ନାହିଁ, ଦୁଃଖ କ୍ଳେଶ ନାହିଁ, ଶୋକ ସନ୍ତାପ ନାହିଁ । ଈଶ୍ୱରଙ୍କର ନିୟମାନୁବର୍ତ୍ତୀ ହୋଇ ତାହାଙ୍କ ଆଦେଶ ପାଳନ କଲେ ପ୍ରାଣି ମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ, ଶାନ୍ତି ଓ ଉନ୍ନତି ନିମନ୍ତେ ତହିଁରେ ଯଥେଷ୍ଟ ଉପାଦାନ ରହିଛି ଅଛି ଏବଂ ଆପଣା ଆପଣା ଧର୍ମ କର୍ମାନୁସାରେ ଫଳାଫଳ ଭୋଗର ବ୍ୟବସ୍ଥା ଅଛି । ପ୍ରାଣିମାନଙ୍କର ଅଧର୍ମ, ଅକର୍ମ,ଅନ୍ୟାୟ,ଅକୀର୍ତ୍ତି କେବଳ ଈଶ୍ୱରଙ୍କ ବ୍ୟବସ୍ଥାନୁସାରେ ସେମାନଙ୍କର ବନ୍ଧନର କାରଣ ।

ଅଜ୍ଞାନ ଓ ଅଯଥା ସ୍ୱାର୍ଥସାଧନଯୋଗୁଁ ଉଦ୍‌ବେଗସ୍ୱଜନର ସଂସାର କଦାକାର ଧାରଣ କରିଅଛି, ମାୟା, ମିଥ୍ୟାପର ପ୍ରତୀତ ହୋଇଛି । ପୁଣି ମିଥ୍ୟା, ଅକର୍ମ ବା ଆଳସ୍ୟ ହେତୁ ସୁଖ ଓ ଆନନ୍ଦ ମୟ ସଂସାର ଶୋକସନ୍ତାପର ଆକର ହୋଇଅଛି । ଲୋକ ଯେତେବେଳେ ଅଜ୍ଞାନ ହୁଏ, ସଙ୍କୀର୍ଣ୍ଣସ୍ୱାର୍ଥ ପରିବେଷ୍ଟିତ ରହେ, ସେତେବେଳେ ବିଷୟ ଜଞ୍ଜାଳରେ ମୋହିତ ହୋଇ ଅମୃତ ମୟ ସଂସାରକୁ ବିଷତୁଲ୍ୟ ଜ୍ଞାନକରେ ଏବଂ ସର୍ବଦା ବନ୍ଧନରେ ପଡ଼ି ପରିଣାମରେ ବିଷମ ନରକ ଭୋଗ କରେ, ଅର୍ଥାତ୍ ଜନ୍ମ ଜନ୍ମାନ୍ତର ଦୁଃଖ, ଦାରିଦ୍ର୍ୟ, ବେଦନା, ଯନ୍ତ୍ରଣା ଇତ୍ୟାଦି ଭୋଗ କରେ । ମୁକ୍ତି—ସୁଖ ଭୋଗ କରିବାକୁ ହେଲେ ସଂସାର ପ୍ରତି ବିରାଗ ଓ ବିରକ୍ତ ହେବା କିମ୍ବା ସଂସାର ପରିତ୍ୟାଗ କରିବା ଅନାବଶ୍ୟକ । ଯେଉଁମାନେ ସଂସାର ପରିତ୍ୟାଗ କରନ୍ତି, ସେମାନେ ସଂସାର ସୁଖରୁ ବଞ୍ଚିତ ହୁଅନ୍ତି ପୁଣି ସଂସାରରୂପ କର୍ମକ୍ଷେତ୍ରରେ ଯୋଗ ନଦେଇ ଈଶ୍ୱର ନିର୍ଦ୍ଦିଷ୍ଟ ନିୟମ ଲଙ୍ଘନ କରିବା ହେତୁ ସ୍ୱର୍ଗ ରାଜ୍ୟରୁ ବିତାଡ଼ିତ ହୁଅନ୍ତି, ଅର୍ଥାତ୍ ଭାବି ସୁଖ ବା ମୁକ୍ତାବସ୍ଥାରୁ ବଞ୍ଚିତ ହୁଅନ୍ତି ।

ତ୍ୟାଗ କହିଲେ ଈଶ୍ୱରଙ୍କର ଏହି ସଂସାର ପରିତ୍ୟାଗ କରିବା ନୁହେ, ନିଜର ଗଢ଼ା କ୍ଷୁଦ୍ରତମ, ନୀଚ ସ୍ୱାର୍ଥ ବିଜଡ଼ିତ ସଙ୍କୀର୍ଣ୍ଣ ସଂସାର ତ୍ୟାଗ କରିବାହିଁ ତ୍ୟାଗ । ଯେଉଁମାନେ ତ୍ୟାଗୀ, ବୈରାଗୀ ବା ସନ୍ନ୍ୟାସୀ ହୁଅନ୍ତି ସେମାନେ କେବଳ ଏହି କ୍ଷୁଦ୍ର ସଙ୍କୀର୍ଣ୍ଣ ସ୍ୱାର୍ଥ ବିଜଡ଼ିତ ସଂସାରକୁ ତ୍ୟାଗ କରନ୍ତି । ସ୍ୱଦେଶହିତୈଷୀ, ଜାତ୍ୟଭିମାନୀ, ଦେଶନେତା, ଦେଶପ୍ରାଣ, ଦେଶ ସେବକ, ସ୍ୱେଚ୍ଛାସେବକ, ଲୋକନାୟକ ଇତ୍ୟାଦି ନାମରେ ଅନେକ ଲୋକ ଆପଣାକୁ ତ୍ୟାଗୀ ବୋଲି ପରିଚୟ ଦିଅନ୍ତି ପୁଣି ସଭା ସମିତିରେ ବକ୍ତୃତା କରି ଲୋକ ସମାଜରେ ଆନ୍ଦୋଳନ ଲଗାଇ ରାଜନୈତିକ, ବୈଷୟିକ ଓ ସାମାଜିକ ଉନ୍ନତି ସାଧନ ପ୍ରୟାସ କରନ୍ତି; କିନ୍ତୁ ଏମାନେ ପ୍ରକୃତ ତ୍ୟାଗୀ ନୁହନ୍ତି । ଏମାନଙ୍କ କର୍ମ ମୂଳରେ ପ୍ରଚ୍ଛନ୍ନ ଭାବରେ ସ୍ୱାର୍ଥନିହିତ ଥାଏ ଏବଂ କର୍ମ ପରିଣାମରେ ସ୍ୱାର୍ଥ ସାଧନ ପ୍ରତି ଲକ୍ଷ୍ୟଥାଏ । ଏମାନଙ୍କର ସଂସାର ହିତକାମନା କେ

ସାର୍ବଜନୀନ ଉପକାର ସାଧନରେ, ମନୁଷ୍ୟତା ପ୍ରଦର୍ଶନରେ କମ୍ବା ଅଧ୍ୟାତ୍ମ ଚର୍ଚ୍ଚାରେ ସ୍ୱଦେଶୀୟ ସ୍ୱଜାତୀୟ, ପାରିବାରିକ କମ୍ବା ନିଜର ବ୍ୟକ୍ତିଗତ ସ୍ୱାର୍ଥାଭିଳାଷ ପ୍ରଚ୍ଛନ୍ନ ଭାବରେ ନିହତଥାଏ । ସୁତରାଂ ଏମାନେ ପରଣାମରେ ଅକୃତକାର୍ଯ୍ୟ ହୁଅନ୍ତି । ଉଗଭୂଲା କାଳରେ,ମୂଢ ଜନ ସମାଜରେ ବାହ୍ୟାଡମ୍ବର ମାତ୍ର ସାରହୁଏ । ଏହା ସ୍ୱାର୍ଥତ୍ୟାଗ ନୁହେ, ଏହାହିଁ ଆତ୍ମ ପ୍ରତାରଣା ।

ଫଳ କାମନା କଦାପି ନିଃସ୍ୱାର୍ଥ ହୋଇ ପାରେ ନାହିଁ । ଫଳକାମନାରେ ସ୍ୱାର୍ଥ ନିହତ ଅଛି । ଯେଉଁମାନେ କର୍ମଫଳ ତ୍ୟାଗୀ, ସେମାନେହିଁ ସ୍ୱାର୍ଥତ୍ୟାଗୀ, ସଂସାର ହିତୈଷୀ ଏବଂ ଈଶ୍ୱର ପରାୟଣ । ସଂସାର ବା କର୍ମତ୍ୟାଗ କଲେ ଈଶ୍ୱରତ୍ୱ ବା ମୁକ୍ତିଲାଭ ହୋଇ ପାରେ ନାହିଁ;ସୁତରାଂ ତ୍ୟାଗୀ କେବଳ ପ୍ରକୃତ କର୍ମୀ । ଈଶ୍ୱରଙ୍କର କର୍ମ ଓ ଫଳରେ କୌଣସି ପ୍ରଭେଦ ନାହିଁ;ତାହାଙ୍କଦୃଷ୍ଟିରେ କର୍ମହିଁ ଫଳ ଏବଂ ଫଳହିଁ କର୍ମ । ସେହିପରି ମନୁଷ୍ୟ ଯେତେବେଳେ ସ୍ୱାର୍ଥତ୍ୟାଗ କରି ସଂସାର ପାଇଁ କର୍ମକରେ ସେତେବେଳେ ତାହାର କର୍ମ ଓ ଫଳ ମଧ୍ୟରେ ଆଉ ପ୍ରଭେଦ ରହି ପାରେ ନାହିଁ । ସେତେବେଳେ ସେହି ପୁରୁଷହିଁ ପ୍ରକୃତ କର୍ମୀ ବା ତ୍ୟାଗୀ ହୁଏ । ଗୀତାରେ କୁହାଅଛି, କର୍ମଫଳ ତ୍ୟାଗ କର ଏବଂ କର୍ମକର । କିନ୍ତୁ ଫଳ କାମନା ବ୍ୟତୀତ କଦାପି କୌଣସି କର୍ମ କରାଯାଇ ପାରେ ନାହିଁ; ସୁତରାଂ କର୍ମର ଯେପରି ଫଳ ଅବଶ୍ୟମ୍ଭାବୀ, ସେହିପରି କର୍ମୀ ପୁରୁଷର ଫଳ କାମନା ଅନିବାର୍ଯ୍ୟ । କର୍ମର ପରିଣତି ଅଟେ କର୍ମଫଳ ଅର୍ଥାତ କର୍ମ ଫଳହିଁ କର୍ମର ପୂର୍ଣ୍ଣାଙ୍ଗ ବା ପୂର୍ଣ୍ଣ ବିକାଶ ମାତ୍ର । କର୍ମ ଦେହରେ ଫଳର ସତ୍ତା ନିହିତ ଅଛି, ସୁତରାଂ କର୍ମଫଳ କଦାପି କର୍ମରୁ ପୃଥକ ନୁହେ । ତେବେ କର୍ମ କଲାବେଳେ ପୃଥକ ଫଳ ଚିନ୍ତା କରିବା କି ଆବଶ୍ୟକ ? ସଂସାରରୁ ପୃଥକ ଯେଉଁ ବ୍ୟକ୍ତିଗତ କର୍ମଫଳ, ତାହାହିଁ ସ୍ୱାର୍ଥଚିନ୍ତା ବା ଫଳ କାମନା । ଏହି କର୍ମର ପରିଣତି , କର୍ମାଂଶ ବା କର୍ମଫଳ ନୁହେ । ଏହି ଫଳ କାମନା ଥିବାଯାକ ଲୋକ ସ୍ୱାର୍ଥପର, କଦାପି ସଂସାରପର ବା ଈଶ୍ୱରପର ହୋଇପାରେ ନାହିଁ । ଯେତେବେଳେ ଈଶ୍ୱରାର୍ଥେ ଅର୍ଥାତ୍ ସଂସାରାର୍ଥେ କର୍ମ କରାଯାଏ, ସେତେ ବେଳେ ସେହି କର୍ମହିଁ ତାହାର ଫଳ, ଫଳ ସକାଶେ ଆଉ ପୃଥକ କାମନା କରାଯାଏନାହିଁ । ସେତେବେଳେ ଲୋକ ଫଳ ତ୍ୟାଗୀ ବା ପ୍ରକୃତ କର୍ମୀ ହୁଏ । ଅତଏବ ନିଃସ୍ୱାର୍ଥପରତାହିଁ ପ୍ରକୃତ ସ୍ୱାର୍ଥସାଧନ ଏବଂ କର୍ମଫଳ କାମନା ତ୍ୟାଗହିଁ ପ୍ରକୃତ ଫଳାକାଂକ୍ଷା ।

ଧର୍ମାର୍ଥ ନିର୍ଘଣ୍ଟ୍ୟ ସ୍ୱାର୍ଥପରତା ବା କର୍ମଫଳାଶାହିଁ ଏହି ସଂସାରରେ ପ୍ରଧାନ ବନ୍ଧନ । ଏହି ଫଳାଶା ତ୍ୟାଗକଲେ ସଂସାର ବନ୍ଧନ ଛିନ୍ନ ହୋଇଯାଏ, ମର୍ତ୍ତ୍ୟ ଓ ସ୍ୱର୍ଗର ପ୍ରଭେଦ ରହେ ନାହିଁ, ଏହି ଅସାର ସଂସାର ସ୍ୱର୍ଗ ରାଜ୍ୟରେ ପରିଣତ ହୁଏ,ଯେହେତୁ ଏଥିରେ ଶୋକ ସନ୍ତାପ ରହେ ନାହିଁ ଏବଂ ସୁଖ ଶାନ୍ତି ଲାଭ ହୁଏ । ଏହି ବନ୍ଧନରୁ ସଂସାର ବନ୍ଧନ ନ କହି ଆତ୍ମବନ୍ଧନ କହିଲେ ଅଧିକ ସମୁଚିତ ହେବ । କର୍ମ ଫଳାଶା ପାଶହିଁ ପ୍ରାଣିର ବନ୍ଧନ ଏହି ବନ୍ଧନ ଛିଣ୍ଡାଇ ଦେଲେ ସଂସାର ବନ୍ଧନ ଛିନ୍ନ ହୁଏ ଏବଂ ଜୀବ ଜୀବନ୍ମୁକ୍ତ ହୁଏ ।

ମନରୁ ସ୍ୱାର୍ଥଚିନ୍ତା ଦୂର କଲେ, ସଂସାର ହିତକାମନା କଲେ କର୍ମଫଳାଶା ସ୍ୱତଃ ବହୂରିତ ହୁଏ । କର୍ମଫଳାଶା ସଙ୍ଗେ ସଙ୍ଗେ ସଂସାର ବନ୍ଧନ ଛିନ୍ନ ହୋଇଯାଏ । ସ୍ୱାର୍ଥଚିନ୍ତା ଦୂର କଲେ, ସଂସାର ହିତକାମନା କଲେ କର୍ମଫଳାଶା ସ୍ୱତଃ ବହୂରିତ ହୁଏ । କର୍ମଫଳାଶା ସଙ୍ଗେ ସଙ୍ଗେ ସଂସାରବନ୍ଧନ ବା ଆତ୍ମବନ୍ଧନ ଛିନ୍ନ ହୋଇଯାଏ । ଅତଏବ ସ୍ୱାର୍ଥଚିନ୍ତାହିଁ ଆତ୍ମବନ୍ଧନ । ଯଦି ସ୍ୱାର୍ଥରକ୍ଷା କରିବାକୁ ହେବ, ତେବେ ପରାର୍ଥ ବା ବିଶ୍ୱଜନାର୍ଥ ସ୍ୱାର୍ଥରକ୍ଷା କରିବାକୁ ହେବ । ପରାର୍ଥ ସାଧନ ଦ୍ୱାରା ସ୍ୱାର୍ଥସିଦ୍ଧି ଲାଭ ହୁଏ । କର୍ମ ଓ ଫଳ ମଧ୍ୟରେ ଯେପରି ଅଭେଦ, ସ୍ୱାର୍ଥ ଓ ପରାର୍ଥ ସେହିପରି ଏକୀଭୂତ ହୋଇଯାଏ । ପରମାତ୍ମାଙ୍କର ସର୍ବବ୍ୟାପକତା ଅନୁଭୂତ ହୁଏ ଏବଂ ସଂସାର ବନ୍ଧନ ଛିନ୍ନ ହୋଇଯାଏ ।

## ମୂର୍ତ୍ତି ପୂଜା ।

ଗତ ଉତ୍କଳବାସୀ ୧୦ ସଂଖ୍ୟାରେ ବ୍ରହ୍ମଶୈଳ ସମୀପ ନିବାସୀ ଶ୍ରୀ ସୁଦର୍ଶନ ବ୍ରହ୍ମା ମୂର୍ତ୍ତିପୂଜା ସମ୍ବନ୍ଧେ ଯେଉଁ ପ୍ରଶ୍ନ କରି ଅଛନ୍ତି, ତାହା ମୁଁ ଦେଖିବା ପୂର୍ବେ ଏହି ପ୍ରବନ୍ଧଟି ଲିପିବଦ୍ଧ କରିଥିଲି । ଏହି ପ୍ରବନ୍ଧଟି ଉକ୍ତ ପ୍ରଶ୍ନର ଆଂଶିକ ଉତ୍ତର ହେବ, ଏହି ବିବେଚନା କରି ତାହା ସମ୍ପ୍ରତି ପ୍ରକାଶ କରୁଅଛୁ ।

"କାଷ୍ଠ ପାଷାଣ ଲୋହମାନ ଏସବୁ ଅଜ୍ଞାନ ଦେବତ" ଈଶ୍ୱର ସର୍ବ ବ୍ୟାପୀ ଅଟନ୍ତି ସେ ସର୍ବଜ୍ଞାତା ସର୍ବ ଅନ୍ତର୍ଯାମୀ ଓ ସର୍ବଶକ୍ତିବାନ୍ । 'ଦେବତା' ପଦର ଅର୍ଥ ଯଦି ଏହି ଈଶ୍ୱର, ତେବେ ସେ କପରି ଅଜ୍ଞାନ ହେବେ ? ଦେବତା ଅଜ୍ଞାନ ନୁହନ୍ତି । ଅଜ୍ଞାନ ଦେବତାର ଅର୍ଥ ଅଜ୍ଞାନମାନଙ୍କର ଦେବତା ।

ଅଜ୍ଞାନମାନେ କାଷ୍ଠ ପାଷାଣାଦି ବସ୍ତୁକୁ ଈଶ୍ୱର ବା ଈଶ୍ୱରାଂଶ ଜ୍ଞାନ କରିଥାନ୍ତି । ବ୍ରାହ୍ମବାଦୀମାନେ କାଷ୍ଠ ପାଷାଣାଦି ବସ୍ତୁରେ ଈଶ୍ୱରତ୍ୱ ଆରୋପ କରନ୍ତି ନାହିଁ । କେହି କେହି ସମାଜଧର୍ମ ନେତାମାନେ ପିତୁଳ ଅର୍ଚ୍ଚନାର ବହୁବିଧ କାରଣମାନ ଦର୍ଶାଇ ତାହାର ପ୍ରତିଷ୍ଠାର ଔଚିତ୍ୟ ପ୍ରତିପାଦନ ପ୍ରୟାସ କରନ୍ତି; କେହି କେହି କହନ୍ତି ଯେ ଏକାଗ୍ରଚିତ୍ତ ସାଧନ ସୁବିଧାରେ ପ୍ରତିମାର ପ୍ରତିଷ୍ଠା କରାଯାଇ ଅଛି, କେହି କେହି କହନ୍ତି ଯେ ନିର୍ବୋଧ ଅଜ୍ଞାନ ଓ ବାଳକମାନଙ୍କ ସକାଶେ ଏହା ଈଶ୍ୱରଜ୍ଞାନର ସୋପାନ ଅଟେ । ଏହିପରି ଅନେକ ଲୋକେ ଅନେକ ପ୍ରକାର ଏହାର ଯୌକ୍ତିକତା ସମର୍ଥନ କରୁ ଅଛନ୍ତି । କିନ୍ତୁ ଏହି ରୀତିର ଉତ୍ପତ୍ତି, କାରଣ ଓ କାର୍ଯ୍ୟ ପ୍ରଣାଳୀ ଯାହା ହେଉଥାଉ, ପରିଣାମ ଫଳରେ ଏହା ଲୋକସାଧାରଣଙ୍କୁ ଆଜୀବନ ବଂଶ-ପରମ୍ପରାକ୍ରମେ ଅମୂଳକ ଭ୍ରାନ୍ତିର ବଶୀଭୂତ କରିପକାଇ ଅଛି । ଏମାନେ ଚିରଭ୍ୟାସ ଓ ଅଜ୍ଞାନ ବଶତଃ ସୃଷ୍ଟ ବସ୍ତୁକୁ ସଚିଦାନନ୍ଦ ସ୍ରଷ୍ଟା ସ୍ୱରୂପ ଜାଣି ପରିଣାମରେ ଈଶ୍ୱର

ଜ୍ଞାନ ଲାଭରୁ ବଞ୍ଚିତ ହୁଅନ୍ତି ଏବଂ ମୂର୍ଖ ପାଷଣ୍ଡତ୍ୱ ଆସି ସେମାନଙ୍କ ହୃଦୟରେ ଅନ୍ଧକାର ରାଜତ୍ୱ ସ୍ଥାପନ କରେ । ଅତଏବ ଏକମାତ୍ର ଈଶ୍ୱର ପରିତ୍ୟାଗ ପୂର୍ବକ ବିଭିନ୍ନ ଆକାର ଦେବଦେବୀ ଉପାସନା ଏକ ଗୁରୁଙ୍କର ଦୁଇ ପଦକୁ ଦୁଇଗୁରୁ ଭାବନା କରିବା ସଙ୍ଗେ ସମାନ । ଯଦି ଲୋକନାଥ ଓ ଜଗନ୍ନାଥ ବିଭିନ୍ନ, ତେବେ ସେ ଅବଶ୍ୟ ପ୍ରକୃତ ପରମେଶ୍ୱର ଗୁରୁଙ୍କର ଦୁଇ ପାଦ ସ୍ୱରୂପ ଅଟନ୍ତି । ପାଠକ ଭ୍ରାତୃମାନେ, ଦୁର୍ଦ୍ଦୈବ ବଶ୍ୟତଃ ଆମ୍ଭେମାନେ ଉକ୍ତ ପଦଦ୍ୱୟ ମର୍ଦ୍ଦନ କରୁ ଅଛୁଁ ପୁଣି ଅଜ୍ଞାନ ଦେବତାଙ୍କୁ ଘେନ ପରସ୍ପର କଳହ କରୁଅଛୁଁ ।



# ସତ୍ୟାଗ୍ରହ ।

ସମସ୍ତ ପାର୍ଥିବ ଓ ପାରତ୍ରିକ ବସ୍ତୁ ମଧ୍ୟରେ ସର୍ବପ୍ରଧାନ, ସର୍ବଶ୍ରେଷ୍ଠ ଅଟେ ସତ୍ୟ । ଯାହା ଠିକ୍, ନ୍ୟାଯ୍ୟ ଓ ଧର୍ମସଙ୍ଗତ ପୁଣି ବିବେକାନୁମୋଦିତ ତାହାହିଁ ସତ୍ ବା ସତ୍ୟ । ଏହି ସତ୍ୟପ୍ରତି ଆମ୍ଭର ଏକାଗ୍ର ଆଗ୍ରହକୁ ସତ୍ୟାଗ୍ରହ କୁହାଯାଏ । ସତ୍ୟାଗ୍ରହ ନିକଟରେ ରାଗ, ଦ୍ୱେଷ ହିଂସା, ହତ୍ୟା ଇତ୍ୟାଦି କଦାପି ତିଷ୍ଠି ପାରେ ନାହିଁ । ଦ୍ୱେଷ, ହିଂସାଦି ଅଧର୍ମ ବା ଅସତ୍ୟରୁ ସତ୍ୟାଗ୍ରହ ଜାତ ହୁଏନାହିଁ । ରାଗ, ଦ୍ୱେଷ, ହିଂସା, ହତ୍ୟା ଇତ୍ୟାଦି ଅଟେ ସତ୍ୟାଗ୍ରହର ଠିକ୍ ବିପରୀତ । ଅହିଂସା ଧର୍ମ ବା ତ୍ୟାଗଧର୍ମକୁ ସତ୍ୟାଗ୍ରହ କୁହାଯାଏ । ସହିଷ୍ଣୁତା, ଧୈର୍ଯ୍ୟ, କ୍ଷମା ଏବଂ ତ୍ୟାଗ— ଏହି ଉପାଦାନରେ ସତ୍ୟାଗ୍ରହ ଗଠିତ । ସତ୍ୟାଗ୍ରହରେ ଜିଗୀଷା ବା କୌଣସି ପ୍ରକାର ସ୍ୱାର୍ଥାଭିଳାଷ ଥାଏ ନାହିଁ । କେବଳ କର୍ତ୍ତବ୍ୟଜ୍ଞାନରୁ ସତ୍ୟାଗ୍ରହର ଉତ୍ପତ୍ତି । ସତ୍ୟାଗ୍ରହ ଅଟେ ମାନବର ମେରୁଦଣ୍ଡ ଏବଂ ମନୁଷ୍ୟର ମନୁଷ୍ୟତା ପୂର୍ଣ୍ଣ ସମ୍ପ୍ରସାରଣର ଆଧ୍ୟାତ୍ମିକ ଶକ୍ତି । ମନୁଷ୍ୟର ଏହାହିଁ ଧର୍ମଯୁଦ୍ଧ । ଏହି ଯୁଦ୍ଧରେ ହତ୍ୟା ନାହିଁ, ରକ୍ତପାତ ନାହିଁ, ପ୍ରତିରୋଧ ନାହିଁ ବା ତିରସ୍କାର ନାହିଁ କିନ୍ତୁ ଏହା ଅଦମ୍ୟ, ଅପରାଜେୟ, ଏହା ଆଗରେ ସମସ୍ତ ଜଗତ ପରାଜିତ, ନତମସ୍ତକ । ଏହାର ନିର୍ଦ୍ଦିଷ୍ଟ ସୀମା ନାହିଁ, ସମୟ ନାହିଁ, ଅବସ୍ଥା ନାହିଁ, କିମ୍ବା ବ୍ୟକ୍ତିବିଶେଷର ସ୍ଥାନ ବା ଯୋଗ୍ୟତା ନାହିଁ । ପୁଣି ଏହାର ପରିଣାମରେ ପରିତାପ ନାହିଁ, ବିଚ୍ଛେଦ ନାହିଁ ବା ନୈରାଶ୍ୟ ନାହିଁ । ବର୍ଜନ କରିବା ଏହାର ନୀତି ନୁହେଁ; ସହନଶୀଳତାହିଁ ଏହାର ମୂଳଭିତ୍ତି । ନିଜର ପଦାର୍ଥକୁ ପ୍ରେମ କରିବାପାଇଁ ପରର ପଦାର୍ଥ ପରିତ୍ୟାଗ କରିବା ଅନାବଶ୍ୟକ । ସତ୍ୟାଗ୍ରହ କରିବା ଲାଗି ଶତ୍ରୁ ଆଚରଣ କରିବାକୁ ପଡ଼େନାହିଁ । ନିର୍ମମ ଏବଂ ଅନାସକ୍ତ ଭାବରେ ବିବେକାନୁମୋଦିତ କର୍ତ୍ତବ୍ୟ ପାଳନ କରିବାହିଁ ସତ୍ୟାଗ୍ରହ । ଅନ୍ୟର ହାନି କରିବା ପାଇଁ ନୁହେଁ କିମ୍ବା ନିଜର କୌଣସି ସ୍ୱାର୍ଥସାଧନ କରିନେବାପାଇଁ ନୁହେଁ, କିନ୍ତୁ ଆପଣାର କର୍ତ୍ତବ୍ୟ ପାଳନ କରିବା ପାଇଁ ସତ୍ୟାଗ୍ରହ କରିବାକୁ ହୁଏ । ବୋଲିବା, ବାରଣ କରିବା, ମାରିବା କିମ୍ବା ମରିବା ଇତ୍ୟାଦି

ପରଶକ୍ତିଦ୍ୱାରା ପରିଶୃଙ୍ଖଳିତ ହେବା କଥା, କିନ୍ତୁ ଫଳାଫଳ ବା ସମ୍ପଦ ବିପଦ ପ୍ରତି ଭ୍ରୂକ୍ଷେପ ନକରି ସତ୍ୟାଗ୍ରହ ପ୍ରକାଶ କରିବାହିଁ ଆତ୍ମଶକ୍ତି ।

ପଶୁଭାବାପନ୍ନ ପାମର ମାନଙ୍କର ସତ୍ୟାଗ୍ରହ ନଥାଏ । ସତ୍ୟାଗ୍ରହ ବ୍ୟତିରେକେ ଆତ୍ମ ସମ୍ମାନ ଜାତ ହୁଏ ନାହିଁ । ଯେଉଁମାନେ ଭୀରୁ, ସ୍ୱାର୍ଥପର, ଅସହିଷ୍ଣୁ, ପରଶ୍ରୀକାତର ଏବଂ ହିଂସା ପ୍ରଣୋଦିତ ସେମାନଙ୍କର ସତ୍ୟାଗ୍ରହ ନଥାଏ । ସେମାନେ କେବଳ ସମୟୋଚିତ, କୌଶଳ ପ୍ରିୟ, ଅଧ୍ୟାତ୍ମଭାବ ବର୍ଜିତ, ବିଷୟାଭିଭୂତ, ଅପରିଣାମଦର୍ଶୀ ଏବଂ ସଦ୍ୟ ସୁଖ ଅଭିଳାଷୀ । ସେମାନେ ଆତ୍ମ ବିକ୍ରୟ କରି ଆତ୍ମ ସମ୍ମାନ ଏବଂ ଆତ୍ମଶକ୍ତି ନଷ୍ଟକରି ପଦ ଏବଂ ପ୍ରତିଷ୍ଠା ପ୍ରୟାସୀ ହୁଅନ୍ତି ପୁଣି କୌଣସିମତେ କିଛି କାର୍ଯ୍ୟ ସାଧନ କରି ନିଅନ୍ତି । କିନ୍ତୁ ତଦ୍ୱାରା ପରି-ଣାମରେ ସେମାନଙ୍କ ମଙ୍ଗଳ ବା ଲୋକର ହିତ ସାଧିତ ହୁଏ ନାହିଁ । ଏମାନେ କାହାର ସତ୍ୟାଗ୍ରହ ଦେଖିଲେ ଚମକି ପଡନ୍ତି, ତହିଁରୁ ଅମଙ୍ଗଳ ଆଶଙ୍କା କରନ୍ତି ପୁଣି ସତ୍ୟାଗ୍ରହକାରୀ ବିରୋଧରେ ଖଡ଼ଗହସ୍ତ ହୁଅନ୍ତି । କିନ୍ତୁ ସତ୍ୟାଗ୍ରହକାରୀ ଏହି ବିଭୀଷିକା ପ୍ରତି ଭ୍ରୂକ୍ଷେପ କରେ ନାହିଁ, ଯେହେତୁ ସେ ସତ୍ୟପାଇଁ ପ୍ରାଣ ପର୍ଯ୍ୟନ୍ତ ପରିତ୍ୟାଗ କରିବାକୁ ସର୍ବଦା ପ୍ରସ୍ତୁତ । କେହି ବ୍ୟକ୍ତି ଉଚ୍ଚତମ ଅଧିକାର ପ୍ରାପ୍ତ ହୋଇଥାନ୍ତୁ, ସମ୍ରାଟଙ୍କ ସଭାରେ ସଦସ୍ୟ ହୋଇଥାନ୍ତୁ, ଯଦି ତାହାଙ୍କର ସତ୍ୟାଗ୍ରହ ନାହିଁ, ସେହି ଅଧିକାର, ସେହି ସଭ୍ୟତାରେ ଓ ସେହି ସମ୍ପଦରେ କି ପ୍ରୟୋଜନ ? ବରଂ ନିର୍ଦ୍ଧନ, ନିରାଶ୍ରୟ, ନିର୍ଜୀବ ରହିବା ଶ୍ରେୟସ୍କର ।

ସତ୍ୟାଗ୍ରହ ଦ୍ୱାରା ରାଜା, ପ୍ରଜା, ଜମିଦାର ରୟତ, ପିତା ପୁତ୍ର, ଆଚାର୍ଯ୍ୟ ଛାତ୍ର, ସମସ୍ତଙ୍କର ମଙ୍ଗଳ ସାଧିତ ହୁଏ । ଅତଏବ ଆବାଳବୃଦ୍ଧବନିତା ପ୍ରତ୍ୟେକ ଲୋକର ସତ୍ୟାଗ୍ରହ କରିବା ଉଚିତ । ଶୈଶବରୁ ପିଲାମାନେ ସତ୍ୟାଗ୍ରହ କରିବା ଶିଖନ୍ତୁ, ଯେପରି କି ସେମାନେ ଭାବୀ ଜୀବନରେ କଦାପି ସତ୍ୟାଗ୍ରହ ପରିତ୍ୟାଗ କରି ପାରିବେ ନାହିଁ ।



## ଈଶ୍ୱରଙ୍କ ଅବତାର ବାଦ

ଅବତରଣର ଅର୍ଥ ଅବରୋହଣ, ଓହ୍ଲାଇବା ବା ନିମ୍ନଗତ କରିବା, ତେବେ ଈଶ୍ୱରଙ୍କର ଅବତରଣ କିପରି ସମ୍ଭବ ହୋଇପାରେ ? ଈଶ୍ୱର କେଉଁ ସ୍ଥାନରୁ ଅବରୋ-ହଣ କରିବେ, ଏବଂ କେଉଁ ନିମ୍ନ ପ୍ରଦେଶକୁ ଗତି କରିବେ ? ଈଶ୍ୱର ଅଟନ୍ତି ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବଶକ୍ତିମାନ୍ । ଈଶ୍ୱର ନ ଥାଇ କେଉଁ ସ୍ଥାନ ବା ଅଛି ଯେ ସେ ଉକ୍ତ ସ୍ଥାନରେ ଅବତୀର୍ଣ୍ଣ ହେବେ । ପରମାତ୍ମା ପରମେଶ୍ୱରଙ୍କର ଅବତରଣ ବା ଅବତାର ଏକାନ୍ତ ଅସମ୍ଭବ । ଏହି ସଂସାରର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ ଅଟନ୍ତି ସେହି ପରମେଶ୍ୱର ।

ଯିବ ବା ଈଶ୍ୱର ଅବତରଣ କରନ୍ତୁ ବା ଅବତାର ଗ୍ରହଣ କରନ୍ତୁ, ତେବେ ଏହି ସଂସ୍କାର ବା ସମସ୍ତ ସୃଷ୍ଟିହିଁ ଈଶ୍ୱରାବତାର । ଜୀବ ଯେତେବେଳେ ସଂସାରକୁ ଅତିକ୍ରମ କରି ବିଶୁଦ୍ଧ ଈଶ୍ୱରସତ୍ତା ଉପଲବ୍ଧି କରେ, ସେତେବେଳେ ସେ କୌଣସି ଅବତାର ଅନୁଭବ କରେ ନାହିଁ । ପୁଣି ଯେତେବେଳେ ଈଶ୍ୱରଙ୍କୁ ପୃଥକ୍‌ରଖି ତାହାଙ୍କର ସୃଷ୍ଟି ଏହି ସଂସାରପ୍ରତି ଦୃଷ୍ଟି ନିକ୍ଷେପ କରେ ତେବେ ସେ ଏହି ଜୀବାତ୍ମା ଓ ସଂସାରକୁହିଁ ଈଶ୍ୱରଙ୍କର ଅବତାର ଜ୍ଞାନ କରେ ।

ତେବେ ଏହି ଅବତାର ବାଦର ଉତ୍ପତ୍ତି ଓ ଅର୍ଥ କଣ ? ଜୀବାତ୍ମାର ଅବତରଣ ଅଛି । ଜୀବାତ୍ମା, ଦେବ, ମାନବ, ଗନ୍ଧର୍ବ, ପିଶାଚ ଇତ୍ୟାଦି ରୂପରେ ଅବତୀର୍ଣ୍ଣ ହୁଏ, ପ୍ରଳୀ କଲ୍ପାନ୍ତରେ ମୁକ୍ତଜୀବ ମଧ୍ୟ ପୁନରପି ଜନ୍ମ ଗ୍ରହଣ କରେ । ମୁକ୍ତ ଜୀବ ପକ୍ଷରେ ଏହି ପୁନର୍ଜନ୍ମ ଗ୍ରହଣକୁ ଅବତରଣ କୁହାଯାଇପାରେ । ଗୁଣ କର୍ମ ଓ ସ୍ୱଭାବାନୁସାରେ ଜୀବାତ୍ମାର ସୃଷ୍ଟିକ୍ରମ ପ୍ରକାରେ ଅବତରଣ ବା ଉତ୍ତରଣ ହୋଇପାରେ । ଅର୍ଥାତ୍ ପ୍ରାଣିମାନେ ଊର୍ଦ୍ଧ୍ୱଗତ ବା ଅଧୋଗତ ପ୍ରାପ୍ତ ହୁଅନ୍ତି କିମ୍ବା ଉତ୍ତୀର୍ଣ୍ଣ ବା ଅବତୀର୍ଣ୍ଣ ହୁଅନ୍ତି । ବୋଧହୁଏ, ଜୀବାତ୍ମାର ଏହି ଅବତରଣ ଦେଖି ଈଶ୍ୱରଙ୍କ ପ୍ରତି ଅବତାର ବାଦ ଆରୋପ କରାଯାଇ ଅଛି ।

ଈଶ୍ୱର ଯେତେବେଳେ ଅବତୀର୍ଣ୍ଣ ନୁହନ୍ତି କିମ୍ବା କୌଣସି ଅବତାର ଗ୍ରହଣ କରନ୍ତି ନାହିଁ, ତେବେ ଅବତାର ମଧ୍ୟରେ ସାନ ବଡ଼ ବା ଉତ୍କୃଷ୍ଟ ନିକୃଷ୍ଟ କଣ ? ଗ୍ରାମ୍ୟ କାସ୍ତି ଲୁଚୋ ସୀମା ? ଏହି ସବୁ କେବଳ ସ୍ଥୂଳ ବୁଦ୍ଧି ଲୋକର ସଙ୍କୀର୍ଣ୍ଣ ଭାବନା, ଅସାର କଳ୍ପନା ।

ସଚ୍ଚିଦାନନ୍ଦ ଭଗବାନ ଅଟନ୍ତି ସକଳ ଜୀବର ନିୟନ୍ତା, ସମସ୍ତ ଜଗତର କାର୍ଯ୍ୟାତ୍ମକ । ତାହାଙ୍କର ଜୀବାତ୍ମା ରୂପରେ ଅବତୀର୍ଣ୍ଣ ହେବା ପ୍ରୟୋଜନ ନାହିଁ । ସେ ପରମାତ୍ମା ସ୍ୱରୂପରେ ଯାହା ଇଚ୍ଛା ତାହା କରିପାରନ୍ତି । ତାହାଙ୍କର ଅନନ୍ତ ଶକ୍ତି ପ୍ରଭାବରେ ସେ ଯେତେବେଳେ ଜୀବ ଜଗତର ସୃଷ୍ଟି କରିଛନ୍ତି, ସେହି ଜୀବଙ୍କୁ ଉଦ୍ଧାର କରିବାପାଇଁ ସେ ଅବା କାହିଁକି ରକ୍ତମାଂସ ଶରୀରବିଶିଷ୍ଟ ଜୀବରୂପ ଧାରଣ କରିବେ ? ଜୀବର ଉପକାର ବା ପରିତ୍ରାଣ ସାଧନ ସକାଶେ ଯଦି ନିରାକାର ନିର୍ବିକାର ଅନନ୍ତ ପରମାତ୍ମାଙ୍କୁ ଜୀବାକାର ଶରୀର ଧାରଣ କରିବାକୁ ହୁଏ ଏବଂ ଜୀବାତ୍ମାର ସସୀମ ଗୁଣ କର୍ମ ସ୍ୱଭାବ ଅବଲମ୍ବନ କରିବାକୁ ହୁଏ, ତେବେ ପାପିର ପରିତ୍ରାଣ ସକାଶେ ଈଶ୍ୱରଙ୍କୁ ପାପ କରିବାକୁ ପଡ଼ିବ ଏବଂ ଅପରାଧୀ ପ୍ରତି ଦଣ୍ଡବିଧାନ କରିବାକୁ ହେଲେ ନିଜେ ଅପରାଧ କରି ଦଣ୍ଡ ଭୋଗ କରିବାକୁ ପଡ଼ିବ । ଏହି ହିସାବରେ ଦେଖିଲେ ହାଣ୍ଡି ଗଢ଼ିବାକୁ ହେଲେ କୁମ୍ଭକାରକୁ ନିଜେ ଗୋଟିଏ ହାଣ୍ଡି ହେବାକୁ ପଡ଼ିବ ।

ଅଜ୍ଞାନୀ ମାନବ ଯେତେବେଳେ ଅଣାକାର ପରମେଶ୍ୱରଙ୍କୁ ରକ୍ତ ମାଂସ ଶରୀରାକାରରେ ଅବତାରଣା କରେ, ରକ୍ତ ମାଂସ ଶରୀରରୁ କାଷ୍ଠ ପାଷାଣାଦିକୁ ଓହ୍ଲାଇ ଆଣିବା ବାଟରେ କଣ ? ପଥରକୁ ଯେତେବେଳେ ଈଶ୍ୱର ଜ୍ଞାନରେ ପୂଜା କରାଯାଏ, କୌଣସି ଜୀବାତ୍ମାକୁ, ଈଶ୍ୱରାବତାର ବୋଲିବା ବିଚିତ୍ର କଣ ? ସାପକୁ ପାଳିଲେ ସାପ କାମୁଡ଼ିବ ହିଁ, ପିମ୍ପୁଡ଼ିକୁ ପୂଜାକଲେ ସେ ଜୀବହିଂସା ଶିଖାଇବ, ଭ୍ରମର ଉପରେ ବା ଭ୍ରମର ଚିନ୍ତାରେ କୀଟ

ମଧ୍ୟ ସନ୍ନିପାତ ପାଲଟି ଯାଏ । ସେହିପରି ଲକ୍ଷଭ୍ରଷ୍ଟ ମାନବ ଅବତାର ଆରାଧନାରୁ ଅଧୋଗତି ପ୍ରାପ୍ତହୁଏ, କାଠ ପଥର ପୂଜାରୁ କାଷ୍ଠ ପାଷାଣରେ ପରିଣତି ଲାଭକରେ । ଏହି ଅବତାର ବାଦ ବୈଦିକ ନୁହେ, ଏହା କେବଳ ପୌରାଣିକ କଳ୍ପନା ବିଶେଷ । ବେଦହିଁ ଅନାଦି, ଅପୌରୁଷେୟ, ଅଭ୍ରାନ୍ତ, ନିତ୍ୟ, ସନାତନ ଏବଂ ପରମ ପୁରାଣ । ବେଦରୁ ସ୍ମୃତି, ପୁରାଣ, ତନ୍ତ୍ର, ଯନ୍ତ୍ର, ଇତ୍ୟାଦିର ଅବତାରଣା ହୋଇଅଛି । ଶ୍ରୁତି ସ୍ମୃତି ଅନୁଯାୟୀ ପୁରାଣ ହେବା ଉଚିତ, କିନ୍ତୁ ଏଥିରେ ସବୁ କିଛି, ଭଲ ମନ୍ଦ, ସାର ଅସାର, ବିଷ ଅମୃତ, ଇତ୍ୟାଦିର ସମ୍ମିଶ୍ରଣ ଦେଖାଯାଏ । ବେଦରୁ ପୁରାଣ ଲେଖୁଁ ଲେଖୁଁ ଅନେକ ସ୍ଥାନରେ ବିଷୟକୁ ମାଜିତ କରାଯାଇ ଅଛି । ଅବତାର ବାଦହିଁ ଏହି ପୁରାଣର ସର୍ବସ୍ୱ ଏବଂ ପ୍ରାଣ ବିଶେଷ ବୋଲାଯାଇ ପାରେ । ତନ୍ତ୍ରକୁ ଶିବୋକ୍ତ ଗ୍ରନ୍ଥ ବୋଲି, ଶକ୍ତି ଉପାସନା ବିଷୟକ ପାଠ ବୋଲି, ଯାହାକହ ବୋଲି, ତନ୍ତ୍ର ପଦରେ ଲୋକେ ବୁଝନ୍ତି କଳ ସୂତ୍ର, ଛଳନା, କୌଶଳ ଇତ୍ୟାଦି । ଏହି ତନ୍ତ୍ର ବିଦ୍ୟା ଧର୍ମଶାସ୍ତ୍ର ସମ୍ମତ ନୁହେଁ କିମ୍ବା ମନ୍ୱାଦି ସ୍ମୃତି ଅନ୍ତର୍ଗତ ନୁହେ । ବୋଧହୁଏ, ଏହା କେବଳ ବାମାଚାରୀ ମାନଙ୍କର କୁମନ୍ତ୍ରଣା ବା କୌଶଳ । ଶ୍ରୁତି, ସ୍ମୃତି, ତନ୍ତ୍ର ସବୁ ମିଶି ତହିଁରୁ ପୁରାଣର ଉଦ୍ଭାବନ । ସ୍ମୃତି, ତନ୍ତ୍ର ଏବଂ ପୁରାଣ ଇତ୍ୟାଦି ଯାହାକହୁ ପଛେ, "ମନଃ-ପୂତଂ ସମାଚରେତ୍, ଯୁକ୍ତିହୀନ ବିଚାରେଣ ଧର୍ମହାନି ପ୍ରଜାୟତେ । ଅତଏବ ଯୁକ୍ତି, ତର୍କ, ମୀମାଂସା ଓ ସମାଲୋଚନା ନକରି ବେଦ ବାକ୍ୟ ମଧ୍ୟ ଗ୍ରହଣ କରା କର୍ତ୍ତବ୍ୟ ନୁହେ । ଅବିବେଚନା, ମୂଢ଼ବିଶ୍ୱାସ ଓ ଅନ୍ଧପରଂପରାର ପରିଣାମ ଅତ୍ୟନ୍ତ ଭୟଙ୍କର ଦୋଷାବହ, ଏଥିରେ କି କେହି ସନ୍ଦେହ କରିପାରେ ? ବେଦ କେବଳ ନିତ୍ୟ, ଅଭ୍ରାନ୍ତ, ଈଶ୍ୱରବାଣୀ; ତହିଁର କୌଣସି ଅଂଶ, ଜ୍ଞାନ ବା କର୍ମକାଣ୍ଡ, କେବେହେଲେ ଦେଶ କାଳ ପାତ୍ର ଭେଦରେ ପରିବର୍ତ୍ତିତ ହୋଇ ପାରେ ନାହିଁ । କେବଳ ପ୍ରକରଣ ଜ୍ଞାନାଭାବରୁ ଭ୍ରାନ୍ତି ଜନ୍ମି ପାରେ । ନିଷ୍ପକ୍ଷପାତୀ, ସତ୍ୟବାଦୀ ଓ ଧାର୍ମିକ ବ୍ୟକ୍ତିଙ୍କର କୌଣସି ଆଶଙ୍କା ବା ସନ୍ଦେହ ହୁଏନାହିଁ । ସଂକ୍ଷେପରେ କହିବାକୁ ଗଲେ ବେଦହିଁ ବିଦ୍ୟା, ତହିଁରୁ ଜ୍ଞାନ, ନୈପୁଣ୍ୟ, ଶୁଭକର୍ମ ଇତ୍ୟାଦି ଜାତହୁଏ ।



## ସମାଜ ସଂସ୍କାର

ଲୋକ ସାଧାରଣଙ୍କୁ ସମାଜରେ ଆବଦ୍ଧ ରହିବାକୁ ହୁଏ । ସମାଜର ଉନ୍ନତି ଉଦ୍ଦେଶ୍ୟରେ ସାମାଜିକ ବ୍ୟବସ୍ଥା ଓ ଆଇନ ସକଳର ସୃଷ୍ଟି ହୋଇଅଛି, ସେହି ସକଳ ବ୍ୟବସ୍ଥା, ଆଇନ କାନୁନ ନିୟମ ନିବନ୍ଧନର ଯେ ପରିବର୍ତ୍ତନ କରା ଯିବନାହିଁ, ଏପରି ନୁହେ । ଯେତେ

ଯେତେବେଳେ ଏହି ସ୍ଥିତି ପାଳନ ଦ୍ୱାରା ମଙ୍ଗଳ ଉଦ୍ଦେଶ୍ୟ ନଷ୍ଟ ହୋଇ ସମାଜର କ୍ଷତିହୁଏ, ସେତେବେଳେ ତାହାର ପରିବର୍ତ୍ତନ କରିବା ନିତାନ୍ତ ଅବଶ୍ୟକ । ଦେଶକାଳ ଓ ସାମାଜିକ ଅବସ୍ଥାର ପରିବର୍ତ୍ତନ ହେବା ବେଳେ ଯଦି ପୂର୍ବ ରୀତିନୀତିର ତଦନୁଯାୟୀ ପରିବର୍ତ୍ତନ କରା ନଯାଏ, ତେବେ ସମାଜ ଦିନକୁଦିନ ହୀନବଳ ହୋଇ ଅଧୋଗତି ପ୍ରାପ୍ତହୁଏ—ଏହା ପ୍ରକୃତିର ନିୟମ । ଅତଏବ ସମୟାନୁକ୍ରମେ ସାମାଜିକ ରୀତି ନୀତି ନିୟମ ନିବନ୍ଧନ ଗୁଡିକୁ ପରୀକ୍ଷା କରି ସମୟ ଓ ସମାଜର ଅବସ୍ଥା ପରିବର୍ତ୍ତନ ହେତୁ ତାହା ସବୁ କେତେଦୂର ସମାଜର ଅନୁପଯୁକ୍ତ ଓ କ୍ଷତିଜନକ ହୋଇଅଛି, ସ୍ଥିର କରି ସାମାଜିକ ଅବସ୍ଥାନୁଯାୟୀ ଉକ୍ତ ରୀତି ସକଳର ପରିବର୍ତ୍ତନ କରିବା ଦେଶ ହିତୈଷୀ ବ୍ୟକ୍ତି ମାନଙ୍କର ଏକାନ୍ତ କର୍ତ୍ତବ୍ୟ ଅଟେ । ଏହି କର୍ତ୍ତବ୍ୟ ନିରୂପଣ ଓ ତହିଁର ସାଧନହିଁ ଯାବାନର ବିସ୍ମୟାବହ ଉନ୍ନତିର ମୂଳ କାରଣ ଅଟେ ।

ଆମ୍ଭ ଦେଶରେ ପୂର୍ବେ ଋଷିମାନେ ସମୟାନୁକ୍ରମେ ସାମାଜିକ ଅବସ୍ଥାର ପରିବର୍ତ୍ତନ ସଙ୍ଗେ୨ ସାମାଜିକ ବ୍ୟବସ୍ଥାର ପରିବର୍ତ୍ତନ କରୁଥିଲେ । ଋଷି ପ୍ରଣୀତ ଗ୍ରନ୍ଥାବଳୀରୁ ଏହି ନିୟମର ସୁସ୍ପଷ୍ଟ ପ୍ରମାଣ ମିଳୁଅଛି । ଭିନ୍ନ୨ ଋଷିମାନେ ଭିନ୍ନ୨ କାଳରେ ଭିନ୍ନ୨ ବ୍ୟବସ୍ଥା ଦେଇ ଯାଇଅଛନ୍ତି । ସେମାନେ କାଳ ଓ ଅବସ୍ଥାକୁ ଦୃଷ୍ଟିକରି ପୂର୍ବ ବ୍ୟବସ୍ଥା ପରିବର୍ତ୍ତନ କରୁଥିଲେ ପୁଣି ନୂତନ ବ୍ୟବସ୍ଥା ଦେଉଥିଲେ । କିନ୍ତୁ ସେମାନଙ୍କର ବଂଶଧରମାନେ ସେପରି ନକରିବାରୁ ଭାରତବାସୀମାନେ ଆଜି ଜଗତ ସମକ୍ଷରେ କି ସଭ୍ୟତାରେ, କି ଧନରେ, କି ବିଦ୍ୟାରେ, କି ବଳରେ ବା କଳରେ ନୀଚତମ ଜାତିରେ ପରିଣତ ହୋଇଅଛନ୍ତି ।

ସମାଜ ସଂସ୍କାରକ ମାନେ ବୁଝିପାରି ଅଛନ୍ତି ଯେ, ଦେଶ କାଳ ପାତ୍ର ବିବେଚନା ପୂର୍ବକ ପ୍ରଚଳିତ ରୀତିନୀତିର ସାମୟିକ ପରିବର୍ତ୍ତନ ନହେବା ହେତୁ ଲୋକେ ଦିନକୁଦିନ ଅଜ୍ଞାନ ହେଲେ, ସ୍ତ୍ରୀ ଶିକ୍ଷା ରହିତ ହେଲା, ବିଦେଶ ଗମନ ଓ ବିଧବା ବିବାହ ବର୍ଜ୍ଜିତ ହେଲା, ପୁଣି ବିଦ୍ୱେଷ ବର୍ଦ୍ଧକ ଅସଂଖ୍ୟ ଜାତିର ସୂତ୍ରପାତ ହେଲା । ଏହି ସକଳ ରୀତି ପ୍ରତି ମିଥ୍ୟା ବିଶ୍ୱାସ—କୁସଂସ୍କାର ଏତେଦୂର ବଦ୍ଧମୂଳ ହୋଇ ପଡିଅଛି ଯେ ଉକ୍ତ ରୀତିର ନିରାକରଣ ସକାଶେ କେହି ହେଲେ ପଦେ କହିବାକୁ ସାହାସୀ ହେଉନାହାନ୍ତି ।

ହିନ୍ଦୁଜାତିର ସାମାଜିକ ଅବସ୍ଥା ନିତାନ୍ତ ମନ୍ଦ ଓ ଶୋଚନୀୟ ହେବାଯୋଗୁଁ ଆଜି ଭାରତ—ସାମ୍ରାଜ୍ୟ ବିଦ୍ୟା, ବ୍ୟବସାୟ, ଧର୍ମ୍ମ, ରାଜନୀତି ସକଳ ବିଭାଗରେ ଅବନତ ହୋଇ ପଡିଅଛି । ଅତ ପ୍ରତ୍ୟେକ ବିଭାଗରେ ସମୟୋଚିତ ସଂସ୍କାରର ପ୍ରୟୋଜନ ହୋଇଅଛି । ଉନ୍ନତ ସାମାଜିକ ଅବସ୍ଥା ଅନ୍ୟାନ୍ୟ ବିଭାଗର କାର୍ଯ୍ୟ କ୍ଷେତ୍ରରେ ସଫଳତାର ସହୁପାୟ ସମ୍ପାଦନ କରେ, ପୁଣି ସମାଜ ସଂସ୍କାର କାର୍ଯ୍ୟରେ ବିଦେଶୀୟ ପ୍ରତିଦ୍ୱନ୍ଦୀ ନାହାନ୍ତି । ଅତଏବ ପ୍ରତ୍ୟେକ ଦେଶହିତୈଷୀ ବ୍ୟକ୍ତିଙ୍କୁ ଅନ୍ୟାନ୍ୟ ବିଭାଗୀୟ କାର୍ଯ୍ୟ ସଙ୍ଗେ୨ ସମାଜ ସଂସ୍କାର କ୍ଷେତ୍ରରେ ମଧ୍ୟ କାର୍ଯ୍ୟ କରିବାକୁ ହେବ ।

ସନାତନ ଧର୍ମ ନଷ୍ଟ କରୁଅଛନ୍ତି ବୋଲି ସମାଜ ସଂସ୍କାରକମାନଙ୍କୁ ଲୋକେ ନିନ୍ଦା କରନ୍ତି । ଏହି ନିନ୍ଦା ଅମୂଳକ ଅଳୀକ ଅଟେ । ଦେଖନ୍ତୁ, ସମାଜ ସଂସ୍କାରକମାନେ ସ୍ତ୍ରୀଶିକ୍ଷା ପ୍ରଚାର କରନ୍ତି । ଯେଉଁ ଈଶ୍ୱର ସ୍ତ୍ରୀ ଓ ପୁରୁଷ ମାନଙ୍କୁ ଏକ ଉପାଦାନରେ ଗଢ଼ି ଅଛନ୍ତି, ସେ କି ରମଣୀ ମାନଙ୍କର ମାନସିକ ଶକ୍ତିର ବର୍ଦ୍ଧନ ଓ ବିକାଶ ସକାଶେ ସେମାନଙ୍କୁ ବିଦ୍ୟାଶିକ୍ଷା ଦେଇ ନାହାନ୍ତି ? ପୂର୍ବରେ ଗାର୍ଗୀ, ଲୀଳାବତୀ ପ୍ରଭୃତି ବେଦାନ୍ତ, ଗଣିତ ଚର୍ଚ୍ଚା କରୁଥିଲେ । ମନୁ କହନ୍ତି "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ" । ସ୍ତ୍ରୀର ଅନ୍ୟତମ ନାମ ଗୃହିଣୀ, ସହଧର୍ମିଣୀ । ବିନା ବିଦ୍ୟା ଶିକ୍ଷାରେ ସେ କିପରି ଗୃହ ପରିଚାଳନ ବା ଧର୍ମକାର୍ଯ୍ୟ ଅନୁଷ୍ଠାନ କରିପାରିବେ ?

ସେଦିନ ମାନ୍ୟବର ଡାକ୍ତର ଡେକ ବାହାଦୁର କହିଥିଲେ—"ଜାତିଭେଦ ଉନ୍ନତିରେ ବାଧା ଘଟାଉ ଅଛି । ସେହି ଜାତିଭେଦ ହେତୁ ଭାରତ ବାସୀ ସକଳ ଲୋକେ ଏକଜାତି ହୋଇ ପାରୁ ନାହାନ୍ତି, ଶିକ୍ଷା ବିସ୍ତାର ସଙ୍ଗେ ସଙ୍ଗେ ଭିନ୍ନ ଭିନ୍ନ ଜାତିର ଲୋକେ ଜାଗ୍ରତ ହୋଇ ଆପଣା ଆପଣା ଜାତିର ଛାତ୍ରାବାସ ଇତ୍ୟାଦି ଯାହା କରନ୍ତି, ତାହା ଉନ୍ନତିର ଅନୁକୂଳ ନୁହେ, କାରଣ ତଦ୍ୱାରା ଜାତିଭେଦ ଅଧିକ ବଦ୍ଧମୂଳ ହେଉଅଛି । ସଂସ୍କୃତରେ ଆମ୍ଭମାନଙ୍କର ଧର୍ମ ପୁସ୍ତକ ମାନ ଲେଖା ହୋଇ ଥିବାରୁ ବ୍ରାହ୍ମଣ ପୁରୋହିତ ମାନେ ସେଥିରୁ ଆପଣା ମଧ୍ୟରେ ଆବଦ୍ଧ ରଖି ସାଧାରଣ ଲୋକଙ୍କୁ ଅଜ୍ଞ ରଖି ଅତ୍ୟାଚାର କରିବାକୁ ଯାହା ଆରମ୍ଭ କଲେ ତାହା ଚୂଡ଼ାନ୍ତ ଆକାର ଧାରଣ କରିଅଛି, ଏମନ୍ତକି ଅନେକ ବ୍ରାହ୍ମଣ ପୌରୋହିତ୍ୟ ପାଇବେ ନାହିଁବୋଲି ସଂସ୍କାର କାର୍ଯ୍ୟରେ ବାଧାଦେଉଛନ୍ତି ।"

ପୁଣି କର୍ମଗତ ଜାତିଭେଦ ହେତୁ ଭାରତ ବାସି ମାନେ ଜଗତରେ ଅର୍ଯ୍ୟଥିଲେ । ଯେଉଁଦିନୁଁ ଜନ୍ମଗତ ଜାତି ସୃଷ୍ଟି ହେଲା ସେହିଦିନୁଁ ଭାରତର ଅବନତିର ସୂତ୍ରପାତ ହେଲା । ବ୍ରାହ୍ମଣମାନେ ଆପଣାକୁ ବ୍ରହ୍ମାଙ୍କ ମୁଖ ନିଃସୃତ ଜ୍ଞାନ କରି ଆପଣାର ଠେକ ବିସ୍ତାର କରି ଅତ୍ୟାଚାର କରିବାକୁ ଲାଗିଲେ । ବ୍ରାହ୍ମଣମାନେ ଯେପରି ବ୍ରହ୍ମାଙ୍କ ମୁଖରୁ ବାହାରିଲେ ହିନ୍ଦୁ ମାନଙ୍କର ଧର୍ମଶାସ୍ତ୍ର ସକଳ ସେହିପରି ବ୍ରାହ୍ମଣଙ୍କ ମୁଖରୁ ବାହାରିଛି । ଏହି ଧର୍ମଶାସ୍ତ୍ର ମାନ ସଂସ୍କୃତ ଭାଷାରେ ଲେଖା ହେବାରୁ ଏଥିରେ ବାପ କି ଭଲୁ କିବା ସାପ କି ବେଙ୍ଗ କଣ ଅଛି ଲୋକ ସାଧାରଣ ଜାଣିବାକୁ ଅକ୍ଷମ ହେଲେ । ଏହି ଧର୍ମଶାସ୍ତ୍ର ଗୁଡ଼ିକ ଭାରତୀୟ ପ୍ରଚଳିତ ଭାଷାରେ ଅନୁବାଦିତ ହେଲେ ବ୍ରାହ୍ମଣ ମାନଙ୍କର ଏହି ବୃଥା ଠେକ କାହିଁ ଉଭେଇ ଯାଆନ୍ତା । ହିନ୍ଦୁ ମାନଙ୍କର ଧର୍ମଶାସ୍ତ୍ର ଗୁଡ଼ିକ ସଂସ୍କୃତ ଭାଷାରେ ଥିବାଯାକ ଭାରତ ଜାତିର ନିସ୍ତାର ନାହିଁ । ପୁଣି ଏହି ନାମଧାରୀ ବ୍ରାହ୍ମଣ ମାନଙ୍କର ଆଧିପତ୍ୟ ଅମଳ ଚାଲୁଥିବା ପର୍ଯ୍ୟନ୍ତ ସମାଜ ସଂସ୍କାର ସୁଦୂର ପରାହତ । ବିଦ୍ୟାଳୟ ହେଉ ବା ଛାତ୍ରାବାସ ହେଉ, ସାମ୍ପ୍ରଦାୟିକ ଅନୁଷ୍ଠାନ ଜାତୀୟ ଭାବଗତ ଏକତା ଓ ଭାରତୀୟ ଉନ୍ନତିର ଏକାନ୍ତ ଅନ୍ତରାୟ, ଏଥିରେ ସନ୍ଦେହ ନାହିଁ । ଏଦ୍ୱାରା ଭେଦ-ଜ୍ଞାନ ବଦ୍ଧମୂଳ ହେଉଅଛି । ଆମ୍ଭ ମାନଙ୍କ ମଧ୍ୟରେ ଅନେକ ବି, ଏ, ଏମ୍, ଏ ଉପାଧି ଧାରୀ

ପଣ୍ଡିତ ମାନ୍ୟବ୍ୟକ୍ତି ମାନେ ଅଛନ୍ତି, ଏମାନଙ୍କର ଏହି ଜାତିଭେଦ ଧାରଣା ଅଣୁମାତ୍ର ଘୁଞ୍ଚି ନାହିଁ । କେହି ବାଉର ସନ୍ତାନ ଚଳଦ୍‌ଶକ୍ତି ରହିତ ହୋଇ ତଳେ ପଡ଼ିଅଛୁ, ବ୍ରାହ୍ମଣ ପଣ୍ଡିତ ତାହାକୁ ନିଜେ ଉଠାଇ ଦେଇ ପାରନ୍ତି ନାହିଁ, ଯେହେତୁ ମ୍ଲେଚ୍ଛ ସ୍ପର୍ଶଦ୍ୱାରା ତାହାଙ୍କର ପବିତ୍ରତା ନଷ୍ଟ ହୋଇଯିବ ବୋଲି ତାହାଙ୍କ ଧାରଣା ଅଛି । ତେବେ ଛାତ୍ରମାନେ ବିଦ୍ୟାଳୟରେ ଏବଂ ଛାତ୍ରାବାସରେ ଯଦି ଏହି ଭେଦଜ୍ଞାନ ଶିକ୍ଷା କରିବେ, ତେବେ ଭବିଷ୍ୟତରେ ସେମାନଙ୍କର ଏହି ଜାତି ବା ସାମ୍ପ୍ରଦାୟିକ ଭେଦ ବୁଦ୍ଧି କେତେଦୂର ଦୃଢ଼ମୂଳ ଓ ଭୟଙ୍କର ହୋଇ ଉଠିବ, ଚିନ୍ତାଶୀଳ ବ୍ୟକ୍ତିମାନେ ସହଜରେ ଅନୁମାନ କରି ପାରିବେ ।



# ଭଣ୍ଡ ବ୍ରାହ୍ମଣ ।

ଶିବ ମନ୍ଦିର ପ୍ରତିଷ୍ଠିତ ଥିବା ସ୍ଥାନମାନଙ୍କରେ ଶୀତଳ ଷଷ୍ଠୀ ଉତ୍ସବ ହୁଏ । ବିଶେଷତଃ ଶାସନୀ ବ୍ରାହ୍ମଣମାନେ ଏହି ପର୍ବପାଳନ କରନ୍ତି । ଅନେକ ଶାସନରେ ଏହି ଶୀତଳଷଷ୍ଠୀ ଯାତ୍ରାବେଳେ ବ୍ରାହ୍ମଣମାନେ ଦୁଇଦଳରେ ବିଭକ୍ତ ହୋଇଥାନ୍ତି । ଏଥିରେ ଚିତ୍ର, ବାଣ, ନାଚ ପ୍ରଭୃତି ଅସତ୍ ବ୍ୟାପାରରେ ଅଜସ୍ର ଧନ ବ୍ୟୟ ହୁଏ । କେବେ କେବେ କେହି ବାଣରେ ପୋଡି ମରନ୍ତି, ବାଇନାଚରେ ବାଉଳ ହୁଅନ୍ତି, ମାର ପିଟରେ ହାତ ଗୋଡ ଭାଙ୍ଗିଥାନ୍ତି, ପୁଣି ସର୍ବସ୍ୱାନ୍ତ ହେବା ପର୍ଯ୍ୟନ୍ତ ମାଲି ମୋକଦମାରେ ଲାଗିଥାନ୍ତି । ଜାତି ମାନଙ୍କରେ ଶ୍ରେଷ୍ଠ ଏହି ବ୍ରାହ୍ମଣମାନେ,ପାଠକ ଦେଖନ୍ତୁ,ଆପଣାର ହସ୍ତ ନିର୍ମିତ ପିତୁଳାକୁ ମୂଳକରି କେତେ ଲଣ୍ଡଭଣ୍ଡ ହେଉଅଛନ୍ତି ଏବଂ ପରିଣାମରେ କେତେ ଦୁଃଖକଷ୍ଟ ମନୋ-ବେଦନା ଭୋଗ କରୁଅଛନ୍ତି ।

ଯେଉଁ ଗ୍ରାମ ମାନଙ୍କରେ କୌଣସି ଦେବ ମନ୍ଦିର ଥାଏ— ଜଗନ୍ନାଥ, ଗୋପୀନାଥ ଲହୁଣିଆ ଗୋପାଳ, ଲକ୍ଷ୍ମନ ବାଲଜି, ଉଖୁଡାଇ, ବିରୁଆଇ, ବାଗଦେଇ, ଚଣ୍ଡିଦେଇ ପୁଣ୍ଡୁରୀକେଶର, ଭୁମ୍ବେଶ୍ୱର ଇତ୍ୟାଦି ନେ କିଛି ଗୋଟେହେଲେ, ସେହି ଗ୍ରାମମାନଙ୍କରେ କିଛି ଗୋଟେ ହେଲେ ଯାତ୍ରା ପର୍ବ ହୁଏ କିନ୍ତୁ ଏହି ଶାସନୀ ବ୍ରାହ୍ମଣ ବ୍ୟତୀତ ଅନ୍ୟ କେହି ଲୋକ କୌଣସି ଉତ୍ସବ କରିବା ନିମନ୍ତେ ଅନ୍ୟାନ୍ୟ ଗ୍ରାମକୁ ଯାଇ ପଇସା ମାଗି ସଂଗ୍ରହ କରନ୍ତିନାହିଁ ।

ଏହି ଶୀତଳ ଷଷ୍ଠୀଯାତ୍ରା କରିବା ନିମନ୍ତେ ଶାସନରେ ଦାନୁଆଁ ବ୍ରାହ୍ମଣମାନେ ଆପଣା ମଧ୍ୟରେ ଯଥାସାଧ୍ୟ ଧନ ସଂଗ୍ରହ କରନ୍ତି । ଶାସନରୁ କେହି କେହି, ଯେଉଁମାନେ କି ନିର୍ଦ୍ଦିଷ୍ଟ ଚାନ୍ଦା ଦେଇ ପାରନ୍ତିନାହିଁ, ସେ ସବୁ ଗ୍ରାମେ ବୁଲି ମହାଦେବଙ୍କର ଶୀତଳ ଷଷ୍ଠୀ

ଯାତ୍ରା ହେବ, ଶୀତଳ ଅମୁଣିଆ ହେବ ବୋଲି କହି ଧନୀ ପରିବାର ମାନଙ୍କ ମଧ୍ୟରୁ ଚାରିଅଣା, ଆଠଅଣା, ୫ ଟଙ୍କେ ହିସାବରେ ଧନସଂଗ୍ରହ କରି ଉକ୍ତ ଧନରୁ ଆପଣାର ଚାନ୍ଦାଦେଇ ଅବଶିଷ୍ଟ ଧନ ଏମାନେ ଆତ୍ମସାତ୍ କରନ୍ତି । ଏହି ବ୍ରାହ୍ମଣ ନାମିମାନେ ପରିଚା ଛଳନାରେ ସେପରି ଲୋକଙ୍କୁ ପ୍ରବଞ୍ଚନା କରି ବୁଲନ୍ତି ଦେବଯାତ୍ରା ଓ ଧର୍ମ ପୂଜାର କଥା ଦ୍ୱାହିଦେଇ ସେହି ପରି ଲୋକମାନଙ୍କ ଠାରୁ ପଇସା ଭିଣ୍ଡି ନେଇ ଆପଣାର ଭରଣ ପୋଷଣ କରନ୍ତି ।

ବାସୁଦେବ ପୁର ନାମକ ଏକ ଶାସନ ସମୀପରେ ସେଦିନ ଗୋଟିଏ ସ୍କୁଲ ସ୍ଥାପନର ପ୍ରସ୍ତାବ ହେଲା । ଏହି ପ୍ରସ୍ତାବିତ ସ୍କୁଲ ସ୍ଥାନର ଚତୁର୍ଦ୍ଦିଗରେ ନିକଟବର୍ତ୍ତୀ ଅନେକ ଗୁଡିଏ ଶାସନ ବିଦ୍ୟମାନ । ଏହି ଶାସନୀ ବ୍ରାହ୍ମଣ ମାନଙ୍କଠାରୁ ଚାନ୍ଦା ସଂଗ୍ରହ କରିବା ଧାର୍ଯ୍ୟ ହେଲା । ଏହି ଦାନୁଆ ବ୍ରାହ୍ମଣମାନଙ୍କ ସନ୍ତାନ ମାନଙ୍କର ଏହି ସ୍କୁଲରୁ ବେଶି ଉପକାର ପାଇବାର କଥା, ତଥାପି ଶିକ୍ଷକତା କରୁଥିବା କେତେଜଣ ବ୍ରାହ୍ମଣ ବ୍ୟକ୍ତି ଛାଡ଼ିଦେଲେ ଏହି ମହତ୍ କାର୍ଯ୍ୟରେ ଶ୍ରଦ୍ଧା ବା ସହାନୁଭୂତି ଦେଖାଗଲାନାହିଁ । ଧୋବା, ବାଉରି ପ୍ରଭୃତି ଅନ୍ତ୍ୟଜ ଜାତିର ଲୋକ ବେଶି ପରିମାଣରେ ଚାନ୍ଦାଦେଇ ସାରିଲେଣି, ଏହି ବ୍ରାହ୍ମଣମାନେ କେହି କେହି ଧନୀ ଓ ବିଷୟବାନ ଥିଲେହେଁ ସାମାନ୍ୟ ଚାନ୍ଦାନଦେଇ ଏପର୍ଯ୍ୟନ୍ତ ଭିଣ୍ଡିଆସୁଅଛନ୍ତି । ଏହି ବ୍ରାହ୍ମଣମାନେ ଆପଣା ମଧ୍ୟରେ ବାଦ ବିଗ୍ରହ କରି ଶୀତଳଷଷ୍ଠୀ ଯାତ୍ରାରେ ଦୂଷିତ ଆମୋଦ ପ୍ରମୋଦ କରିବାପାଇଁ ଶତ ସଂଖ୍ୟକ ଟଙ୍କା ବ୍ୟୟ କରୁଅଛନ୍ତି । ଏମାନେ ମହାଦେବଙ୍କ ବିବାହୋତ୍ସବ କରିବାପାଇଁ ବାରଦ୍ୱାର ବୁଲି ଧନମାଗୁ ଅଛନ୍ତି, କିନ୍ତୁ ପରକଥା ଦୂରେଥାଉ ଆପଣା ସନ୍ତାନ ମାନଙ୍କୁ ବିଦ୍ୟାଶିକ୍ଷା ଦେବା ବିଷୟରେ ଏକାନ୍ତ ଉଦାସୀନ । ଏମାନେ ଭଣ୍ଡ ବ୍ରାହ୍ମଣ କିବା ପ୍ରକୃତ ବ୍ରାହ୍ମଣ ପାଠକେ ବିଚାର କରି ଦେଖନ୍ତୁ ।



## କୁମାର ଜନ୍ମୋତ୍ସବ

ମୁକୁନ୍ଦଦେବଙ୍କ ୩୬ ଅଙ୍କ ଚୈତ୍ର ଶୁକ୍ଳ ଦଶମୀ ଗୁରୁବାର କୁମ୍ଭ ୧୫ ଦିନ ପ୍ରାୟ ୮ ଘଣ୍ଟା ସମୟରେ ମାଧପୁର ଗ୍ରାମରେ ଭୀମ ବେହେରାଙ୍କର ଧର୍ମ ପତ୍ନୀଙ୍କର ପ୍ରଥମ ଗର୍ଭରେ ଏକ ପୁତ୍ର ଜାତ ହୋଇଅଛି ।

ଏହି ମର ସଂସାରରେ କିଏବା ଜନ୍ମ ହେଉନାହିଁ କିଏବା ମରୁନାହିଁ । କେତେ ରାଜା ମହାରାଜାଙ୍କ ଔରସରେ ପାଟମହିଷୀଙ୍କ ଗର୍ଭରୁ କେତେ ବା ପାଷଣ୍ଡ ଗଣ୍ଡମୂର୍ଖ ଜନ୍ମଗ୍ରହଣ କରୁଥାନ୍ତି । କେତେ ଜମିଦାରଘରେ କେତେବା ଅତ୍ୟାଚାରୀ ଜନ୍ମୁଥାନ୍ତି । କେତେ ପବିତ୍ର ନିଷ୍କଳଙ୍କ କୁଳରେ କେତେ ବା କୁଳାଙ୍ଗାର ଜାତହୋଇ କୁଳକୁ କଳଙ୍କିତ କରନ୍ତି

ନାହିଁ । କୌଣସି କ୍ଷମତାପନ୍ନ ବିଭବଶାଳୀ ପରିବାରରେ କୌଣସି ପୁତ୍ର ସନ୍ତାନ ଜନ୍ମଗ୍ରହଣ କଲାମାତ୍ରେ ଏତେ ଲେଖାପଢା, ଏତେ ସମ୍ବାଦ ପତ୍ର ପ୍ରକାଶନ ଏତେ ଆନନ୍ଦ ଉତ୍ସବର ପ୍ରୟୋଜନ କଣ ? ସେହି ସନ୍ତାନ ବ୍ରାହ୍ମଣ ବା ବାଉରି ଘରେ ଜନ୍ମହେଉ, ରାଜ ଭବନରେ ବା ଗରିବ କୁଟୀରରେ ଜାତହେଉ, ଯାହାର ଜନ୍ମରେ କୁଳବଂଶ, ସମାଜ ବା ଜାତିର ଉଜ୍ଜ୍ୱଳ ହୁଏ ତାହାର ଜନ୍ମସିନା ଜନ୍ମରେ ଗଣାଯାଏ ।

ଏହି ହିସାବରେ ଭୀମବେହେରାର ପୁତ୍ରଜନ୍ମରେ ମଧ୍ୟ ଉଲ୍ଲେଖ ଯୋଗ୍ୟ କୌଣସି ବିଷୟ ନାହିଁ, କିନ୍ତୁ ଏହି ଜନ୍ମରେ ଆଉ ଏକ ବିଶେଷତ୍ୱଅଛି । ଭୀମବେହେରାର ଭାର୍ଯ୍ୟା ରମ୍ଭୀ-ଦେଇ ତିନିଦିନ କାଳ ଗର୍ଭକଷ୍ଟ ଭୋଗକଲା । ଏହି ପ୍ରସବ ବେଦନାରେ ରମ୍ଭୀର ଆଉ ପ୍ରାଣର ଆଶା ଦେଖାଯାଉ ନଥିଲା । ପଡ଼ିଶାଘର ନାନୀ ଆସିଲେ, ଶମାମା ଆସିଲା, ଜଗାମା ଆସିଲା; ପଣ୍ଡାଘର ବୋହୂ ଆସିଲେ, ପରୀଘର ଝିଅ ଆସିଲେ, କେତେ ଆଉ କେତେ ମାଇପିଲୋକ ଆସି ରୁଣ୍ଡହେଲେ, ସମସ୍ତେ ହାହାକାର କରୁଥାନ୍ତି କିନ୍ତୁ କେହିହେଲେ ପ୍ରସୂତିକାକୁ କୌଣସି ସାହାଯ୍ୟ କରିପାରିଲେ ନାହିଁ । ପ୍ରସବ କାଳରେ ସ୍ତ୍ରୀକି ସ୍ପର୍ଶ କରିବା ପୁଣି ମହାଅପରାଧ ! ସେତେ-ବେଳେ ସେହି ସ୍ତ୍ରୀର ଜାତି ପତି ନିଷ୍ଠ କଷ୍ଟ ନଥାଏ । ସେତେବେଳେ ସେହି ମହାପାପିନୀ ଚଣ୍ଡାଳୁଣୀଙ୍କି ବ୍ରାହ୍ମଣ କରଣ ସ୍ତ୍ରୀ ମାନଙ୍କ କଥା ଦୂରେଥାଉ କୌଣସି ସାଧାରଣ ଶୂଦ୍ରା ସ୍ତ୍ରୀ ମଧ୍ୟ ସ୍ପର୍ଶ କରି ପାରେନାହିଁ । ପ୍ରସୂତିକାର ସାହାଯ୍ୟ ସକାଶେ ବାଉରୁଣୀର ସୃଷ୍ଟି । ଅନେକ ଆଉ ଅନେକ ବାଉରୁଣି ଆସିଲେ । କିଏ ଅଣ୍ଟାଧରିଲା, କିଏ ମୁଣ୍ଡଧରିଲା, କିଏ ପେଟ ଚିପିଲା, ତଥାପି କିଛି ଫଳହେଲାନାହିଁ । ହାସପାତାଲରୁ ଡାକ୍ତର ବା ଧାଇ ସ୍ତ୍ରୀକି ଡାକିବାକଥା ଆସିଲା । କିନ୍ତୁ ପଲ୍ଲିଗ୍ରାମ କେଉଁଠେ, ସହର କେଉଁଠେ, ପୁଣି ରାଜା ଜମିଦାର ଓକିଲ ଓ ଡେପୁଟି ବା କିରାଣୀ ମାନଙ୍କପାଇଁ ହିନା ଡାକ୍ତର ବା ଡାକ୍ତରାଣୀ, ଗରିବ ଭୀମବେହେରା ସକାଶେ ବା ଏହି ସରକାରୀ ସାହାଯ୍ୟ କାହିଁ ଆସିବ ? ପରିଶେଷରେ କୌଣସି ଗ୍ରାମରୁ ପ୍ରସବବେଦନା ଟେକ ସ୍ବିକା କୌଣସି ପ୍ରସିଦ୍ଧ ବାଉରାଣୀ ଆସିଲା । ସେ କହିଲା କେହି ଡାକ୍ତର କିଛି କରିପାରିବେ ନାହିଁ, ମୋହର ଆଜ୍ଞା ପ୍ରମାଣେ ପିଲା ଜନ୍ମ ହୋଇଯିବ, ଯେତେବେଳେ କହିବି ସେତେ-ବେଳେ ଜନ୍ମ କରାଇ ଦେବି । ସତକୁ ସତ, ସେହି ବାଉରାଣୀ ଆସି ଗର୍ଭିଣୀକି ଧରିଦେବା ମାତ୍ରେ ଶିଶୁ କୁମାର ଭୂମିଷ୍ଠ ହୋଇଗଲା । ଏହି ବାଉରାଣୀଙ୍କି ୫ ଟଙ୍କା ମାତ୍ର ପୁରସ୍କାର ଦିଆଗଲା । ଧନ୍ୟହେ ବାଉରାଣୀ ! ବଡ଼ ବଡ଼ ଲୋକମାନଙ୍କର କେତେ ଡାକ୍ତର, କେତେ ସର୍ଜନ, କେତେ ଧାଇ, କେତେଦାସୀ, କେତେ ରସାୟନ କେତେ ରଷାୟନ, କେତେ ଶାସ୍ତ୍ର କେତେ ଯନ୍ତ୍ର ଇତ୍ୟାଦି ଆବଶ୍ୟକ ହୁଏ, କିନ୍ତୁ ପଲ୍ଲୀବାସୀମାନଙ୍କ ପାଇଁ ଈଶ୍ୱର ବାଉରାଣୀର ସୃଷ୍ଟି କରିଦେଇ ଅଛନ୍ତି ।



# ଅବିଦ୍ୟ ଓ ସବିଦ୍ୟ ବ୍ରାହ୍ମଣ

ଭଗବାନ୍ ଶ୍ରୀକୃଷ୍ଣ ପରି କହିଛନ୍ତି "ଅବିଦ୍ୟୋ ବା-ସବିଦ୍ୟୋ ବା ବ୍ରାହ୍ମଣୋ ମାମକୀତନୁଃ" । ଅବିଦ୍ୟା ଓ ସବିଦ୍ୟାର ଅର୍ଥ ଏହିପରି ହୋଇପାରେ ! ବିଦ୍ୟା ନାନା ବିଭାଗରେ ବିଭକ୍ତ ହୋଇପାରେ । ଜ୍ଞାନକାଣ୍ଡ ଓ କର୍ମକାଣ୍ଡ—ଏହା ଏକ ରକମ ବିଭାଗ ଅଟେ । ସବିଦ୍ୟା ଅର୍ଥାତ୍ ଜ୍ଞାନକାଣ୍ଡ, ଅବିଦ୍ୟା ଅର୍ଥାତ୍ କର୍ମକାଣ୍ଡ । ବ୍ରାହ୍ମଣମାନେ ଜ୍ଞାନକାଣ୍ଡ ବା କର୍ମକାଣ୍ଡରେ ପାରଦର୍ଶିତା ଲାଭକରି ପାରିବେ । ବିଦ୍ୟା ଆଉ ଏକ ପ୍ରକାର ବିଭକ୍ତ ହୋଇପାରେ, ଯଥା ପ୍ରକୃତି ଓ ପୁରୁଷ । ପ୍ରକୃତି ବଶୀଭୂତ ହେବା ଅବିଦ୍ୟା, ଏବଂ ପରମାତ୍ମ ଜ୍ଞାନ ଅଟେ ବିଦ୍ୟା । ଏହି ନିୟମାନୁସାରେ ଅବିଦ୍ୟହେଉ ବା ସବିଦ୍ୟ ହେଉ ବ୍ରାହ୍ମଣ ପୂଜ୍ୟ ଅଟନ୍ତି । କିନ୍ତୁ ବ୍ରାହ୍ମଣ ଯେ ବ୍ରହ୍ମ ଲକ୍ଷଣ ସମ୍ପନ୍ନ ହେବେ, ଏଥିରେ ସନ୍ଦେହନାହିଁ । ଅବିଦ୍ୟାର ଅର୍ଥ ଗଣ୍ଡମୂର୍ଖ ବା ଉଦରମ୍ଭରି ହେବା ନୁହେ ।

ଯଦି କାଳକ୍ରମେ ସକଳ ଜାତିର ଅପଭ୍ରଂଶ ଘଟିଅଛି, ତେବେ ବ୍ରାହ୍ମଣ ଜାତିର ବା ନଘଟିବ କି କାରଣ ? କିନ୍ତୁ ପ୍ରତ୍ୟେକ ଜାତିକୁ କାଳାନୁଯାୟୀ କର୍ମ କରିବାକୁ ହେବ । ଆଜି ଶାସନୀ ବ୍ରାହ୍ମଣମାନେ କାଳୋଚିତ କର୍ମ କରିବାକୁ ବିମୁଖ, ପୁଣି ଆପଣା ଜାତି ଧର୍ମାନୁସାରେ କର୍ମ ସମ୍ପାଦନ କରିବାକୁ ଏକାନ୍ତ ଅକ୍ଷମ । କୃଷି ବାଣିଜ୍ୟ କାରିଗରି କିମ୍ବା ଅନ୍ୟ ଶ୍ରେଣୀସ୍ଥ ବ୍ରାହ୍ମଣମାନେ ଏମାନଙ୍କ ଅପେକ୍ଷା ଘୃଣ୍ୟ । ଯଦି ପୂର୍ବେ ରାଜା-ମାନେ ବ୍ରାହ୍ମଣମାନଙ୍କୁ ଭୂସମ୍ପତ୍ତି ଦାନ କରି ପୋଷୁଥିଲେ ତେବେ ସେତେବେଳେ ବ୍ରାହ୍ମଣମାନେ ଜୀବନ ନିର୍ବାହ ସକାଶେ କଷ୍ଟମାତ୍ର ନ ପାଇ ଅଧ୍ୟୟନ ଅଧ୍ୟାପନ ତପସ୍ୟାଚରଣ ପୂର୍ବକ ଲୋକରେ ସତ୍ ଶିକ୍ଷା ପ୍ରଦାନ କରୁଥିଲେ । ଆଜି ଯେବେ ସେ ରାଜାମାନେ ନାହାନ୍ତି, ତେବେ ବ୍ରାହ୍ମଣମାନେ ସ୍ୱାର୍ଜ୍ଜନଦ୍ୱାରା ପେଟ ପୋଷି ପାରିବେ । ଯଦି ଏମାନେ ଆପଣାର ଧର୍ମ କର୍ମରେ କାଳ ଯାପନ କରି କେବଳ ଜୀବନ ରକ୍ଷାର୍ଥେ ଭୋଜନାଶୀ ହୁଅନ୍ତି, ତାହା-ହେଲେ ଚିନ୍ତା ନ ଥାନ୍ତା ! ଲୋକେ ତେବେ ସମାଦର ପୂର୍ବକ ଭକ୍ତି ଭାବରେ ଏମାନଙ୍କୁ ଭରି ଭୋଜନ ଦେଉଥାଆନ୍ତେ । ଏମାନେ ଜ୍ଞାନାଭିବର୍ଦ୍ଧ କର୍ମ ଧର୍ମ ପରିତ୍ୟାଗ କରି କେବଳ ପେଟପୂରି ଖାଇ ପାପୀ ଲୋକଙ୍କୁ ପରିତ୍ରାଣ କରି ଦେବାକୁ ବସିଅଛନ୍ତି । ଯଦି ଅର୍ଥାଭାବଦ୍ୱାରା ଏମାନେ ବିଦ୍ୟା ଶିକ୍ଷା କରି ନପାରି ଶାସ୍ତ୍ରୋକ୍ତ ବ୍ରାହ୍ମଣୋଚିତ କର୍ମ ଧର୍ମ କରିବାକୁ ଅସମର୍ଥ ତେବେ ଏମାନେ କିପରି ବ୍ରାହ୍ମଣ ଭୋଜନର ଉପଯୁକ୍ତ ପାତ୍ର ହୋଇପାରିବେ ?

କେହି କହନ୍ତି କି ଆମ୍ଭେମାନେ ଷଟ୍‌କର୍ମ କରୁଅଛୁଁ, ସନ୍ଧ୍ୟା ପୂଜାଦି ନିତ୍ୟକର୍ମ କରୁଅଛୁଁ ପୁଣି ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଅଛୁଁ, ଅତଏବ ଆମ୍ଭେମାନେ ପ୍ରକୃତ ବ୍ରାହ୍ମଣ । ଲୋଭ ପରବଶ ହୋଇ ଅନ୍ୟର ଅପକାର କରି, ମିଥ୍ୟା ସାକ୍ଷ୍ୟଦେଇ, ଚିନ୍ତାନାହିଁ । କଚିରି ଭିତରେ ବା ପୋଖରୀ କୂଳରେ ବସି କାନ ନାକ ଛୁଇଁ, ଫଟା ଗାମୁଛା ପିନ୍ଧି, ଛିଡା ପଇତା

ପକାଇ ବାହାରିଲେ ବ୍ରାହ୍ମଣ ହେଲେ । ଆଜିକାଲି ବ୍ରାହ୍ମଣର ପରିଚୟ ପ୍ରାୟ ଅଜାଗଳ ସ୍ତନ-ନ୍ୟାୟ ନିରର୍ଥକ । ଏହାକୁ ଯେଉଁ ଆନ୍ଦୋଳନ ହେଲେ ତ ସାର ବାହାରିବ ? ବ୍ରାହ୍ମଣ ଜାତିର ଅବନତିର କାରଣ ନିର୍ଦ୍ଦେଶ କରି ତହିଁର ନିରାକରଣ କରିବାରେ ଆଜିକାଲି ଦେଶ କାଳ ପାତ୍ର ବିବେଚନାର କିଛି ମାତ୍ର ପ୍ରୟୋଜନ ନାହିଁ । ଭଗବାନ୍ ଶ୍ରୀକୃଷ୍ଣ କହିଅଛନ୍ତି । "ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମ ବିଭାଗଶଃ ।" ଅତଏବ ଗୁଣ କର୍ମ ବିଚାର ପ୍ରତି ଦୃଷ୍ଟି ରଖି ଜାତି ନିର୍ଣ୍ଣୟ କରାଯିବା ଉଚିତ।



# ଉଦାରତାରେ ସଂକୀର୍ଣ୍ଣତା–ଭାରତରେ "ପୋପ୍"

ଦେଶରେ ଏବଂ ଲୋକ ସମାଜରେ ଯେତେବେଳେ ଅନ୍ୟାୟ, ଅନୀତି, ମିଥ୍ୟା, ହିଂସା, ଦ୍ୱେଷ, ସ୍ୱାର୍ଥ, ଭାଇ ଭାଇ ମଧ୍ୟରେ ଭେଦ ବିଚାର, ପକ୍ଷପାତ ଇତ୍ୟାଦି ଅଧର୍ମର ପ୍ରାଦୁର୍ଭାବ ହୁଏ, ସେତେବେଳେ ଭଗବାନଙ୍କର ଆଦେଶ କ୍ରମେ ସ୍ଥାନ ବିଶେଷରେ ମହାତ୍ମାମାନେ ଜନ୍ମ ଗ୍ରହଣ କରନ୍ତି । ସେମାନେ ଆପଣା ଉପଦେଶ, ଆଦେଶ ଓ କର୍ମ ଧର୍ମଦ୍ୱାରା ଲୋକଙ୍କ ମନରୁ ଅଧର୍ମ ବିଚାର, ସମାଜରୁ ଦୁର୍ନୀତି, ପାପକର୍ମ, ହିଂସା, ପକ୍ଷପାତ ଇତ୍ୟାଦି ଦୂରକରି ତହିଁରେ ସ୍ନେହ, ପ୍ରୀତି, ଦୟା, କ୍ଷମା ଇତ୍ୟାଦି ଧର୍ମାଚରଣ ନିହିତ କରନ୍ତି । ଏହି ହିସାବରେ ଭାରତ ମହାଦେଶରେ ଯେତେବେଳେ ବ୍ୟପଦେଶ, ବାମାଚାର, ଜୀବହିଂସା, ଜାତିଭେଦ, ଅବିଚାର, ଅନାଚାର, ଅସ୍ପୃଶ୍ୟ ବର୍ଜନତା ଓ ପାଷଣ୍ଡତା ପ୍ରବର୍ତ୍ତିଲା, ସେତେବେଳେ ପୁରୀ ମହାରାଜାଙ୍କ ହୃଦୟରେ ଭଗବାନଙ୍କର ସଦିଚ୍ଛା ଅଙ୍କୁରିତ ହେଲା । ସମୁଦ୍ର କୂଳ ନୀଳାଚଳରେ ଧର୍ମକ୍ଷେତ୍ର ସ୍ଥାପିତ ହେଲା । ସେଠାରେ ଉତ୍କଳର କଳା କୌଶଳ କେନ୍ଦ୍ରୀଭୂତ ହେଲା; ସାମ୍ୟନୀତି, ପ୍ରେମଧର୍ମ, ଅଭେଦ ବିଚାର, ଅସ୍ପୃଶ୍ୟ ଇତ୍ୟାଦି ପ୍ରଚାରିତ ହେଲା । ଲୋକେ ଭେଦ ବିଚାର ଭୁଲିଗଲେ, ବ୍ରାହ୍ମଣ, ବାଉରି, କେଉଟ, କଣ୍ଡରା ଇତ୍ୟାଦି ଜାତି-ଭେଦ ଦୂରକୁ ଫିଙ୍ଗିଦେଲେ, ଆତ୍ମା ସହିତ ଆତ୍ମାର ମିଳନ ହେଲା, ସମସ୍ତେ ପରମାନନ୍ଦରେ ଆହାର ବିହାର କଲେ, ଅନ୍ୟ କ୍ଷେତ୍ରକୃତ ପାପନିଚୟ ପୁରୀ କ୍ଷେତ୍ରରେ ବିନାଶ ପ୍ରାପ୍ତ ହେଲା, ଏବଂ ପତିତ ପାବନ ଭଗବାନ ପାପୀମାନଙ୍କୁ ପରିତ୍ରାଣ କଲେ । ଦୁଃଖର ବିଷୟ ଆଜି ଭାରତ ଦେଶରେ "ପୋପ" ମାନେ ଭଗବାନଙ୍କର ଆଦେଶ ଅବଜ୍ଞାକରି ପୁନଶ୍ଚ ବ୍ୟପଦେଶ, ବ୍ୟଭିଚାର, ବାମାଚାର, ଭେଦ ବିଚାର ଇତ୍ୟାଦି ପାପାଚରଣର ପ୍ରବର୍ତ୍ତକ ହୋଇ ଅମୃତରେ ବିଷ ନିକ୍ଷେପ କରୁଅଛନ୍ତି । ସନାତନ ଧର୍ମ ରକ୍ଷିଣୀ ସଭା, ମୁକ୍ତିମଣ୍ଡପ ସଭା, ଧର୍ମ ମହାମଣ୍ଡଳ, କାଶୀ ପଣ୍ଡିତ ସଭା, ବଙ୍ଗୀୟ ବ୍ରାହ୍ମଣ ସମିତି, ଦାକ୍ଷିଣାତ୍ୟ ପଣ୍ଡିତ ସଭା ଇତ୍ୟାଦି କେବଳ

ଅଜ୍ଞାନ କୁସଂସ୍କାର ଉର୍ମିସଙ୍କୁଳ ଭାରତ ଦେଶର "ପୋପ"* ରୂପୀ ପଣ୍ଡିତ ଓ ପୁରୋହିତ ମାନଙ୍କ ଲୀଳାମାତ୍ର । ଏମାନେ ବିଦେଶ ଯାତ୍ରା ବିରୋଧୀ ହୁଅନ୍ତି, ବିଲାତ ଗମନ ନିଷେଧ କରନ୍ତି, ସ୍ତ୍ରୀ ଓ ଶୂଦ୍ର ମାନଙ୍କ ପକ୍ଷରେ ବେଦାଧ୍ୟୟନ ନିଷେଧ କରନ୍ତି, ଘରେ ଘରେ ଜାତିଭେଦ କରନ୍ତି, ଖାଦ୍ୟ ପାନରେ ପୁଣି ସ୍ପର୍ଶ ଓ ଦୃଷ୍ଟିରେ ଧର୍ମର ତତ୍ତ୍ୱ ନିହିତ କରନ୍ତି, ଅପୂର୍ବ ପାପର ସୃଷ୍ଟି କରନ୍ତି ଏବଂ ସେଥିପାଇଁ ବିଚିତ୍ର ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରନ୍ତି । ପୁଣ୍ୟ କ୍ଷେତ୍ର ସମସ୍ତଙ୍କୁ ପବିତ୍ର କରେ, ପତିତ ପାବନ ପାପିମାନଙ୍କୁ ଉଦ୍ଧାର କରନ୍ତି, କିନ୍ତୁ ଏମାନଙ୍କ ବିଚାରରେ ବିଲାତ ଫେରନ୍ତା-ମାନେ ପୂତ ପୁଣ୍ୟଧାମକୁ ଅପବିତ୍ର କରିପକାନ୍ତି, ଏବଂ ପତିତପାବନଙ୍କୁ ପତିତ କରିଦିଅନ୍ତି । ଏମାନେ ଯେତେବେଳେ ସୃଷ୍ଟିକର୍ତ୍ତା ଜଗନ୍ନାଥଙ୍କୁ ଅଶୁଦ୍ଧ ଅସ୍ପୃଶ୍ୟ ଚଣ୍ଡାଳ କରିପକାନ୍ତି ଏବଂ ତାହାଙ୍କ ପାଇଁ ମହାସ୍ନାନାଦି ପ୍ରତିକାର ଉଥାଣ କରୁଛନ୍ତି, ସେମାନଙ୍କ ଆଗରେ ଛାର ମନୁଷ୍ୟ ବା କେତେକର । ଏମାନେ ପଇସା ପାଇଲେ ଆଜ ମହାପାପୀଙ୍କୁ ମୁକ୍ତିକରି ଦିଅନ୍ତି ପୁଣି ଅର୍ଥାଗମର ଆଶା ନ ଦେଖିଲେ କାଲି ଦୁର୍ଲଭ ମାନବ ଜୀବନକୁ ମାଟି କରିପକାନ୍ତି, ପୁତ୍ର ପୌତ୍ରାଦି କ୍ରମେ ଅନନ୍ତ ନରକରେ ପକାଇ ଦିଅନ୍ତି । ଏହି କୁସଂସ୍କାର ସଙ୍କୀର୍ଣ୍ଣ ସ୍ୱାର୍ଥାନ୍ୱେଷୀ କ୍ଷୟଶୀଳ ଦଳପତି ମାନଙ୍କର ମୂଳୋତ୍ପାଟନ ନ ହେବା ପର୍ଯ୍ୟନ୍ତ ହିନ୍ଦୁ ଜାତିର ଉନ୍ନତି ସୁଦୂର ପରାହତ ।

* ପ୍ରାଚୀନ କାଳରେ ୟୁରୋପ ଦେଶର ପୁରୋହିତଙ୍କୁ " ପୋପ " କୁହାଯାଏ ।



## ବ୍ରାହ୍ମଣ ଭୋଜନ ।

ହିନ୍ଦୁ ମାନଙ୍କ ମଧ୍ୟରେ ବ୍ରାହ୍ମଣ ମାନଙ୍କୁ ଭୋଜନ ଦେବା ଗୋଟିଏ ଧର୍ମ କାର୍ଯ୍ୟବୋଲି ବିବେଚିତ ହୁଏ । ବ୍ରାହ୍ମଣ କହିଲେ ଆଜିକାଲି ନାମଧାରୀ ସୂତ୍ରଗୁଚ୍ଛଧାରୀ ବ୍ରାହ୍ମଣ ବୁଝାଏ । ବ୍ରାହ୍ମଣର ଲକ୍ଷଣ ଅନୁସାରେ ପ୍ରକୃତ ବ୍ରାହ୍ମଣଙ୍କୁ ଭୋଜନ ଦେବା ଖ୍ରୀଷ୍ଟିୟାନ, ମୁସଲମାନ ପ୍ରଭୃତି ଭିନ୍ନ ମତାବଲମ୍ବୀ ମାନେ ମଧ୍ୟ ଧର୍ମକାର୍ଯ୍ୟ ବୋଲିବେ । ପ୍ରକୃତ ବ୍ରାହ୍ମଣ ମାନଙ୍କୁ ଭୋଜନ ଦେବା ସହଜ ବ୍ୟାପାର ନୁହେଁ, କାରଣ ସେମାନେ ଭୋଜନାଶୀ ନୁହନ୍ତି । ବଳୀରାଜା ଥିଲେ, ସେ ଥରେ "ଯୁଧିଷ୍ଠିରଙ୍କୁ କହିଥିଲେ, ମୁଁ ଭୋଜନ ଦେବା ସକାଶେ ୧୦ ବ୍ରାହ୍ମଣ ମଧ୍ୟ ପାଏନାହିଁ, ଆପଣ କିପରି ୧୦୦୦ ସଂଖ୍ୟା ବ୍ରାହ୍ମଣଙ୍କୁ ଭୋଜନ ଦେଉ ଅଛନ୍ତି" । ବୟୋବୃଦ୍ଧ ଲୋକମାନେ କହନ୍ତି କି ପୂର୍ବରେ ରାଜାମାନେ ଭୋଜନ ଦେବା ନିମନ୍ତେ ବ୍ରାହ୍ମଣ ମାନଙ୍କୁ ଡାକିଲେ ବ୍ରାହ୍ମଣ ମାନେ ଲୁଚନ୍ତି, ଦେଖା ଦିଅନ୍ତିନାହିଁ । ଏବେ ବ୍ରାହ୍ମଣମାନେ କୌଣସି ସ୍ଥାନରେ ଭୋଜନ ହେଉଥିବା କଥା ଶୁଣିବା ମାତ୍ରେ ବିନା ଆମନ୍ତ୍ରଣରେ ସେଠାକୁ ଧାଇଁ ଯାଆନ୍ତି । କୌଣସି ବ୍ୟକ୍ତି ୧୦ ଜଣ ସକାଶେ ଭୋଜନ ସାମଗ୍ରୀ ଯୋଗାଡ଼ କରିଥିଲେ ୫୦ ଜଣ ଯାଇ ତାକୁ ଆକ୍ରମଣ କରନ୍ତି ।

ଏମାନଙ୍କୁ ଖଇ ଦହି ପ୍ରଭୃତି ଭୋଜନ ସାମଗ୍ରୀ ପରସିବା ବେଳେ, ଦିଆଯାଇଥିଲେ ମଧ୍ୟ ଦିଆ ଯାଇ- ନାହିଁ ବୋଲି ଫେରେ ମାଗନ୍ତି, ଖଇରେ ସାମଗ୍ରୀ ଦିଆଯିବା ମାତ୍ରେ ତାହାସବୁ ଆପଣାର ଡାଲି ପିଢ଼ାତଳେ, ଅଣ୍ଟିରେ ରଖିଦେଇ ଶେଷହୋଇ ଗଲାବୋଲି କହି ଫେରେ ମାଗି ନ ଅନ୍ତି ପୁଣି ସମୟ ସମୟରେ ପରସିବା ଲୋକଙ୍କ ସହିତ ଝିଙ୍କା ଓଟରା ଟଣାଟଣି କରି କଳହକଜିଆ କରନ୍ତି । କୌଣସି ଶାସନରେ ଯଦି ବ୍ରାହ୍ମଣ ମାନେ ବାଡ ବାଡ ହୋଇ ବିଭକ୍ତ ହୋଇଥିବେ ତେବେ ଭୋଜନ ଦାତାକୁ ବଡ ହଇରଣ ହେବାକୁ ପଡ଼େ । କେଉଁ ବାଡ ବା ଶ୍ରେଣୀ ବ୍ରାହ୍ମଣ ଆଗ ବସିଗଲେ କିଏ ପଛେ ବସିବେ, କାହାକୁ ପ୍ରଥମେ ଜଳ ଦିଆଗଲା, କିଏ ଆଗ ଉଠିଗଲା ଏହିପରି ନିରର୍ଥକ ବିଷୟ ନେଇ ବ୍ରାହ୍ମଣ ମାନଙ୍କ ମଧ୍ୟରେ କୋଳାହଳ ଅଗ୍ନି ପ୍ରଜ୍ଜ୍ୱଳିତ ହୋଇ ଉଠେ । ପରିଶେଷରେ ଦାତାର ଭୋଜନ ସାମଗ୍ରୀ ନଷ୍ଟହେବା ପର୍ଯ୍ୟନ୍ତ ଯାଏ । ଏହାକୁ କହି ବ୍ରାହ୍ମଣ ଭୋଜନ । ସମୟେ ୨ ଖବର କାଗଜରେ ସମ୍ବାଦ ଦାତା ମାନେ ଏହି ବ୍ରାହ୍ମଣ ଭୋଜନର ପରି ପ୍ରଶଂସା ଗାଇ ଅଛନ୍ତି । "ତୁଷ୍ୟନ୍ତି ଭୋଜନେ ବିପ୍ରାଃ," ବୋଧହୁଏ, ଏହିଶାସ୍ତ୍ର ବାକ୍ୟାନୁସାରେ ପରି ବ୍ରାହ୍ମଣ ମାନଙ୍କର ଭୋଜନ କରିବା ଗୋଟିଏ ପ୍ରଧାନ କର୍ତ୍ତବ୍ୟ କର୍ମ ପଡିଅଛି । ଉଦରମ୍ଭରି ବ୍ରାହ୍ମଣ ମାନେ ଯେପରି ଏହି ବାକ୍ୟର ଅର୍ଥକୁ ଅନର୍ଥ କରି ପକାଇ ଅଛନ୍ତି, ତଦ୍ରୂପ ଲୋକେ ପାରମ୍ପର୍ଯ୍ୟ କବଳରେ ଅଙ୍ଗୀଭୂତ ହୋଇ ଶ୍ରୁତି ସ୍ମୃତି ବାକ୍ୟ ଗୁଡିକୁ ଛାଡ଼ି ଅପଭ୍ରଷ୍ଟ କରାଇ ଦେଶାଚାର କୁଳାଚାରର ଦାସହୋଇ ପଡି ଅଛନ୍ତି । ବିପ୍ରମାନେ ବେଦ ଅଧ୍ୟୟନ ଏବଂ ଅଧ୍ୟାପନାରେ କାଳ ଯାପନ କରିଥାନ୍ତି । ସେ ମାନଙ୍କର ଧନ ରତ୍ନାଦି ଭୋଗ ବିଳାସରେ ବାସନା ନଥାଏ । ସେମାନେ କେବଳ ଶରୀର ରକ୍ଷା ସକାଶେ ଭୋଜନ ବସ୍ତ୍ର ମାତ୍ର ପାଇଲେ ପରିତୃପ୍ତି ଲାଭ କରନ୍ତି । ଉକ୍ତ ବାକ୍ୟର ଏହି ପ୍ରକୃତ ଅର୍ଥ କୁକ୍ଷିମ୍ଭରି ବ୍ରାହ୍ମଣ ମାନଙ୍କୁ ଅଜୁଆ ବୋଧହେବ ।

ବଜ୍ରସୂଚୀ ନାମକ ଗ୍ରନ୍ଥରେ ପ୍ରକୃତ ବ୍ରାହ୍ମଣର ବର୍ଣ୍ଣନା କରାଯାଇ ଅଛି । ଯେ ପରମାତ୍ମାଙ୍କୁ ବୁଝି ଅଛନ୍ତି, ଯେ ଶମଦମାଦି ସାଧନରେ ଯତ୍ନ ଶୀଳ, ଯେ ଦୟା, କ୍ଷମା, ସତ୍ୟ, ସରଳତା ଓ ସନ୍ତୋଷ ପ୍ରଭୃତି ଗୁଣସମ୍ପନ୍ନ ଏବଂ ଯେ ମୋହ, ମାତ୍ସର୍ଯ୍ୟ ଓ ଦମ୍ଭାଦିର ଦମନ କରି ଅଛନ୍ତି, ସେହି କେବଳ ପ୍ରକୃତ ବ୍ରାହ୍ମଣ ଅଟନ୍ତି । ବନପର୍ବ ରେ ରାଜା ଯୁଧିଷ୍ଠିର କହିଅଛନ୍ତି କି ସତ୍ୟ, ଜ୍ଞାନ, କ୍ଷମା, ଅହିଂସା, ତପସ୍ୟା ଓ ଦୟା ଯାହାଠାରେ ଥାଏ ସେ ବ୍ରାହ୍ମଣ । ଏହି ଲକ୍ଷଣାନୁସାରେ ବିବେଚନା କଲେ ପୂର୍ବୋକ୍ତ ଭୋଜନପ୍ରିୟ ବ୍ରାହ୍ମଣମାନେ ପ୍ରକୃତ ବ୍ରାହ୍ମଣ କି ?

ଶାସନୀ ଏବଂ ବ୍ରାହ୍ମଣବଂଶଜ ହେଲେ ହେଁ ମୂର୍ଖ, ଉଦରମ୍ଭରି, କଳହ କୁଶଳ କମ୍ବୁ ସୂତ୍ର ଗୁଚ୍ଛଧାରୀ ବ୍ରାହ୍ମଣ ମାନଙ୍କୁ ଭୋଜନ ଦେଲେ ଅତ୍ରି ମହର୍ଷିଙ୍କ ବାକ୍ୟାନୁସାରେ ଦାତାର ଧର୍ମହେବା ଦୂରେ ଥାଉ ତାହାର କୁଳପର୍ଯ୍ୟନ୍ତ ବିନଷ୍ଟ ହୁଏ ।



# ବିଲାତ ଯାତ୍ରା ।

ଭାରତବର୍ଷ ତଥା ଆର୍ଯ୍ୟାବର୍ତ୍ତବାସୀ ହିନ୍ଦୁ ବା ଆର୍ଯ୍ୟମାନେ ସ୍ୱଦେଶ ଛାଡ଼ି ଆମେରିକା ୟୁରୋପ ପ୍ରଭୃତି ଅନ୍ୟ ଦେଶକୁ ଗଲେ ସେମାନଙ୍କର ଆଚାର ଭ୍ରଷ୍ଟ କିମ୍ବା ଧର୍ମ ନଷ୍ଟ ହୋଇ ପାରେକି ? ବିଦେଶ ଯାତ୍ରା କରିବା ମାତ୍ରେ ଆଚାର ଭ୍ରଷ୍ଟ ବା ଧର୍ମ ନଷ୍ଟ ହୁଏନାହିଁ । ଯେଉଁ ଲୋକମାନେ କାୟ ମନୋବାକ୍ୟରେ ପବିତ୍ର ରହନ୍ତି, ସର୍ବଦା ସତ୍ୟ ଭାଷଣାଦି ଧର୍ମ ଚରଣ କରନ୍ତି ସେମାନେ ସ୍ୱଦେଶରେ ବିଦେଶରେ ସର୍ବତ୍ର ଆଚାରବାନ୍ ଓ ଧାର୍ମିକ ରହନ୍ତି, କଦାପି ଆଚାର ଭ୍ରଷ୍ଟ ଓ ଧର୍ମ ନଷ୍ଟ ହୁଅନ୍ତି ନାହିଁ ; କିନ୍ତୁ ଯେଉଁମାନେ ଦୁଷ୍ଟାଚାର କରନ୍ତି, ମିଥ୍ୟା ଭାଷଣାଦି ପାପକର୍ମ କରନ୍ତି ସେମାନେ ଆର୍ଯ୍ୟାବର୍ତ୍ତର ପ୍ରଧାନ ତୀର୍ଥବାସୀ ହେଲେ ସୁଦ୍ଧା ଆଚାର ଭ୍ରଷ୍ଟ ଅଧାର୍ମିକ ହୁଅନ୍ତି । ପୂର୍ବ କାଳରେ ଋଷି ମୁନି, କ୍ଷତ୍ରିୟ, ବ୍ରାହ୍ମଣ ଇତ୍ୟାଦି ଆର୍ଯ୍ୟମାନେ ଅବାଧରେ ବିଦେଶ ଗମନକରି ଲୋକୋପକାର ସାଧନ ଏବଂ ଯଶଃକୀର୍ତ୍ତି ସମ୍ପାଦନ କରୁଥିଲେ । ମହାଭାରତ ଶାନ୍ତିପର୍ବ ମୋକ୍ଷ ଧର୍ମରେ ଲେଖାଅଛି ଏକ ସମୟରେ ବ୍ୟାସଦେବ ଆପଣା ପୁତ୍ର ଓ ଶିଷ୍ୟ ସହ ପାତାଳ ପୁରରେ ନିବାସ କରୁଥିଲେ । ପାତାଳ ପୁରକୁ ଅଧୁନାକାଳ ଆମେରିକା କହନ୍ତି । ସେତେବେଳେ ଶୁକଦେବ ପିତାଙ୍କୁ ପଚାରିଲେ "ଆତ୍ମବିଦ୍ୟା ଏତିକିନା ଆଉଅଛି ?" ବ୍ୟାସଦେବ ନିଜେଜାଣି ଥିଲେହେଁ ଏହି ପ୍ରଶ୍ନର ଉତ୍ତର ନଦେଇ ମିଥିଳା ପୁରଯାଇ ଜନକ ରାଜାଙ୍କୁ ଜିଜ୍ଞାସା କରିବା ନିମନ୍ତେ ପୁତ୍ରଙ୍କୁ ଆଦେଶ ଦେଲେ । ସେତେବେଳେ ଶୁକଦେବ ପିତାଙ୍କ ବଚନ ଶୁଣି ମିଥିଳାପୁରୀ ଗମନକଲେ । ହିମାଳୟର ଉତ୍ତର ଓ ବାୟବ୍ୟ କୋଣରେ ଅବସ୍ଥିତ ହରିବର୍ଷ ଦେଶ, ଯାହାଆଜି ୟୁରୋପ ନାମରେ ଅଭିହିତ, ସିନ୍ଧୁଦ, ବ୍ରାହ୍ମ ମାନଙ୍କଦେଶ, ଚିନଦେଶ ଏହି ସକଳ ଦେଶ ଅତିକ୍ରମ କରି ଶୁକାଚାର୍ଯ୍ୟ ହିମାଳୟ ବାଟେ ମିଥିଳାପୁରୀକୁ ଗମନ କରିଥିଲେ । ଶ୍ରୀକୃଷ୍ଣ ଓ ଅର୍ଜୁନ ଅଶ୍ୱତର ଆରୋହଣ କରି ପାତାଳ ପୁରୀ ବା ଆମେରିକାକୁ ଯାଇ ମହାରାଜା ଯୁଧିଷ୍ଠିରଙ୍କ ଯାଗ ନିମନ୍ତେ ସେଠାରୁ ଉଦ୍ଦାଳକ ଋଷିଙ୍କି ଆଣିଥିଲେ । ଧୃତରାଷ୍ଟ୍ର ରଜା ଗାନ୍ଧାର ଅର୍ଥାତ୍ କାନ୍ଦାହାର ଦେଶର ରାଜକନ୍ୟାଙ୍କୁ ବିବାହ କରିଥଲେ । ପାଣ୍ଡୁରାଜାଙ୍କ ମହିଷୀ ମାଦ୍ରୀ ଦେବୀ ଇରାନ ପାରସ୍ୟ ଦେଶ ରାଜପୁତ୍ରୀ ଥିଲେ । ପୁଣି ଅର୍ଜୁନ ପାତାଳ ପୁରସ୍ଥ କୌଣସି ରାଜକନ୍ୟା ଉଲୋପୀଙ୍କ ପାଣି ଗ୍ରହଣ କରିଥିଲେ । ଯୁଧିଷ୍ଠିରଙ୍କ ରାଜସୂୟ ଯାଗ ସକାଶେ ଭୀମାଦି ଚାରିଭାଇ ଚାରିଦିଗକୁ ଯାଇ ଭୂମଣ୍ଡଳସ୍ଥ ନାନା ଦେଶ ବିଦେଶ ଭ୍ରମଣ କରି ବିଦେଶୀୟ ରାଜାମାନଙ୍କୁ ନିମନ୍ତ୍ରଣ କରି ଆଣିଥିଲେ । ପୁଣି ସମୁଦ୍ର ବାହିନୀ ନୌକାଉପରେ କର ଧାର୍ଯ୍ୟ କରିବା କଥା ମନ୍ୱାଦି ସ୍ମୃତିରେ ଲେଖାଅଛି । ପ୍ରୋକ୍ତ ଘଟଣାବଳୀରୁ ସ୍ପଷ୍ଟ ଜଣାଯାଏ ଯେ, ପୂର୍ବକାଳରେ ଆର୍ଯ୍ୟମାନେ ଦେଶ ଦେଶାନ୍ତର ଦ୍ୱୀପ ଦ୍ୱୀପାନ୍ତର ଅବାଧରେ ଗମନ କରୁଥିଲେ, ବୈଦେଶିକ ମାନଙ୍କ ସହିତ ମୈତ୍ରୀ ଏବଂ ବିବାହ ସମ୍ବନ୍ଧ ସ୍ଥାପନ କରି ପାରୁଥିଲେ ପୁଣି ବାଣିଜ୍ୟ, ରାଜକାର୍ଯ୍ୟ ଏବଂ ଭ୍ରମଣ

ସକାଶେ ସମୁଦ୍ର ପାରାବାର ଦେଶ ଦେଶାନ୍ତର ପର୍ଯ୍ୟଟନ କରୁଥିଲେ । ଯେଉଁମାନେ ଦେଶାନ୍ତର ଗମନ କରନ୍ତି, ନାନାବିଧ ଲୋକଙ୍କ ସହିତ ସହବାସ କରନ୍ତି, ସେମାନେ ନାନାପ୍ରକାର ଲୋକଙ୍କର ରୀତି ନୀତି, ଆଚାର ବିଚାର ଇତ୍ୟାଦି ଦେଖି ଶୁଣି ଆପଣାର ଅଭିଜ୍ଞତା ବଢ଼ାନ୍ତି, ବାଣିଜ୍ୟ ବୃଦ୍ଧି କରନ୍ତି, ରାଜନୈତିକ କ୍ଷମତା ସମ୍ପାଦନ କରନ୍ତି, ଧୈର୍ଯ୍ୟଶାଳୀ ଏବଂ ନିର୍ଭୀକ ହୁଅନ୍ତି, ପୁଣି ବିଦେଶୀ ମାନଙ୍କର ସଦ୍‌ଗୁଣ ଶିକ୍ଷା କରନ୍ତି, ଆପଣାର ଦୁର୍ଗୁଣ ପରିତ୍ୟାଗ କରନ୍ତି ଏବଂ ଆପଣା ଦେଶର ଉନ୍ନତି ସାଧନ କରନ୍ତି । ଅଜ କାଲି ଯେଉଁ ଛୁଆଁ ଛୁଇଁ ଦୋଷ ଓ ବିଦେଶ ଯାତ୍ରାର, ଅନାଚାର ଓ ଧର୍ମ ହାନିର ଅଶଙ୍କା କରାଯାଏ, ତାହାସବୁ ମୂର୍ଖ, ଅଜ୍ଞାନୀ ଓ ସ୍ୱାର୍ଥପର ଲୋକଙ୍କର ଛଳନା ପୂର୍ଣ୍ଣ କଳ୍ପନା ମାତ୍ର । ଏମାନଙ୍କ ବିଚାରନୁସାରେ ମହାଭ୍ରଷ୍ଟ ମ୍ଲେଚ୍ଛ କୁଳଜାତ ବେଶ୍ୟା ସହବାସ, ମାଦକ ଦ୍ରବ୍ୟ ସେବନ ଓ ମାଂସ ଭକ୍ଷଣରେ ଆଚାର ଭ୍ରଷ୍ଟ ବା ଧର୍ମ ନଷ୍ଟ ହୁଏ ନାହିଁ, କିନ୍ତୁ ଦେଶାନ୍ତର ବାସୀ ଧାର୍ମିକ ମହାପୁରୁଷ ସମାଗମରୁ ଜାତିଭ୍ରଷ୍ଟ, ଧର୍ମହାନି ଇତ୍ୟାଦି ଦୋଷ ହୁଏ । ଏହାକି ଅଦ୍ଭୁତ ମୂର୍ଖତା ନୁହେଁ ? ଯେଉଁମାନେ ମାଂସ ଭକ୍ଷଣ ଓ ମଦ୍ୟପାନ କରନ୍ତି ସେମାନଙ୍କର ଶରୀର ମନ ଓ ବୀର୍ଯ୍ୟାଦି ଧାତୁ ନିଶ୍ଚୟ ଦୂଷିତ ହୋଇଯାଇ ଥାଏ । ଅତଏବ ସେମାନଙ୍କ ସଂସର୍ଗରେ ଆର୍ଯ୍ୟ ମାନଙ୍କର ସତର୍କ ରହିବା ଉଚିତ ହୁଏ, ଯେପରିକି ଉକ୍ତ ଦୁରଭ୍ୟାସରେ ପଡ଼ି ଏମାନେ ମଧ୍ୟ ଦୂଷିତ ହୁଅନ୍ତି ନାହିଁ, କିନ୍ତୁ ବୈଦେଶିକ ମାନଙ୍କ ଠାରୁ ବାଣିଜ୍ୟ, ଶିଳ୍ପାଦି ବ୍ୟବସାୟ ପୁଣି ଧୈର୍ଯ୍ୟ, ଅଧ୍ୟବସାୟ ଇତ୍ୟାଦି ସଦ୍‌ଗୁଣ ଓ ସତ୍‌କର୍ମମାନ ଶିକ୍ଷାକଲେ କୌଣସି ଦୋଷ ବା ପାପ ହୁଏ ନାହିଁ । ରାଗ, ଦ୍ୱେଷ, ଅନ୍ୟାୟ, ମିଥ୍ୟା ଭାଷଣାଦି ଦୋଷ ଛାଡ଼ି ନିର୍ବୈର, ପ୍ରୀତି, ପରୋପକାର, ଶୀଳ, ସୌଜନ୍ୟ ଇତ୍ୟାଦି ଅଟେ ଉତ୍ତମ ଆଚାର । ଆମ୍ଭର ଆତ୍ମା ଓ କର୍ତ୍ତବ୍ୟ-ସହିତ ଆମ୍ଭର ଧର୍ମ ନିହିତ ଅଛି । ଆମ୍ଭେମାନେ ଯଦି ଉତ୍ତମ କର୍ମ କରିବା ତେବେ ଦେଶାନ୍ତର ବା ଦ୍ୱୀପାନ୍ତର ଗଲେ ସୁଦ୍ଧା ଆମ୍ଭର କୌଣସି ପାପ ହୁଏ ନାହିଁ, କେବଳ ଦୁଷ୍ଟ କର୍ମ କଲେ ପାପ ଲାଗେ । ଅନ୍ୟାନ୍ୟ ଦେଶରେ ବାଣିଜ୍ୟ ଓ ଅଧିକାର ସ୍ଥାପନ ନକଲେ ସ୍ୱଦେଶର ଉନ୍ନତି ସମ୍ଭବପର ନୁହେ । ଯେଉଁ ଦେଶର ଲୋକେ କେବଳ ସ୍ୱଦେଶରେ ବାଣିଜ୍ୟ କରନ୍ତି, ଅନ୍ୟ ଦେଶକୁ ଯାଆନ୍ତି ନାହିଁ ପୁଣି ବୈଦେଶିକ ମାନେ ଆସି ଯେଉଁମାନଙ୍କ ଦେଶରେ ବାଣିଜ୍ୟ ଓ ଆଧିପତ୍ୟ କରନ୍ତି, ସେହି ଦେଶ ନିଶ୍ଚୟ ଦୁଃଖ ଦାରିଦ୍ର୍ୟ ଭୋଗକରେ । ଗୁରୁ ପୁରୋହିତ ଓ ବ୍ରାହ୍ମଣ ନାମ ଧାରୀ ଅଜ୍ଞାନୀ ସ୍ୱାର୍ଥପର ପାଷଣ୍ଡ ବ୍ୟକ୍ତିମାନେ କେବଳ ବେଦାଧ୍ୟୟନ ଏବଂ ବିଦେଶ ଯାତ୍ରା ନିଷେଧ କରନ୍ତି, କାରଣ, ସେମାନେ ବୁଝନ୍ତି ଯେ, ଅନ୍ୟ ଲୋକେ ବେଦାଦି ଶାସ୍ତ୍ର ପଢ଼ି ବିଦେଶ ଗମନ କରି ବୁଦ୍ଧିମାନ ହେଲେ ଆଉ ସେମାନଙ୍କ ଭଣ୍ଡଜାଲରେ ପଡ଼ିବେ ନାହିଁ, ତେବେ ସେମାନଙ୍କର ଆଧିପତ୍ୟ ଓ ଉପାର୍ଜ୍ଜନ କମିଯିବ । ଏହି ସ୍ୱାର୍ଥୀ ପାଷଣ୍ଡ ମାନଙ୍କ ଯୋଗୁଁ ଆଜି ଭାରତର ଏ ଦୁର୍ଦ୍ଦଶା ଓ ଶୋଚନୀୟ ଅବସ୍ଥା ।

# ଆତିଥ୍ୟ ।

କୌଣସି ଗୃହସ୍ଥଙ୍କ ଗୃହଠାରେ ଉପସ୍ଥିତ ଯେ କୌଣସି ଅଭ୍ୟାଗତ ବା ଆଗନ୍ତୁକ ବ୍ୟକ୍ତିଂକ ଅତିଥି ଭୁର୍ହାଯାଏ, " ଯସ୍ୟନଜ୍ଞାୟତେନାମ ନଚଗୋତ୍ରଂ ନଚସ୍ଥିତିଃ ଅକସ୍ମାଦ୍ ଗୃହମାୟାତି ସୋଽତିଥିପ୍ରୋଚ୍ୟତେବୁଧୈଃ " । ଭକ୍ଷୁ, ବ୍ରହ୍ମଚାରୀ, ସନ୍ୟାସୀ, ବା ଗୃହସ୍ଥ ଯେ କୌଣସି ନବାଗତ ବ୍ୟକ୍ତି ଅତିଥିରୂପେ ପରିଗୃହୀତ ହୋଇପାରନ୍ତି । ଏହି ଆଗନ୍ତୁକ ବ୍ୟକ୍ତି ମାନଙ୍କର ତାତ୍କାଳିକ ସୁଖ ସ୍ୱାଚ୍ଛନ୍ଦ୍ୟ ସାଧନ ନିମନ୍ତେ ବିଶେଷତଃ ଅଶନ ଶୟନ, ପ୍ରଭୃତି ଦୈନିକ କାର୍ଯ୍ୟ ନିର୍ବାହ ସମ୍ବନ୍ଧରେ ଯେଉଁ ବ୍ୟବସ୍ଥା କରଯାଏ ତାହାକୁ ଆତିଥ୍ୟ କହନ୍ତି। ଏହି ଅତିଥି ସତ୍କାର ଆଗନ୍ତୁକ ଅତିଥିଙ୍କ ପ୍ରୟୋଜନାନୁଯାୟୀ ହେଲେ ମଧ୍ୟ ଗୃହସ୍ଥ ବା ଆତିଥେୟଙ୍କ ଯଥା ଶକ୍ତି ସଙ୍ଗତ ହେବା ଉଚିତ । ଏହି ଅତିଥି ସତ୍କାର ଅତିଥିଙ୍କ ଗୁଣ କର୍ମ ଓ ଅବସ୍ଥା ଉପରେ ନିର୍ଭର କରେ କି ନା ? ଅର୍ଥାତ୍ ଯେ କୌଣସି ଆଗନ୍ତୁକ ହେଉ ଆତିଥ୍ୟର ପାତ୍ର ହୁଏ କି ନା ? ଅତିଥି ମାନଙ୍କର ଗୁଣ, କର୍ମ ଏବଂ ଅବସ୍ଥା ବିଷୟକ ବିଚାର ପୃଥକ କଥା, ସତ୍କାର ସହିତ ଏହାର କୌଣସି ସମ୍ପର୍କ ରଖାଯାଇ ନପାରେ । ଆଗନ୍ତୁକ ବ୍ୟକ୍ତି ଧନୀ ବା ଦରିଦ୍ର ହୁଅନ୍ତୁ, ପଣ୍ଡିତ ବା ମୂର୍ଖ ହୁଅନ୍ତୁ, ମିତ୍ର ବା ଶତ୍ରୁ ହୁଅନ୍ତୁ, ସଜ୍ଜନ ବା ଦୁର୍ଜନ ହୁଅନ୍ତୁ, ସେ ସେହି ସମୟ ନିମନ୍ତେ ଅତିଥି, ତାହାଙ୍କୁ ଯଥୋଚିତ ସାଦର ସତ୍କାର କରିବାକୁ ହେବ । ଆତିଥ୍ୟ ନିମନ୍ତେ ଆଗନ୍ତୁକ ବ୍ୟକ୍ତିମାନଙ୍କ ନାମ, ଗୋତ୍ର ବା ଜାତି ଜିଜ୍ଞାସା କରିବା ଉଚିତନୁହେ ।

"ଦେଶଂ ନାମକୁଳଂ ବିଦ୍ୟାଂ ପୃଷ୍ଟ୍ୱାଽଦ୍ୟ ୧ ନଂପ୍ରଯଚ୍ଛତି ନସତତ୍ ଫଳମାପ୍ନୋତି ଦତ୍ୱାସ୍ୱର୍ଗଂ ନଗଚ୍ଛତି ।" ପୁଣି ଉକ୍ତ ଅଛି

"ପ୍ରିୟୋବା ଯଦିବାଦ୍ୱେଷ୍ୟୋ ମୂର୍ଖଃପଣ୍ଡିତ ଏବବା
ସମ୍ପ୍ରାପ୍ତେ ବୈଶ୍ୟଦେବାନ୍ତେ ସୋଽତିଥିଃ ସ୍ୱର୍ଗ ସଙ୍କ୍ରମଃ "

ସଜ୍ଜନ ମାନଙ୍କ ସତ୍କାର ମର୍ଯ୍ୟାଦାଜନକ ଯୋଗ ସଦୃଶ୍ୟ ହେଲେହେଁ ଦୁର୍ଜନ ମାନଙ୍କୁ ସତ୍କାର କରିବା ମନ୍ଦ ନୁହେ, ବରଂ ଏହି ଅତିଥି ଦ୍ୱାରା ଦୌର୍ଜନ୍ୟର କିଛି ଉପଶମ ହୋଇ-ପାରେ । ଅତଏବ ପ୍ରତ୍ୟେକ ଆଗନ୍ତୁକ ଅତିଥିଙ୍କୁ ଯଥାସାଧ୍ୟ ଏବଂ ଯଥୋଚିତ ସତ୍କାର କରିବା କର୍ତ୍ତବ୍ୟ । ସ୍ୱକୁଟୁମ୍ବସ୍ଥ ଲୋକ ମାନଙ୍କୁ ନଭୁକ୍ତ, କ୍ଳାନ୍ତ, ରୁଗ୍ଣ ବା ବନ୍ଧ ମାନଙ୍କୁ ( ଯେଉଁମାନେ ସେବା ଶୁଶ୍ରୂଷା ବା ସାହାଯ୍ୟ ପାଇବା ନିମନ୍ତେ ଗୃହସ୍ଥ ଉପରେ ଦାବିକରି ପାରନ୍ତି ) ସତ୍କାର କରିବା ଅତିଥି ସତ୍କାରନୁହେ ନଭୁବା ପ୍ରକୃତ ବା ଉଚିତଧରଣର ଆତିଥ୍ୟନୁହେ । ଅପରିଚିତ ସାଧାରଣ ଆଗନ୍ତୁକ ବ୍ୟକ୍ତିଙ୍କର ସତ୍କାର କରିବାହିଁ ପ୍ରକୃତ ଆତିଥ୍ୟ । କୌଣସି ଅଜ୍ଞାତ କୁଳଶୀଳ ଦୁରାତ୍ମା ମଧ୍ୟ ଉପସ୍ଥିତ ହେଲେ ଗୃହସ୍ଥଙ୍କୁ ତାହାଙ୍କର ସତ୍କାର କରିବାକୁ ହେବ । ଯେକୌଣସି ବ୍ୟକ୍ତିଙ୍କୁ ହେଉ ସତ୍କାର କରିବା ଦ୍ୱାରା ଗୃହସ୍ଥର ହାନି ହୁଏ ନାହିଁ ବରଂ ଲାଭହୁଏ । ତଦ୍ୱାରା

ଗୃହସ୍ଥର ସୌଜନ୍ୟ ପ୍ରକାଶ ସଙ୍ଗେ ଦୁର୍ବୃତ୍ତର ଦୌର୍ଜନ୍ୟ ଦୂରୀଭୂତ ହୁଏ । ଶତ୍ରୁ ଆସି ଶରଣାଗତ ହେଲେ ଯେପରି ତାହାକୁ ଅଭୟ ଦେବାକୁ ହୁଏ ଅତିଥି ରୂପେ ଗୃହାଗତ ହେବାବେଳେ ମଧ୍ୟ ତାହାର ସତ୍କାର କରିବା ଗୃହସ୍ଥର କର୍ତ୍ତବ୍ୟ । ଯୁଦ୍ଧ ଅଭିଯାନ ପୂର୍ବରୁ କେହି ଶତ୍ରୁ ପକ୍ଷ ଗୃହାଗତ ହେବା ଦେଖି କେହି ଗୃହସ୍ଥ କହିଥିଲେ, ମୁଁ ମଧ୍ୟ ଆପଣଙ୍କ ପ୍ରାଣବଧ କାର୍ଯ୍ୟରେ ଯୋଗଦେବ କିନ୍ତୁ ବର୍ତ୍ତମାନ ଆପଣ ମୋହର ଅତିଥି, ଏତେ ବେଳେ ମୁଁ କିଛି କରି ନପାରେ । ସୁତରାଂ ଆପଣଙ୍କୁ ଏହି ଘୋଡ଼ା ଦେଉଅଛି, ଆପଣ ଏହି ଘୋଡ଼ାକୁ ନେଇ ଅତଶୀଘ୍ର ଚାଲି ଯାଆନ୍ତୁ । ଏହି ମୁହୂର୍ତ୍ତି ଅମ୍ଭେମାନେ ଆପଣଙ୍କ ଅନୁସନ୍ଧାନରେ ବାହାରିବୁ, ଏହାକହି ଗୃହସ୍ଥ ଅତିଥିଙ୍କୁ ବିଦାୟ ଦେଇଥିଲେ । ଗଭୀର ଶୋକର ବିଷୟ, ଆମ୍ଭ ଦେଶରେ ଆଗନ୍ତୁକ ଶତ୍ରୁର ଆତିଥ୍ୟ କରିବା ଦୂରେ ଥାଉ, ମିତ୍ର ପ୍ରତି ମଧ୍ୟ ଆଗ୍ରହ ଦେଖା ଯାଏନାହିଁ । କୌଣସି ଆଗନ୍ତୁକ ବ୍ୟକ୍ତି ଗୃହରେ ପ୍ରବେଶ କରିବା ମାତ୍ରେ ଅନେକଙ୍କୁ ଗଳଗ୍ରହ ପରି ବୋଧହୁଏ । ଏମାନେ ଅନିଚ୍ଛା ପୂର୍ବକ କିଛି ଗୋଟିଏ କାର୍ଯ୍ୟକରି ଦେଇ ବା କିଛି ଦେଇ ଦେଇ ଅତିଥିଙ୍କୁ ବିଦାୟ ଦେବାକୁ ତତ୍ପର ହୋଇ ଥାନ୍ତି । ଆଗ୍ରହ ନଥାଇ ଯେଉଁ ଭୋଜନ ଦିଆଯାଏ ବା ସାହାଯ୍ୟ କରାଯାଏ ତହିଁରେ ଅତିଥିଙ୍କର ତୃପ୍ତି ଜାତ ହୁଏନାହିଁ, ବରଂ ମନରେ ପୀଡ଼ା ହେବା ସମ୍ଭାବନା । ଏହି ଅତିଥି ସତ୍କାର ଅନେକ ସମୟରେ ପାଉଁସରେ ଘିଅ ଢାଳିବା ନ୍ୟାୟ ହୋଇଥାଏ । ଅନେକେ ସାଧାରଣତଃ ଆପଣାର କୌଣସି ସ୍ୱାର୍ଥ ସାଧନ ବା ଭାବୀ ଉପକାର ଉଦ୍ଦେଶ୍ୟରେ ଆଗନ୍ତୁକ ବ୍ୟକ୍ତିଙ୍କର ପରିଚର୍ଯ୍ୟା କରି ଥାନ୍ତି; ଅର୍ଥାତ୍ ଯାହାଠାରୁ ଭବିଷ୍ୟତରେ କିଛି ପାଇବା ଆଶାଥାଏ ଅଥବା ଯେବ୍ୟକ୍ତି ଗତଦିନେ କିଛି ଉପକାର କରିଥାଏ, ତାହାକୁହିଁ ଅତିଥି ସତ୍କାର କରାଯାଏ । ଏହି ନିୟମାନୁସାରେ ଅନେକ ସମୟରେ ଧନୀ ଏବଂ କ୍ଷମତାଶାଳୀ ଆଗନ୍ତୁକ ମାନଙ୍କର ସତ୍କାର କରା ଯାଇଥାଏ । ପୁଣି ଅନେକେ ମଧ୍ୟ ଅସମ୍ପର୍କ ଅପରିଚିତ ଗୃହସ୍ଥଙ୍କ ଠାରୁ ଆତିଥ୍ୟ ଗ୍ରହଣ କରିବାକୁ ସଙ୍କୁଚିତ ହୋଇଥାନ୍ତି; ଯେହେତୁ ଏମାନେ ଭାବି ଥାନ୍ତି ଯେ ଏମାନେ କେବେ ଉକ୍ତ ଗୃହସ୍ଥଙ୍କୁ ଅତିଥି ରୂପେ ଗ୍ରହଣ କରି ନାହାନ୍ତି, ବା ଗ୍ରହଣ କରିବା ସମ୍ଭାବନା ନାହିଁ, ସୁତରାଂ ଏମାନେ ଆତିଥ୍ୟ ପାଇବାକୁ ଅର୍ହ ନୁହନ୍ତି । ସମୟେ ସମୟେ କେହି କେହି କହି ଥାନ୍ତିଯେ ଆପଣ କେବେ ହେଲେ ଆମ୍ଭଗୃହକୁ ଆସିନାହାନ୍ତି, ଆମ୍ଭର ଆତିଥ୍ୟ ଗ୍ରହଣ କରି ନାହାନ୍ତି, ମୁଁ କେବେ ଆପଣଙ୍କର କିଛି ସତ୍କାର କରି ପାରିନାହିଁ, ସୁତରାଂ ମୁଁ ଆପଣଙ୍କର ଏହି ଆତିଥ୍ୟର ପାତ୍ରନୁହେ । ଏହିପରି ମନୁଷ୍ୟ ମାନେ କର୍ତ୍ତବ୍ୟ ଜ୍ଞାନ ବିହୀନ ହୋଇ କାର୍ଯ୍ୟ କରି ଥାନ୍ତି, ମନୁଷ୍ୟତା ହରାଇ ଦେଇ ପଶୁବତ୍ ଆଚରଣ କରି ଥାନ୍ତି, ଯଥା, "ମନୁଷ୍ୟପ୍ରୀତି ଦିଆ ଦେଇ, ଜାଇଗୋରୁ ପ୍ରୀତି ଲେହା ଲେହି" ।

ହିନ୍ଦୁମାନଙ୍କର ଜାତି ପ୍ରଭେଦ ବିଚାର ଯେପରି ଭାରତର ସକଳ ପ୍ରକାର ଉନ୍ନତି ମାର୍ଗରେ କଣ୍ଟକ ସ୍ୱରୂପ ବିଦ୍ୟମାନ, ସେହିପରି ଗୃହସ୍ଥ ମାନଙ୍କର ଆତିଥ୍ୟର ମଧ୍ୟ ପ୍ରଧାନ

ଅନୁଗ୍ରହ । ଅନେକ ଗୃହସ୍ଥ ଅଗନ୍ତୁକ ବ୍ରାହ୍ମଣ ମାନଂକୁ ଅତିଥି ରୂପେ ଗ୍ରହଣ କରିଥାନ୍ତି ପୁଣି ଉଚ୍ଚ କୁଳ ଜାତ ବ୍ରାହ୍ମଣ ମାନଂକୁ ତାଙ୍କ ଅର୍ଥେ ଅତିଥି ସତ୍କାର କରିଥାନ୍ତି କିନ୍ତୁ ଶୂଦ୍ର ମାନଙ୍କର ସତ୍କାର କରନ୍ତି ନାହିଁ । ଜାତି ଭେଦରେ ଅତିଥି ସତ୍କାର ଭେଦ ବିଚାର କରାଯାଏ, ଗୃହାଗତ ଅତିଥିଙ୍କ ଜାତି ପଚରାଯାଏ । ଯଦି କେହି ଅତିଥି ଶୂଦ୍ର ଜାତୀୟ ହୋଇ ଥାନ୍ତି, ଯେତେ ଗୁଣବାନ ଓ ଧାର୍ମିକ ହେଉନ୍ତୁ ପଛେ ଯଥାବିଧି ଆଦର ଗୌରବ ପାଆନ୍ତି ନାହିଁ, ପୁଣି ଯଦି ସେ ଅସ୍ପୃଶ୍ୟ ଜାତୀୟ ହୋଇଥାନ୍ତି ତେବେ ତାହାଂକୁ ଦ୍ୱାର ପିଣ୍ଡା ଉପରେ ମଧ୍ୟ ଠିଆ ହେବାକୁ ଦିଆଯାଏ ନାହିଁ । ଆମ୍ଭମାନଂକ ମଧ୍ୟରେ ଅଯଥା ଜାତି ଭେଦ ଜ୍ଞାନ ଥିବା ଯାକ ଅତିଥି ସତ୍କାର ତଥା ଯଥାବିଧି ଗୃହାଶ୍ରମ ଧର୍ମ ମଧ୍ୟ ପାଳନ କରାଯାଇ ପାରିବ ନାହିଁ ।



# ଜାତି ବିଚାର

ଜାତି ଭେଦ ଅଛି, ଏହା ଉଠାଇ ଦେବାକୁ ଅନେକ ଲୋକ କହନ୍ତି । କିନ୍ତୁ ପ୍ରକୃତ ଦେଖା ଯାଉ ଅଛି ଯେ ଭାରତରେ ଆଉ ଜାତିଭେଦ ନାହିଁ, କ୍ରମଶଃ ଉଠିଗଲାଣି । ପୂର୍ବରେ କେ ପ୍ରକାର ଜାତିଭେଦ ଥିଲା, ଆଜି ଲୋକେ ଜାତିଭେଦ ହରାଇ ଦେଇ ଅନାର୍ଯ୍ୟ ହୋଇ ପଡ଼ିଅଛନ୍ତି । ପ୍ରକୃତ ବ୍ରାହ୍ମଣ ବା କ୍ଷତ୍ରିୟ ନାହାନ୍ତି, ସମସ୍ତେ ପ୍ରାୟ ବୈଶ୍ୟ ବା ଶୂଦ୍ର ହୋଇ ଗଲେଣି । ପୂର୍ବ ବାସନା ଭିତ୍ତି ଉପରେ ବର୍ଣ୍ଣ—ସୌଧ ପ୍ରତିଷ୍ଠିତ ହୋଇ ଥିଲା । ଏହି ପୂର୍ବ ବାସନା ବଳରେ ବ୍ରାହ୍ମଣ ସନ୍ତାନ ମାନେ ସହଜରେ ବିଦ୍ୟାଶିକ୍ଷା କରି ବ୍ରହ୍ମ ଚିନ୍ତନ କରି ପାରୁଥିଲେ । କିନ୍ତୁ ଆଜି କାଲିର ବ୍ରାହ୍ମଣ ଓ ବାଉରି ସନ୍ତାନ ମଧ୍ୟରେ କିଛିମାତ୍ର ପ୍ରଭେଦ ନାହିଁ । ଅନେକ ପୁରୁଷ ହେଲା ବ୍ରାହ୍ମଣମାନେ ବିଦ୍ୟାଧ୍ୟୟନ ଓ ବ୍ରହ୍ମଚିନ୍ତନ ପରିତ୍ୟାଗ କରି ବିଷୟାସକ୍ତ ହୋଇ ପଡ଼ିବାରୁ ଆଜି ବ୍ରାହ୍ମଣ ସନ୍ତାନ ମାନଙ୍କର ଆଉ ପୂର୍ବ ବାସନା କିଛିନାହିଁ ।

ଗୁଣ ଓ କର୍ମ ଯୋଗେ ହିନ୍ଦୁମାନେ ଚତୁର୍ବିଧ ବର୍ଣ୍ଣରେ ବିଭକ୍ତ ହେଉଥିଲେ । କର୍ମ କାଣ୍ଡ ସୁଶୃଙ୍ଖଳ ରୂପେ ନିର୍ବାହ କରିବା ନିମନ୍ତେ ଲୋକେ ଚାରି ଭାଗରେ ବିଭକ୍ତ ହୋଇଥିଲେ । ବଣିକ ସନ୍ତାନ ଯେଉଁରୂପେ ଧନ ସଞ୍ଚୟ ଓ ତାହାର ବୃଦ୍ଧି କରି ଜାଣେ, ସ୍ୱର୍ଣ୍ଣକାର ସନ୍ତାନ ଯେଉଁରୂପେ ସହଜରେ ସୁନା ରୂପାରେ କାମ କରିପାରେ, କ୍ଷତ୍ରିୟ ସନ୍ତାନ ଶସ୍ତ୍ର ବିଦ୍ୟାରେ ନିପୁଣ ହୁଏ ଏବଂ ବ୍ରାହ୍ମଣ ସନ୍ତାନ ଶାସ୍ତ୍ର ଶିକ୍ଷାରେ ପାରଦର୍ଶିତା ଲାଭ କରେ । ପୁରୁଷାନୁକ୍ରମେ ପାରମ୍ପର୍ଯ୍ୟାନୁଯାୟୀ ଯେଉଁ ଘରେ ଯେଉଁ ଶିକ୍ଷା ବା ବ୍ୟବସାୟ କରି ଯାଉଥାଏ ସେହି

ଘର ସନ୍ତାନମାନେ ସହଜରେ ସେହି ଶିକ୍ଷା ଓ ସେହି କର୍ମ କରି ପାରିଥାନ୍ତି । ଯେଉଁ ବୃତ୍ତିର ଲୋକ ସେହି ବୃତ୍ତି ସହଜରେ ଶିକ୍ଷା କରିପାରେ । ବୃତ୍ତି ଭେଦରେ ଜାତିର ପ୍ରଭେଦ ଘଟିଥାଏ । ବୃତ୍ତି ପ୍ରଭେଦରେ ବାସନା ପ୍ରଭେଦ ଘଟିଥାଏ । ପୂର୍ବ ବାସନାନୁସାରେ ଲୋକେ ସତ୍‌କର୍ମ ବା ଅସତ୍‌କର୍ମରେ ସ୍ୱତଃପ୍ରବୃତ୍ତ ହୁଅନ୍ତି । ପୁଣି ସଙ୍ଗ ଓ ଶିକ୍ଷାର ଅନୁକୂଲ୍ୟରେ ଉକ୍ତ ଚିକୀର୍ଷା ପରିବର୍ଦ୍ଧିତ ହୁଏ ଏବଂ ପ୍ରାତିକୂଲ୍ୟରେ ହ୍ରାସପ୍ରାପ୍ତ ବା ଲୁକ୍କାୟିତ ରହେ । ସୁତରାଂ ସାଧାରଣତଃ ଦେଖାଯାଏ ଯେ ଉଚ୍ଚ ଜାତିର ଲୋକେ ଉଚ୍ଚଭାବାପନ୍ନ ଏବଂ ନୀଚ ଜାତିର ଲୋକେ ନୀଚ ପ୍ରକୃତ ବିଶିଷ୍ଟ । ପୁଣି ଏକ ଜାତିର ଲୋକ ସହଜରେ ଅନ୍ୟ ଜାତିରେ ପରିଣତ ହୋଇ ପାରେନାହିଁ । ବିଶ୍ୱାମିତ୍ର କ୍ଷତ୍ରିୟ ଥିବା ହେତୁ ବ୍ରହ୍ମର୍ଷି ହେବା ସକାଶେ ତାହାଙ୍କୁ କେତେ କଠୋର ତପସ୍ୟା କରିବାକୁ ପଡ଼ିଥିଲା । ଏକଜାତିର ଲୋକେ ଅନ୍ୟ ଜାତିରେ ମିଶି ପାରନ୍ତି । କିନ୍ତୁ ଏଥିସକାଶେ ପୁରୁଷାନୁକ୍ରମେ ପାଇଥିବା ପୂର୍ବ ବାସନା ନଷ୍ଟକରି ଅନେକ କାଳ ପର୍ଯ୍ୟନ୍ତ ଭିନ୍ନ ଶିକ୍ଷା ଓ ଭିନ୍ନ ସଙ୍ଗ କରିବାକୁ ହୁଏ, ଜନ୍ମ ଜନ୍ମାନ୍ତର ସାଧନା ବା କଠୋର ତପସ୍ୟା କରିବାକୁ ହୁଏ । ପୁଣି ଉଚ୍ଚ ଜାତିରୁ ନୀଚ ଜାତିକି ଅବନତ ହେବା ସହଜ ସାଧ୍ୟ । ଯେତେବେଳେ ଜନ୍ମ ଜନ୍ମାନ୍ତରୀଣ ଅଶିକ୍ଷା, କୁସଙ୍ଗ ଓ ବିପରୀତ ବାସନା ପୁରୁଷାନୁକ୍ରମେ ଚାଲି ଆସିଲାଣି, ତେବେ ବ୍ରାହ୍ମଣ ବା କ୍ଷତ୍ରିୟ ମାନଙ୍କର ଆଉ ଜନ୍ମ ଗୌରବ କେଉଁଥିରେ ଅଛି ?

ଆଜ ବ୍ରାହ୍ମଣ ମାନଙ୍କର ପୂର୍ବ ବାସନାର ସତ୍ତା ନାହିଁ । ବ୍ରାହ୍ମଣ ଓ ବାଉରି ସନ୍ତାନ ମଧ୍ୟରେ ବେଶି ପ୍ରଭେଦ ଦେଖା ଯାଏନାହିଁ । ସନ୍ଧ୍ୟା ନାମକ ବ୍ରହ୍ମୋପାସନା ବ୍ରାହ୍ମଣମାନଙ୍କର ପ୍ରଧାନ ନିତ୍ୟକର୍ମ ଥିଲା । ଶ୍ରୁତି ଶାସ୍ତ୍ର ଅଧ୍ୟୟନ ଏମାନଙ୍କର ପ୍ରଧାନ ତପସ୍ୟା ଥିଲା । ଆଜ ଅନେକ ବ୍ରାହ୍ମଣ ପୁରୁଷାନୁକ୍ରମେ ନିରକ୍ଷର "ଗଣାଣଦାଣ" ହୋଇ ପଡ଼ିଲେଣି, ବେଦ ବେଦାନ୍ତ ଚର୍ଚ୍ଚା କରିବା ଦୂରେଥାଉ ଓଁକାର ଶବ୍ଦ ଉଚ୍ଚାରଣ କରିବାକୁ ଏକାନ୍ତ ଅପାରଗ । ଗୃହ ବାଡି ପରଶିବା, ଯଥା ନଅର ଦ୍ୱାର, ଦେଉଳଅଧ ପୂଜାରୀ ବା ଚତୁର୍ଦ୍ଧରିସାନ୍ତ, ସାରୁ ଆଳୁ ଖୋଳ ବିକ୍ରୟ କରିବା, ପୁରସ୍କୃତ ଦକ୍ଷିଣା ଗୃହିଲ ସକାଶେ କଳହ କରିବା, ନତୁବା ପାଣ୍ଡିତ୍ୟ ଓସ୍ୱାଧୀନତା ବିକ୍ରୟ କରି ଶ୍ୱବୃତ୍ତି ଅବଲମ୍ବନ କରିବା, ଯଥା ସମ୍ରାଟ୍ ହେଲେହେଁ ସର୍କାର ଗୃହିର କରିବା, ନତୁବା ଶସ୍ତ୍ରମୁକ୍ତର ଖୋସାମଦଆ ଙ୍କର- ପଦବୀ କୁଣ୍ଡଳ ଲୋଲାୟିତ ପ୍ରତିଷ୍ଠିତଙ୍କ ପରିଷଦ ବୃନ୍ଦରେ ପରିଣତ ହେବା, ଏହାହିଁ ଆଜ ବ୍ରାହ୍ମଣ ମାନଙ୍କର ତପସ୍ୟା । ଅହୋରୂପ ମହୋଧ୍ୱନ, କ୍ଷତ୍ରିୟମାନେ ତଦନୁରୂପ । ଅନ୍ତଃପୁରବର୍ତ୍ତୀଠାରୁ ବୈଠକ ପର୍ଯ୍ୟନ୍ତ ଏମାନଙ୍କର ଦିଗ୍‌ବିଜୟ, ସ୍ତ୍ରୈଣତାହିଁ ଏମାନଙ୍କର ଶୂରତା ଏବଂ ବିଳାସିତାହିଁ ରାଜନୀତି ।

ଏହିପରି ଦେଖିଲେ ଭାରତରେ ପ୍ରକୃତ ବ୍ରାହ୍ମଣ ବା କ୍ଷତ୍ରିୟ ଆଉ ନାହାନ୍ତି କହିଲେ ଚଳେ । ସମସ୍ତେ ଜାତି ହରାଇ ବର୍ଣ୍ଣସଙ୍କର ହେଲେଣି, ଧର୍ମନଷ୍ଟ ହୋଇଅଛି,

ଜ୍ଜନ୍ମ ସଂସାରରେ ଆଉ କିଛି ଫଳ ନାହିଁ । ଅତଏବ ବର୍ତ୍ତମାନ ଜାତି ଉଠି ଯାଇଅଛି, ଆଉ ତାହାକୁ ଉଠାଇ ଦେବାକୁ ନାହିଁ । ଏତେବେଳେ ଆମ୍ଭମାନଙ୍କର କର୍ତ୍ତବ୍ୟ ଏହି ଯେ ନଷ୍ଟ ଜାତିର ପୁନଃ ସୃଷ୍ଟି କରିବାକୁ ହେବ, ଆର୍ଯ୍ୟସମାଜ ନିୟମାନୁସାରେ ନୂତନରେ ଜାତି ଗଠନ କରିବାକୁ ହେବ । ସେହି ଗୁଣ କର୍ମ ବିଭାଗରେ ଜାତି ଗଢ଼ିବାକୁ ହେବ । ଏହି ପବିତ୍ର କାର୍ଯ୍ୟରେ ଯେଉଁମାନେ ଯୋଗ ନଦେବେ ସେମାନେ ଈଶ୍ୱର ଦ୍ରୋହୀ ।

## "ପ୍ରାଚୀନ ପ୍ରାଚ୍ୟ ସଭ୍ୟତାର ଆଧୁନିକ ବିକାର"

ଭାରତୀୟ ସ୍ତ୍ରୀମାନେ ପୁରୁଷ ମାନଙ୍କ ସମକକ୍ଷ ଥିଲେ । ପୁରୁଷ ଓ ସ୍ତ୍ରୀଙ୍କ କାର୍ଯ୍ୟ କ୍ଷେତ୍ର ବିଭିନ୍ନ ଥିଲେହେଁ ଉଭୟେ ମାନରେ, ଗୌରବରେ ଓ ପଦବୀରେ ସମାନ । ବିଦ୍ୟା-ଶିକ୍ଷାରେ ପୁରୁଷ ଓ ସ୍ତ୍ରୀ ଉଭୟର ଚର୍ଚ୍ଚାଥିଲା, ଏବଂ ପାରମାର୍ଥିକ କାର୍ଯ୍ୟରେ ପରସ୍ପର ସାହାଯ୍ୟ ଅପରିହାର୍ଯ୍ୟ ଥିଲା । ପ୍ରାଚୀନ ଦାମ୍ପତ୍ୟରେ ପ୍ରଭୁ ଓ ଦାସ ଭାବ ନିହିତ ନଥିଲା । ପତି ପତ୍ନୀ ଐହିକ ଓ ପାରମାର୍ଥିକ ସକଳ କାର୍ଯ୍ୟରେ ପରସ୍ପର ଅଭାବ ପୂରଣକାରୀ ସହାୟ ଥିଲେ । ଦୁଃଖର କଥା, ଆଧୁନିକ କୁପ୍ରଥା ଉକ୍ତ ସନାତନ ବିଧିଗୁଡ଼ିକୁ କଦାକାର ନିଷେଧରେ ପରିଣତ କରିଅଛି । ପତି ପତ୍ନୀର ପବିତ୍ର ସମଭାବ ବିବାହ କାଳରେ ସ୍ପଷ୍ଟ ପରିଲକ୍ଷିତ ହୁଏ—ଏକାସନୋପରି ଉପବିଷ୍ଟହେବା, ଏକକାଳୀନ ଭୋଜନ, କ୍ରୀଡ଼ା ଓ ଶୟନ ଏବଂ କର୍ମରେ ଧର୍ମରେ ପରସ୍ପର ପରାମର୍ଶ ପ୍ରଦାନ । ଆଜକାଲି ପୁରୁଷ ଓ ସ୍ତ୍ରୀ ମଧ୍ୟରେ ପ୍ରଭୁତ୍ୱ ଓ ଦାସ୍ୟ ସ୍ପଷ୍ଟ ପ୍ରଦର୍ଶିତ ହୁଏ । ପତି ଆଗେ ପତ୍ନୀ ମୁଖ ଟେକି କଥା କହି ନପାରେ । ସ୍ୱାମୀ ସହିତ ସ୍ତ୍ରୀ ବସି ଭୋଜନ କରନ୍ତିନାହିଁ । ସ୍ତ୍ରୀ ମାନଙ୍କୁ ଆସନରେ ବସିବାକୁ ହୁଏନାହିଁ । ସ୍ୱାମୀଙ୍କ ଭୋଜନ ଶେଷରେ ସ୍ତ୍ରୀମାନଙ୍କୁ ଉଚ୍ଛିଷ୍ଟ ଖାଇବାକୁ ହୁଏ । ସ୍ତ୍ରୀ ଯଦି ସ୍ୱାମୀଆଗେ ବସି ହସି ରସି କଥା କହିବେ ତାହାହେଲେ ସେ ସ୍ତ୍ରୀ ସ୍ତ୍ରୀସମାଜରେ ଲଜ୍ଜାହୀନା ଓ ଅଶିଷ୍ଟା ବୋଲି ପରିଚିତା ହୁଏ । ବିଦ୍ୟାଶିକ୍ଷା ସ୍ତ୍ରୀର ଧର୍ମ ନୁହେ, କେବଳ ତାହାକୁ ଆଜୀବନ ଦାସତ୍ୱ ସ୍ୱୀକାର କରିବାକୁ ହୁଏ । ସ୍ତ୍ରୀମାନେ ଅନ୍ତରରୁ ଭକ୍ତି ଶୂନ୍ୟ ହେଲେହେଁ ନିଃସାର ବାହ୍ୟାଡମ୍ବରରେ ପତି ଭକ୍ତିର ପରାକାଷ୍ଠା ଦେଖାଇ ଥାନ୍ତି । ପତି ପତ୍ନୀର ପ୍ରେମ ପ୍ରଯୁକ୍ତ ସମ୍ଭୂତ ବାଳକ ବାଳିକାଙ୍କ ଅଜ୍ଞାନାବସ୍ଥାରେ ବିବାହକାଳୀନ ପାଠ ଉଚ୍ଚାରଣ ଅଭିନୟ ମାତ୍ର ହୋଇଥାଏ । "କଞ୍ଚୁକ ବସ୍ତ୍ର" ସ୍ତ୍ରୀ ମାନଙ୍କ ପରିଧାନର ପ୍ରଧାନାଂଶ ଥିଲା, ଯେହେତୁ ଅଧୋଭାଗସ୍ଥ ବସ୍ତ୍ର ଉପର ଭାଗରେ ଧାରଣ କରିବା ଶୋଭନୀୟ ନୁହେ । ବର୍ତ୍ତମାନ କଞ୍ଚୁକ ବସ୍ତ୍ର ପରିବର୍ତ୍ତେ ପିନ୍ଧାଯିବା ବସ୍ତ୍ର କେବଳ ମସ୍ତକୋପରି ଅବଗୁଣ୍ଠନରୂପେ ବ୍ୟବହୃତ ହୁଏ । ପିନ୍ଧିବା ବସ୍ତ୍ରକୁ ଅବଗୁଣ୍ଠନ ମଧ୍ୟ କରିବା ହେତୁ ଶରୀରର କିମ୍ଭାଗ ଅନାବୃତ ଓ ଉପରଭାଗ ବିଶେଷାବୃତ ଦେଖାଯାଏ । କଞ୍ଚୁକ ବସ୍ତ୍ର ପ୍ରୟୋଜନାନୁସାରେ କ୍ଷୁଦ୍ର । ଏହା କାଳ କ୍ରମେ

କେବଳ କବରୀ ବୋଲାଗଲା । କ୍ରମଶଃ ପୃଥକ କ୍ଷୁଦ୍ର ବସ୍ତ୍ରରେ ମସ୍ତକାବଗୁଣ୍ଠନ ପ୍ରଥା ଉଦ୍ଭବ ହୋଇ ବାଳିକା ମାନଙ୍କ ପରଧେୟ କ୍ଷୁଦ୍ର ବସ୍ତ୍ର କବରୀ ନାମରେ ଅଭିହିତ ହେଲା । ବ୍ୟବହାର ଭେଦାନୁସାରେ ଶବ୍ଦର ଅର୍ଥ ଭେଦ ହେଲେହେଁ କବରୀ ଶବ୍ଦଟି ଆମ୍ଭମାନଙ୍କର ପୁରାତନ ପ୍ରଥାର ସ୍ମୃତିଚିହ୍ନ ସ୍ୱରୂପ ରହିଅଛି ।

ପୁରୁଷ ଗୌରବାନ୍ୱିତ, ସ୍ତ୍ରୀ ସର୍ବଦା ହେୟ—ଏହି ଭାବ ବାଳକ ବାଳିକାଙ୍କ ଠାରେ ସ୍ପଷ୍ଟ ଦେଖାଯାଏ । ପୁତ୍ର ଜନ୍ମରେ ପିତା ମାତା ପ୍ରଫୁଲ୍ଲ ଚିତ୍ତ ଏବଂ ଆନନ୍ଦୋତ୍ସବର ଭୂମୁଳ ଆୟୋଜନରେ ବ୍ୟସ୍ତ, କିନ୍ତୁ ଦୁହିତା ଜନ୍ମରେ ସମସ୍ତ ଗୃହସ୍ଥ ବିଷାଦ ଯୁକ୍ତ । ଲାଳନା ପାଳନାରେ ସୁଦ୍ଧା ପୁତ୍ର ଯଥୋଚିତ ଶ୍ରଦ୍ଧାସ୍ପଦ ଏବଂ କନ୍ୟା ଘୋର ଘୃଣାର କାରଣ ।

---

## ଅଳଙ୍କାର

ସୌନ୍ଦର୍ଯ୍ୟ ସକାଶେ ଅଳଙ୍କାରର ସୃଷ୍ଟି ହୋଇ ଅଛି ! ପୁଷ୍ପ ଜନିତ ସ୍ୱାଭାବିକ ସୌନ୍ଦର୍ଯ୍ୟ ସମ୍ପାଦନ କରିଥାଏ । ଅଳଙ୍କାର ଗୁଡ଼ିକ କୃତ୍ରିମ ପୁଷ୍ପର ନ୍ୟାୟ ବ୍ୟବହୃତ ହୋଇ ଥାଏ । ସ୍ୱର୍ଣ୍ଣ ରୌପ୍ୟ ଅଳଙ୍କାରରେ ସୁଗନ୍ଧ ନଥିଲେ ହେଁ ତାହା ପୁଷ୍ପ ଅପେକ୍ଷା ଅଧିକ କାଳ ସ୍ଥାୟୀଅଟେ । କୌଣସି ଖଣ୍ଡ ମତ ସମ୍ପନ୍ନତା, ସୁବର୍ଣ୍ଣ ଓ ଜ୍ୟୋତି ପ୍ରଭୃତି କତିପୟ ଉପାଦାନରେ ତାହାର ସୁଷମା ସଂଗଠିତ ହୋଇ ଥାଏ । ସୁନା, ରୁପା ପ୍ରଭୃତି କେତେକ ଧାତୁ ଏବଂ ମାଣିକ୍ୟ ହୀରକାଦି ପ୍ରସ୍ତର ଜନିତ, ତାହାର ସୁବର୍ଣ୍ଣ ଓ କାନ୍ତିହେତୁ ଅଳଙ୍କାର ରୂପେ ବ୍ୟବହୃତ ହୋଇ ଥାଏ । କିନ୍ତୁ ଏହିଧାତୁ ଓ ପ୍ରସ୍ତର ଗୁଡ଼ିକ ଦୁଷ୍ପ୍ରାପ୍ୟ ହେବା ଯୋଗୁଁ ଅତ୍ୟନ୍ତ ମୂଲ୍ୟବାନ ହୋଇଥାଏ । ଏହେତୁ ଲୋକେ ଆପଣାର ସମ୍ପତ୍ତିକ ଅଳଙ୍କାର ରୂପେ ସଂଗ୍ରହ କରି ରଖନ୍ତି । ଅନେକେ ଆପଣାର ଅଧିକାଂଶ ସମ୍ପତ୍ତିକୁ ଅଳଙ୍କାରରୂପେ ରଖିଥାନ୍ତି । ଅତଏବ କାଳକ୍ରମେ ଆଜ ଅଳଙ୍କାର ଦ୍ୱାରା ସୌନ୍ଦର୍ଯ୍ୟ ସାଧନ ସଙ୍ଗେ ୨ ଅଳଙ୍କାର ରୂପେ ସମ୍ପତ୍ତି ମଧ୍ୟ ରଖାଯାଉ ଅଛି, କିନ୍ତୁ ବାସ୍ତବରେ ସମ୍ପତ୍ତିର ଉଦ୍ଦେଶ୍ୟ ବା ତହିଁର ଆଧାର ଅଳଙ୍କାର ନୁହେ, କେବଳ ସୌନ୍ଦର୍ଯ୍ୟ ସକାଶେ ଅଳଙ୍କାରର ସୃଷ୍ଟି ହୋଇଅଛି ।

ଧନସମ୍ପତ୍ତି ଅପକାରକ ଅଟେ ଯେହେତୁ ଏହାକୁ ଚୋରମାନେ ଅପହରଣ କରନ୍ତି, ରାଜା ଦଣ୍ଡିଅନ୍ତି, ଜ୍ଞାତିମାନେ ଭାଗ ନେଇଯାଆନ୍ତି ପୁଣି ଏହାର କ୍ଷୟ ବୃଦ୍ଧି ଥାଏ । ଅତଏବ ଏହାକୁ ନିଜ ପଦରେ ରଖିବାକୁ ହୁଏ । ଏହିକାରଣରୁ ଋଷିମାନେ କହିଯାଇ ଅଛନ୍ତି, ତାକୁ ଗୋପନୀୟ ରଖିବାକୁହେବ । ଯେଉଁ ସ୍ଥାନରେ ଧନସମ୍ପତ୍ତି ରଖାଯାଏ ତହିଁରେ ପ୍ରହରୀମାନେ ପହରା ଦେଇଥାନ୍ତି ଏବଂ ମନୋଯୋଗ ପୂର୍ବକ ଜଗି ରହିଥାନ୍ତି । ଧନ ରକ୍ଷକଙ୍କୁ ସେଥି ସକାଶେ ସର୍ବଦା ଚିନ୍ତିତ ଓ ବ୍ୟସ୍ତ ରହିବାକୁ ହୁଏ । ଧନାଗାରରେ ଚୋରମାନେ ପ୍ରବେଶକରି ଲୁଣ୍ଠନ କରନ୍ତି, ପ୍ରହରୀ ମାନଙ୍କୁ ମଧ୍ୟ ପ୍ରାଣରେ ନଷ୍ଟକରି ଥାନ୍ତି । ତଦ୍ରୂପ ଅଳଙ୍କାର ସ୍ୱରୂପ ସମ୍ପତ୍ତିର ଆଶାର କେବଳ ଶରୀର ହୋଇଥାଏ । ଏହି ଆପଣାର ଶରୀର ରୂପ ଧନାଗାର ( Treasury )

କୁ ସାରା ଦିନରାତି ନିଦ୍ରେ ଜଗିବାକୁ ହୁଏ । ପୁଣି ଅଳଂକାର ଧାରମାନଙ୍କୁ ସର୍ବଦା ଚିନ୍ତିତ ଓ ଭୀତ ରହିବାକୁ ପଡେ । ଧନାଗାର ଉପରେ ଯେତେ ଆକ୍ରମଣର ସମ୍ଭାବନା, ଅଳଙ୍କାର ବିଭୂଷିତ ଶରୀର ମଧ୍ୟ ତଦ୍ରୂପ ଆକ୍ରମଣର ସ୍ଥାନଅଟେ । ଅତଏବ ଅଳଂକାର ରୂପ ସମ୍ପତ୍ତି ରଖିବା କଦାପି ଶ୍ରେୟସ୍କର ନୁହେଁ । କେହି ୨ କହନ୍ତି କି ଅଳଂକାର ଧାରଣ କଲେ ସିନା ଦୋଷ ହେବ, କିନ୍ତୁ ମୂଲ୍ୟବାନ ଅଳଂକାର ତିଆର କରାଯାଇ ଗୃହାଭ୍ୟନ୍ତରରେ ନିରାପଦରେ ରଖାଯାଇପାରେ । ଯଦି ଅଳଂକାର ଧାରଣ କରିବାକୁ ହେବନାହିଁ ତେବେ ସୁନାରି ମାନଙ୍କୁ ମଜୁରି ଦେଇ ବୃଥା ଧନବ୍ୟୟ କରିବା କି ଆବଶ୍ୟକ ? । ଅଳଂକାର ଧାରଣ କରିବା ଲୋକେ ସର୍ବଦା ଭୀତ ପୁଣି ଇଚ୍ଛାନୁସାରେ ଏକାକୀ ବିଚରଣ କରି ପାରନ୍ତି ନାହିଁ ପୁଣି ଅନେକ ସମୟରେ ନିଦ୍ରା ଦେବୀଙ୍କ ବିଶ୍ରାମଦାୟିନୀ ସୁକୋମଳ ଶଯ୍ୟାରୁ ବଞ୍ଚିତ ରହନ୍ତି । ବୋଧହୁଏ ଏହି ଅଳଂକାର ହେତୁ ମଧ୍ୟ ସ୍ତ୍ରୀମାନେ ଅବଳା ହୋଇ ପଡି ଅଛନ୍ତି । ସେମାନେ ପୁରୁଷ ସାହାଯ୍ୟ ବ୍ୟତିରେକେ ଏକାକିନୀ ହୋଇ ଯାତାୟାତ କରି ପାରନ୍ତି ନାହିଁ । ସ୍ତ୍ରୀ ମାନେସୌନ୍ଦର୍ଯ୍ୟ ଲାଳସାରେ ମୂଲ୍ୟବାନ ଅଳଂକାର ଧାରଣ କରି ମାନସିକ ସୁଖ ସ୍ୱଚ୍ଛନ୍ଦ୍ୟରୁ ବଞ୍ଚିତ ରହନ୍ତି ।

ଅତଏବ ଅଳଂକାର ସମ୍ବନ୍ଧେ ବକ୍ତବ୍ୟ ଏହି ଯେ, ଯେତେ ଅଳ୍ପଧନରେ ହୋଇ ପାରେ ସେତେ ଅଳ୍ପଧନରେ ଅଳଂକାର ତିଆର କରିବା ଉଚିତ । ସୁନା ପରିବର୍ତ୍ତେ ଗିଲ୍ଟି ସୁନା ବ୍ୟବହାର କରାଯାଇ ପାରେ । ପୁଣି ଏକତୋଳା ଓଜନରେ ସୁନ୍ଦର ହେବାବେଳେ ଦଶତୋଳା ଓଜନର ବଳୟ ଧାରଣ କରିବା ଅବିଜ୍ଞର କାର୍ଯ୍ୟ ଅଟେ । ସ୍ୱାଭାବିକ ସୌନ୍ଦର୍ଯ୍ୟହିଁ ପ୍ରକୃତ ସୌନ୍ଦର୍ଯ୍ୟ ଏବଂ ମନୋହର ଅଟେ । କୃତ୍ରିମ ସୌନ୍ଦର୍ଯ୍ୟ କ୍ଷଣସ୍ଥାୟୀ ଏବଂ କ୍ଷତି କାରକ ଅଟେ । ଅଳଂକାର ଗଢ଼ଣରେ ସୌନ୍ଦର୍ଯ୍ୟ ଥାଏ, କିନ୍ତୁ ଏହାର ମୂଲ୍ୟାଧିକ୍ୟରେ ଶୋଭାର ବୃଦ୍ଧି ହୁଏ ନାହିଁ । ଏକ ଟଙ୍କା ମୂଲ୍ୟର ଗିଲ୍ଟି ସୁନା ମୁଦି ବା ଟ ୫ ୧ ଖରଚରେ କୃତ୍ରିମ ସୁନାର ଖଡୁ, ବଳୟ କରନ୍ତୁ, ଦୁଇ ବା ତିନବର୍ଷ ପର୍ଯ୍ୟନ୍ତ ମାତ୍ର ନିଜର କାନ୍ତି ଓ ସୌନ୍ଦର୍ଯ୍ୟ ରକ୍ଷା କରିପାରେ । ଏହିପରି କରି ୨ ବା ୩ ବର୍ଷରେ ଥରେ ଟ ୭ ୧ ବ୍ୟୟ କଲେ ହେଁ ୧୦୦ ଟଙ୍କାର ହୀରକ ଅଙ୍ଗୁରୀୟ ବା ଟ ୩୦୦ ଙ୍କାର ସ୍ୱର୍ଣ୍ଣ ବଳୟ ଧାରଣ ପ୍ରଯୁକ୍ତ କ୍ଷତି ସମ୍ଭବ ହୋଇପାରେ ନାହିଁ । କାରଣ, ଉକ୍ତ ୪୦୦ ଙ୍କାର କୃଷି ବାଣିଜ୍ୟ ଓ ଶିଳ୍ପ ବ୍ୟବସାୟ ଦ୍ୱାରା ଯେଉଁ ଲାଭହେବ ତଦ୍ୱାରା ଅଳଂକାର ଜନିତ କ୍ଷତି ପୂରଣ ବାହାରେ ପ୍ରଚୁର ଧନ ଉଦ୍‌ବୃତ୍ତ ରହିବ । ଏହି ସ୍ୱଭ୍ୟନୁଯାୟୀ ଅଳଂକାର ଧାରଣକଲେ ନିରାପଦ ଓ ସୁଖଶାନ୍ତି ପୁଣି ସୌନ୍ଦର୍ଯ୍ୟ ସଙ୍ଗେ୨ ପ୍ରଚୁର ପରିମାଣରେ ଧନ ଲାଭ ହେବ । ଅତଏବ ଶିକ୍ଷିତ ଧନବାନ୍ ବ୍ୟକ୍ତି ମାନଙ୍କ ନିକଟରେ ଏହି ବିନୀତ ଅନୁରୋଧ ଯେ, ସେମାନେ ଏହିପରି ସଦାଦର୍ଶ ଦ୍ୱାରା ଅଳଂକାର ପ୍ରିୟ ଲୋକମାନଙ୍କୁ ଅଯଥା କ୍ଷତି ଓ ଆପଦରୁ ରକ୍ଷା କରିବାକୁ ଚେଷ୍ଟାକରନ୍ତୁ ।



# ଯୋଗ ଯାତ୍ରା

ଯୋଗଯାତ୍ରା ବୁଝିବେ ବୋଲି ଆଜକାଲି ଲୋକେ ନୂଆପାଞ୍ଜି ତଲାସ କରୁ ଅଛନ୍ତି । ବିବାହ ବ୍ରତ ଓ ଆଶୀର୍ବାଦ ଘର ଚଳାଇବା ପାଇଁ ନୂଆ ପାଞ୍ଜିରେ ଯୋଗ ବାହାରିବ ଏହି ଯୋଗ ଜାଣିବା ନିମିତ୍ତ ଲୋକେ ଉତ୍କଣ୍ଠିତ । କାହାର ପୁଅକୁ ଦେଖ ୨ ବାରବର୍ଷ ହୋଇଗଲା ଏପର୍ଯ୍ୟନ୍ତ ପଇତା ଖୁବ ପଡ଼ନାହିଁ । କଏ ବା ବୁଢା ବର ହୋଇ ଯାଉଅଛି । କାହାକୁ ବା କନ୍ୟା ଘଷି ନପାରେ। କାହାର କନ୍ୟାର ୧୦ ବର୍ଷ ବୟସ ହୋଇ ଗଲାଣି । ଯଦଚ କାଳେ କନ୍ୟାଟିଏ ବିବାହ ପୂର୍ବେ ରଜସ୍ୱଳା ହୋଇଯାଏ, ବ୍ରାହ୍ମଣ ସଂସାର, ଏକାବେଳେ କଥା ସରିଯିବ । ପୁଣି କାହାର କନ୍ୟା ରଜସ୍ୱଳା ହୋଇ ଘରେ ରହିଅଛି । ଝିଅ ଝିଅ ଘରେ ସାଇତି ରଖିବା ପଦାର୍ଥ ନୁହେ । ଯେତେ ଶୀଘ୍ର ଝିଅଟିକି ଶାଶୁଘରକୁ ପଠାଇ ଦେଇ ପାରିବେ ତେତେ ମଙ୍ଗଳ, ପୁଣି ତେଣେ ଶ୍ୱଶୁର ଘରେ ବାପା ମାଆ ଗୃହିଁ ରହି ଅଛନ୍ତି, ପୁଅ ବହୂଙ୍କୁ ଏକତ୍ର କରିଦେଲେ ପିତାମାତା ଙ୍କର ସନ୍ତାନ ପ୍ରତି ପବିତ୍ର କର୍ତ୍ତବ୍ୟ ପାଳିତ ହେବ ଏବଂ ସେମାନେ ଶୀଘ୍ର ନାତି ନାତୁଣୀ ଦେଖିଲେ ଏହି ଇହ ସଂସାରରୁ ତରିଯିବେ । ଅତଏବ ଗୃହସ୍ଥମାନେ ଯୋଗ ଜାଣିବା ପାଇଁ ଉଦ୍‌ବିଗ୍ନ । ପୁରୋହିତ ପାଞ୍ଜିରେ ଯଦି ଯୋଗ ନବାହାରେ ତେବେ ସକଳ ଯୋଗାଡ ହୋଇଥିଲେହେଁ ସବୁ ବୃଥା । କିନ୍ତୁ ଅନ୍ୟାନ୍ୟ କୌଣସି ସଂସ୍ଥାନ ନଥାଉ, କିଛି ଯୋଗାଡ ହୋଇ ନଥାଉ, ଯଦି ପାଞ୍ଜିରେ ଯୋଗ ବାହାରେ, ପୁତ୍ର ବା କନ୍ୟାକୁ ଉଦ୍ଦିଷ୍ଟାହ ସ୍ଥିରଥାଏ, ତେବେ ଅବଶ୍ୟ ବ୍ରତ ବା ବିବାହ ଚଳାଇ ଦେବାକୁ ହେବ । ହାତରେ ଧନ ନଥିଲେ ଜମି ବାଡ଼ି, କୋଠାଘର ସବୁ ବନ୍ଧକ ଦେଇ ଧନ ଅଣି ମହିତ ଭୁଲାଇବାକୁ ହେବ । ପୁତ୍ର, କନ୍ୟା ବୟଃପ୍ରାପ୍ତ ହେଲେ କି ନା, ଏହାତ ଦେଖିବା ଆଦୌ ଅବଶ୍ୟକ ନାହିଁ । ଲୁଅଟିମାନ ଯେତେ ଶ୍ରେଷ୍ଠ ହେଲେ ପିତା ମାତାଙ୍କ ବଞ୍ଚିତ୍ର ଖେଳଘରଟା ତେତେ ଆନନ୍ଦ ପ୍ରଦ । ଏହି ଯୋଗ ବଳରେ ବିଭା ବ୍ରତ କରି ଅନେକ ମଧ୍ୟବିତ୍ତ ଲୋକ ଶୋଚନୀୟ ଦାରିଦ୍ର୍ୟ ଭୋଗ କରନ୍ତି ।

ଦୁଇଗୋଟି ପଦାର୍ଥ ବା ବସ୍ତୁର ମିଳନକୁ ଯୋଗ କହନ୍ତି, ଗୃହସ୍ଥଙ୍କ ଗୃହରେ ଧନ ଜନ ସଂସ୍ଥ ଓ ସୁବିଧାର ମେଳ ହେଲେ କୌଣସି ହେତୁ କାର୍ଯ୍ୟ କରିବା ପାଇଁ ସୁଯୋଗ ସଂଘଟିତ ହୁଏ ବୋଲିବାକୁ ହେବ । କିନ୍ତୁ ହାତରେ ଧନ ନ ଥିବ, ଦୁର୍ଭିକ୍ଷ ଉପସ୍ଥିତ ଥିବ, ସାହାଯ୍ୟ ଯୋଗାଡ଼ କରିବାକୁ କେହି ନଥିବେ, ଦୁଃସମୟ ହୋଇ ଥିବ, ପୁଣି ପାତ୍ର ପାତ୍ରୀଙ୍କର ସମୟ ଏବଂ ଅବସ୍ଥାର ମେଳ ନ ଥିବ ଏହି ସକଳ ଦୁର୍ଯୋଗ ମୂର୍ତ୍ତିମାନ ରୂପେ ବିଦ୍ୟମାନ ଥିଲେହେଁ ପାଞ୍ଜିକାରଙ୍କର "ଶୂନ୍ୟରେ ଶୂନ୍ୟ ଯାଏ ମିଶି" ଏହି ଶୂନ୍ୟ ଯୋଗରେ ଲୋକେ ଉତ୍ତେଜିତ ହୋଇ ଅଗ୍ନିରେ ପତଙ୍ଗ ପଡ଼ିଲା ନ୍ୟାୟ ବିଭା ବ୍ରତରେମାତିଯାଆନ୍ତି ଏବଂପରିଣାମରେ ମନୋବେଦନା ଏବଂ ଦାରିଦ୍ର୍ୟ ଭୋଗ କରନ୍ତି । ଏହି ସମସ୍ତ ମାନଙ୍କରେ ପରିଣତଭୋଗୀ ପୁରୋହିତ ମାନଙ୍କର ପାଳ୍ୟତନ୍ତ୍ର । କନ୍ୟାଟି ଅଜୀବନ କୁମାରୀ ରହୁ, ପୁତ୍ର ଦୁର୍ବଳହେଉ, ରୁଗ୍ଣକାୟ ଏବଂ ଅଳ୍ପାୟୁ ହେଉ,ପାଞ୍ଜିକାରଙ୍କର ତଥା ପୁରୋହିତ ଙ୍କର କୌଣସି ଚିନ୍ତାନାହିଁ ।

ଯେ ଡାହାଣୀ ହୋଇ ଲାଗିପାରେ ସେ ଗୁଣିଆଁ ହୋଇ ଝାଡ଼ିପାରେ । ପୁରୋହିତ ବ୍ରାହ୍ମଣ ମାନେହିଁ ବିବାହ ବ୍ରତ କର୍ମକାଣ୍ଡର ସୃଷ୍ଟି କରିଅଛନ୍ତି । ସେମାନେ ଜ୍ୟୋତିଷିକ ରୂପେ ଯୋଗର ତାରିଖ ସ୍ଥିର କରୁଛନ୍ତି ପୁଣି ପୁରୋହିତ ରୂପେ ଚାଉଳ,ଲୁଗା,ପଇସା,ଭଣ୍ଡି ନେଉଛନ୍ତି । ଏମାନେ ଯଦି ଆପଣା ପଞ୍ଜିକାରୁ ଯୋଗଗୁଡ଼ା ଠିକ ବାହାର କରି ଦିଅନ୍ତେ ତେବେ ଅନେକ ବାଲ୍ୟବିବାହ, ଅପତ୍ୟସ୍ନେହ ଓ ବୃଥା ପରିଶ୍ରମ ରହିତ ହୋଇ ଯାଆନ୍ତା । କିନ୍ତୁ ଶୁଣୁଛି କିଏ ?

ଜ୍ୟୋତିଷିକ ଓ ପୁରୋହିତ ମାନେ ଶୁଣିବେ କି ? ଅବଶ୍ୟ ସ୍ୱାର୍ଥରେ ବିମୋହିତ ଥିବାବେଳେ ନ୍ୟାୟ ଓ ନୀତି ଦେଖାଯାଏ ନାହିଁ । ପାଠକ ଭାଇମାନେ, ମନେ ରଖିଥାଅ,ଅବଶ୍ୟ ସୁଦିନ ଆସିବ, ସ୍ୱାର୍ଥାନ୍ୱେଷୀର ଅଶେଷ କ୍ଷତି ହେବ ଏବଂ ସତ୍ୟର ଜୟ ହେବ ।

## ଆମ ଦେଶାଗ୍ରହ

ଅସ୍ମଦେଶରେ ଅନେକ ପ୍ରକାର ଆଗ୍ରହର ପ୍ରଚାର ଅଛି । ଆମ୍ବ ଲେମ୍ବୁ ପ୍ରଭୃତି ନାନାବିଧ ଫଳର ଆଗ୍ରହ ଅଛି । ଏସବୁ ଖାଦ୍ୟର ରୋଚକ ରୂପେ ବ୍ୟବହୃତ ହୁଏ । ଏଥିରେ ପେଟ ପୂରେ ନାହିଁ ; ଏହାକୁ କେବଳ ଖାଇ କେହିଲୋକ ବଞ୍ଚିପାରେ ନାହିଁ । ତଥାପି ଜନସମାଜରେ ଏହାର ଆଦର ବଢ଼ିଅଛି । ତରକାରି ଅଭାବରେ ମଧ୍ୟ ଏଥିରେ ଭାତ ଚଳିଯାଏ ଯେହେତୁ ଏହା ଅନ୍ନ ଓ ବ୍ୟଞ୍ଜନକୁ ରୋଚକତା ପ୍ରଦାନ କରେ । ସଙ୍ଗତିସମ୍ପନ୍ନ ଓ ଭୋଗବିଳାସୀ ଲୋକ ମାନଙ୍କର ଏହା ଏକ ଅତିରିକ୍ତ ଖାଦ୍ୟ ପଦାର୍ଥ । ସ୍ନାନାଦି ନିତ୍ୟ କର୍ମକୁ ମଧ୍ୟ ଆଗ୍ରହ କହନ୍ତି,ଶିଷ୍ଟାଗ୍ରହ ବ୍ୟବହାରକୁ ମଧ୍ୟ ଆଗ୍ରହ କହନ୍ତି,କୌଣସି ପ୍ରଚଳିତ ରୀତିକୁ ମଧ୍ୟ ଆଗ୍ରହ କୁହାଯାଏ । ଯଥା ଖାଦ୍ୟପାନ ରୀତି, ପରିଧାନ ରୀତି, ଦେଶଶିକ୍ଷାରୀତି, ଜନ୍ମାଦାଚି ରୀତି, ବେଶଭୂଷାରୀତି, ଧର୍ମକର୍ମରୀତି, ଅନ୍ତଃପୁର ବାସ ରୀତି, ଶିଶୁଶିକ୍ଷାରୀତି, ବିଭୂତି ପଦ୍ଧତି, ଶୁଦ୍ଧଶ୍ରାଦ୍ଧ ପଦ୍ଧତି, ଶୌଚାଶୌଚ ପଦ୍ଧତି, ନିତ୍ୟକର୍ମ ପଦ୍ଧତି ଇତ୍ୟାଦି ।

ଅମ୍ଳଆଗ୍ରହ ପ୍ରଭୃତି ଆଗ୍ରହ ଗୁଡ଼ିକ ଯେପରି ପଚିଯାଏ, ସଡ଼ିଯାଏ, ଶୁଖିଯାଏ କିମ୍ବା ଉଡ଼ି ଯାଏ ପୁଣି ଅମ୍ଳଦ୍ରବ୍ୟରେ ଯେପରି କେତେଗୁଡ଼ା ପୋକ ସଞ୍ଚିଯାଇ ପରିଣାମରେ ଅମ୍ଳଦ୍ରବ୍ୟରେ ପରିଣତହୁଏ, ଠିକ୍ ସେ ପ୍ରକାର ନିତ୍ୟାଗ୍ରହ ପ୍ରଭୃତି ଆଗ୍ରହରେ ମଧ୍ୟ ଅନେକ ବିକାର ଓ ବ୍ୟତିକ୍ରମ ଜନ୍ମିଥାଏ । ଗାଧୋଇବା ସଙ୍ଗେ ସଙ୍ଗେ ଖପନ୍ତି ତହିଁ ମଧ୍ୟ ଆଗ୍ରହରେ ପରିଣତ ହୁଏ, । ପ୍ରାଣାୟାମ ନାକକୁଆଁରେ ପରିଣତି ଲାଭକରେ । ତିଳକଛଟା ମୁଖଚନ୍ଦନରେ ପରିବର୍ତ୍ତିତ ହୁଏ । ମାଳ ଗୋଛା ଗୋଛା ନାମଗୋଟିଏ ନଥାଏ । ପୁଣି ଯଜ୍ଞୋପବୀତ ମନ୍ତ୍ର ନଜାଣି ଗୋଛା ୨ ପଇତା ପକାଇବା,ଶୌଚାଶୌଚ ବିଧି ନଜାଣି ମଠାଗାମୁଛା ବଦଳାଇବା,ଅକ୍ଷର ପର୍ଯ୍ୟନ୍ତ ନଜାଣି ସୁଦ୍ଧା ପୌରୋହିତ୍ୟ କରିବା, ବିଦ୍ୟା ନଜାଣି ବେଦ ବଖାଣିବା ଏ ସକଳ ଆଗ୍ରହ ଯେଉଁ ବ୍ରାହ୍ମଣମାନେ ବିଶେଷତଃ ଶାସନୀ ବ୍ରାହ୍ମଣମାନେ ଆପଣାର ଠେଙ୍ଗ ବଢ଼ାଉଥାନ୍ତି । ସଙ୍ଗତିସମ୍ପନ୍ନ ଓ ବିଳାସ ପ୍ରିୟ ଲୋକ ମାନଙ୍କର ଅମ୍ଳ ଆଗ୍ରହ ପ୍ରଭୃତି ଆଗ୍ରହ ଯେପରି ଅତିରିକ୍ତ ଖାଦ୍ୟ

ସ୍ୱାର୍ଥ ଏବଂ ଆହାରର ଆନୁଷଙ୍ଗିକ ଭୋଜନ ମଧ୍ୟ ତଦ୍ରୂପ ରକ୍ଷଣଶୀଳ ନୈଷ୍ଠିକବ୍ୟକ୍ତିମାନଙ୍କର ଏହି ନିତ୍ୟକର୍ମ ପ୍ରବୃତ୍ତି ଦେଶାଚାର ଗୁଡ଼ାକ ଅନ୍ତଃସାରଶୂନ୍ୟ ବାହ୍ୟାଡମ୍ବର ମାତ୍ର । ଖାଦ୍ୟପାନ ଶାସ୍ତ୍ରର ଅକ୍ଷରକୁ ଦେଖି ଲୋକେ ଖାଇବା ପାଇଁ ବସନ୍ତି କିନ୍ତୁ ବଞ୍ଚିବା ପାଇଁ ଖାଆନ୍ତି ନାହିଁ । ସଦାଚାର ପ୍ରଣୋଦିତ ହୋଇ ଯଜ୍ଞପୂତ ଭୋଜନ କଲେ ଧର୍ମକାର୍ଯ୍ୟ ହୁଏ, ଏଥିଦ୍ୱାରା ପୁଣି ଲୋକେ ସ୍ୱର୍ଗକୁ ଯାଆନ୍ତି । କୀଟାଣୁ ପ୍ରଭୃତି ଦୂଷିତ ଜଳକୁ ଏ ଆବୃତ କଳୁପଠାଣ ସ୍ପର୍ଶ କରି ଅଛି ବୋଲି ଡାକ୍ତର ଖାନାରେ ରାସାୟନିକ ପ୍ରକ୍ରିୟା ସିଦ୍ଧ ଜଳ ଗୃହୀତ ହୁଏନାହିଁ । ଶୂଦ୍ରର ଦୃଷ୍ଟି ପଡ଼ିଲେ ବ୍ରାହ୍ମଣର ଅନ୍ନ ଅଶୁଦ୍ଧ ହୋଇ ଯାଏ । ବ୍ରାହ୍ମଣ ବା ଶୂଦ୍ର କହିଲେ ଗୁଣକର୍ମ ରହିତ ହେଉଅଛି ଜନ୍ମବ୍ରାହ୍ମଣ ଓ ଜନ୍ମଶୂଦ୍ର ବୁଝାଏ । ଦୁରାଚାର ଲୋଭାସକ୍ତ ବ୍ରାହ୍ମଣର ଦୃଷ୍ଟିରେ ଯତନାହିଁ, କିନ୍ତୁ ସଦାଚାରୀ ଧାର୍ମିକ ଶୂଦ୍ରର ଦୃଷ୍ଟି ଦୋଷାବହ ହୁଏ । ମଇଳା ହେଉଅଛି ମଠାଖଣ୍ଡେ ପିନ୍ଧି ଭୋଜନ କରିବାକୁ ହୁଏ, କିନ୍ତୁ ଧୋବା ଧୌତ ଏବଂ ପରିଷ୍କୃତ ଲୁଗାଖଣ୍ଡିକ ନିଷିଦ୍ଧଥାଏ । ବ୍ରାହ୍ମଣଘରେ କୁକ୍ଷିତାନ୍ନ ଗୃହୀତ ହୁଏ, କିନ୍ତୁ ଶୂଦ୍ରର ସୁଖାଦ୍ୟ ଶାକଅନ୍ନ ବର୍ଜିତ ହୁଏ । ଏହିପରି ସକଳକୁ ଖାଦ୍ୟ ପାନ ଅକ୍ଷର ଲୁହାଯାଏ ।



## ମଳ ମୂତ୍ର ପଦ୍ଧତି ।

ଆହାରର ରୀତିନୀତିରେ ଯେପରି ହିନ୍ଦୁମାନଙ୍କର ଜାତି ଓ ଧର୍ମ ନିହିତ ଥାଏ, ସେହିରୂପ ମଳମୂତ୍ର ତ୍ୟାଗ ପ୍ରଣାଳୀରେ ମଧ୍ୟ ସେମାନଙ୍କର ଧର୍ମର ସମ୍ପର୍କ ଥାଏ । କୌଣସି ଲୋକ ଯଦି ମଳ ତ୍ୟାଗକଲେ ସେତେବେଳେ ସେହି ଲୋକ ଅଶୁଦ୍ଧ ବା ଅପବିତ୍ର ବିବେଚିତ ହୁଏ । ଯେଉଁ ଲୁଗାପିନ୍ଧି ମଳତ୍ୟାଗ କରାଗଲା ସେହି ଲୁଗା ମାଡ଼ିହେଲା, ପଇତା ମାଡ଼ିଗଲା. ପୁଣି ଦେହ ମାଡ଼ିଗଲା । ଏହା ସବୁ ସେତେବେଳେ ଧୌତହୁଏ ତେବେ ଯାଇ ଶୁଦ୍ଧହୁଏ । ମଳତ୍ୟାଗ କଲେ ଦେହର ଦୂଷିତ ପଦାର୍ଥମାନ ବହିର୍ଗତ ହୁଏ, ଦେହ ସୁସ୍ଥ ହୁଏ ଏବଂ ସବଳ ହୁଏ; ତେବେ ମଳତ୍ୟାଗ ହେତୁ ବ୍ରାହ୍ମଣନାମଧାରୀମାନଙ୍କର ଅଶୁଦ୍ଧି ବା ଅପବିତ୍ରତା କାହିଁକି ଆସେ ? ଆମ୍ଭମାନଙ୍କର ଧାରଣା ଅଛି ଯେ ମଳକୁ ଚାହିଁବାକୁ ହେବନାହିଁ, ସ୍ପର୍ଶ କରିବାକୁ ହେବନାହିଁ, ମଳଯୁକ୍ତ କୌଣସି ବସ୍ତୁକୁ ସ୍ପର୍ଶ କରିବା ଉଚିତ ନୁହେ । ମଳସ୍ପର୍ଶ ହେଲେ ଅନ୍ନପାନୀ କଥା ଦୂରେଥାଉ ପ୍ରଥମେ ଯଜ୍ଞୋପବୀତ ଶୁଦ୍ଧି ମାଡ଼ିଯାଏ । ସୁତରାଂ ତାହାକୁ ଧୌତ ନକଲେ ଗତ୍ୟନ୍ତର ନାହିଁ । ମଳମୂତ୍ର ତ୍ୟାଗ କଲାବେଳେ ପଇତାକୁ ନେଇ କାନରେ ଦେବାକୁ ହୁଏ । କର୍ଣ୍ଣ ଦେଶରେ ଗଙ୍ଗା ଅଛନ୍ତି ବୋଲି କଥା ଅଛି । କାନରେ ଗରପୂର୍ତ୍ତି ଥାଉ ତଥାପି ତହିଁରେ ପାପ ପ୍ରକ୍ଷାଳନୀ ଗଙ୍ଗା ଦେବୀଙ୍କ ସ୍ରୋତ ପ୍ରବାହିତ ହେଉଥାଏ କିନ୍ତୁ ମଳତ୍ୟାଗ କଲାପରେ କର୍ଣ୍ଣ ଗଙ୍ଗା ସ୍ୱଦ୍ୱାରା ରକ୍ଷା କରିପାରନ୍ତି ନାହିଁ, ପଇତାକୁ ନଧୋଇଲେ ଚଳିବ ନାହିଁ । ହିନ୍ଦୁମାନଙ୍କ ଧର୍ମରେ ବିଶେଷତଃ ବ୍ରାହ୍ମଣ ନାମଧାରୀମାନଙ୍କର ମଧ୍ୟରେ ମଳତ୍ୟାଗ

କ୍ରିୟା ଅତୀବ ଘୃଣ୍ୟ । ଶୁଦ୍ଧ ପ୍ରକ୍ଷାଳନକୁ ଶୌଚ କହନ୍ତି । ଏହି ଶୌଚକ୍ରିୟା ପରେ ହାତମାଟି କରିବାକୁ ହୁଏ । ଏହି ହାତମାଟିର ବିଶେଷତ୍ୱ ଏହିଯେ ୨୧ ଥର ହାତମାଟି କରିବାକୁ ହେବ । ହାତ ନିର୍ମଳ ହୁଏ କି ନା, ଦୁର୍ଗନ୍ଧ ଯାଏ କି ନା, ତହିଁ ପ୍ରତି ଆଦୌ ଦୃଷ୍ଟି ନାହିଁ । ୨୧ ଥର ମାତ୍ର ମୃତ୍ତିକା ସ୍ପର୍ଶ ହେଲେ ହେଲା । ଏହିପରି ପ୍ରସ୍ରାବ କାଳୀନ ବିଧାନ କେତେଗୁଡ଼ିଏ ଅଛି । କଚ୍ଛା ନ ଫିଟାଇ ଏକ କଲେ ପିତୃଲୋକଙ୍କ ମୁହଁରେ ମୂତ୍ର ପଡ଼ିବ । ଆମ୍ଭମାନଙ୍କର ପିତୃଲୋକଙ୍କୁ କି ନିଡ଼ୟନ୍ତ ନଥିଲା, ସେମାନେ କେବଳ ଆମେ ଏକ କରିବା ସ୍ଥାନରେ ଆଁ କରି ବସି ଅଛନ୍ତି ? କିଏ କେବେ କେଉଁଠାରେ କଚ୍ଛାଖୋଲି ଏକ କରନାହିଁ ଏଇ କଥା ଖୋଜି ବୁଲୁ ଅଛନ୍ତି ।

ହିନ୍ଦୁମାନଙ୍କର ଧର୍ମଶାସ୍ତ୍ରାନୁସାରେ ମଳମୂତ୍ର କଥାର ଦୁଇଗୋଟି ନମୁନା ଦେଖାନ୍ତୁ । ଏଥିରେ ଧର୍ମର ନିଗୂଢ଼ ତତ୍ତ୍ୱ ନିହିତ ଅଛି । ପ୍ରିୟ ପାଠକ ଭାଇମାନେ, ଆମ୍ଭେମାନେ ଏହି ମଳ ମୂତ୍ରକୁ ନେଇ ଆମ୍ଭମାନଙ୍କର ପବିତ୍ର ଧର୍ମକୁ ନଷ୍ଟ କରୁଅଛୁଁ ।

ମଳ ଏକ ମୂଲ୍ୟ ପଦାର୍ଥ ଅଟେ । ଅନ୍ନର ପରିଣାମ ଅଟେ ମଳ ଏବଂ ଅନ୍ନର ମୂଳ ଅଟେ ମଳ । ଆମ୍ଭମାନଙ୍କର ଏହି ଶରୀର ମଳ ରୂପୀ, ମଳମୟ ଏବଂ ମଳମୂଳକ ଅଟେ । ଅନ୍ନରେ ଯେପରି ପିଣ୍ଡ ରକ୍ଷାହୁଏ ତଦ୍ରୂପ ମଳଗଲେ ବଳଯାଏ ବୋଲି କଥାଅଛି । ଅନ୍ନ ଓ ମଳ ମଧ୍ୟରେ ପରସ୍ପର ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ । ବୋଧହୁଏ ମଳ ଉତ୍କଟ ଗନ୍ଧବିଶିଷ୍ଟ ଥିବାହେତୁ, ତାହା ଅସ୍ପୃଶ୍ୟ ଏବଂ ପରିତ୍ୟକ୍ତ ହୁଏ । କିନ୍ତୁ କୌଣସି ରାସାୟନିକ ପ୍ରକ୍ରିୟା ଦ୍ୱାରା ତାହାର ଦୁର୍ଗନ୍ଧ ଯେତେବେଳେ ଦୂରୀକୃତ ହୁଏ ସେତେବେଳେ ତାହା କାହିଁକି ବା ଘୃଣ୍ୟ ଓ ପରିତ୍ୟକ୍ତ ହେବ ? ଏହି ମଳ ଦ୍ରବ୍ୟସମୂହର ଖତ ସାରରେ ପରିଣତ ହୁଏ । ଏହି ମଳ ମୂତ୍ରର ସଦ୍ ବ୍ୟବହାର କରି ଆମେରିକାନ୍, ଜାପାନୀ ପ୍ରଭୃତି ଉନ୍ନତ ଜାତିମାନେ ଧନଶାଳୀ ହୋଇ ଅଛନ୍ତି, କିନ୍ତୁ ଭାରତବାସୀ ହିନ୍ଦୁମାନେ ଏହି ମଳକୁ ଉପେକ୍ଷା କରି ଦୁର୍ବଳ ହୋଇ ପଡ଼ି ଅଛନ୍ତି । ଏହି ଖତସାର ପରିତ୍ୟାଗ କରି ସ୍ୱର୍ଣ୍ଣଗର୍ଭା ଭାରତ ଭୂମି ଅସାର ଅନୁର୍ବର ହୋଇ ପଡ଼ିଅଛି ।



# ଶୁଦ୍ଧିପତ୍ର ।

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୯— | ୬୪— | ସଙ୍ଗୀକ— | ସଙ୍ଗୀତ |
| ୬୦— | ୧୪— | ନାସ୍ତୁ— | ସ୍ୱନା |
| ୬୭— | ୧୧— | ଗୋଖଦଙ୍କୁ— | ଗୋ ଖାଦଙ୍କୁ |
| ୬୮— | ୭— | ଟିରକ— | ଘାରକ |
| ୩୬— | ୧୭— | ଦ୍ୱାସ୍— | [illegible] |
| ୪୦— | ୧୮— | ଅନେକେ— | ଅ ଙ୍କ |
| ୫୭— | ୬— | ଭୁଷ୍ଟଂ— | ଭୂଷ୍ଟାଂ |
| ୫୮— | ୬୬— | ଯୋଗ— | ଯୋଗୀ |
| ୬୪— | ଶେଷ— | ଦୁଃଖେର— | ଦୁଃଖରେ |
| ୬୭— | ୫— | ସାଉୁ— | ସାଧୁ |
| ୭୦— | ୧୧— | ବାରଣୀ— | ବାରୁଣୀ |
| ୭୩— | ୯— | ଯଚ୍ଚଅର— | ଯଚ୍ଚୁଅର |
| ୭୪— | ୧୭— | ଲଗ୍ନଃ— | ନଲଗ୍ନଃ |
| ୭୫— | ୬୭— | ବଦନ୍ତ— | ବଥନ୍ତ |
| ୮୦— | ୭— | ପଣ୍ଡିତ— | ପଣ୍ଡିତଃ |
| ୮୬— | ଶେଷ— | ଘାଇନ— | ଘାଉନୀ |
| ୮୫— | ୩— | ବୃଥ୍ନ— | ଉଚ୍ଛନ୍ନ |
| ୮୭— | ପ୍ରଥମ— | ନଷ୍ଟସ୍ତୁ— | ନଭୟ୍ସ୍ତୁ |
| ୮୮— | ପ୍ରଥମ— | ବାଧ— | ବାଧା |
| ୯୦— | ୩— | ସଂରକ୍ଷଣଙ୍କୁଛ— | ସରକ୍ଷଣ ଶ୍ରୀତ |
| ୯୩— | ୬୩— | ଅପସସ୍ଥାନ— | ଅନ୍ୟ ସ୍ଥାନ |
| ୯୭— | ୬୭— | ପ୍ରତ୍ୟେକ— | ପ୍ରତ୍ୟକ୍ଷ |
| ୯୯— | — | ତର— | କର |
| ୧୦୪— | ୬୪ | ସନ୍ତ— | ସନ୍ତୁ |
| ୧୬୬— | ୭— | ଚେଷ୍ଟ୍ୟଡ଼ା— | ଚେଷ୍ଟପଣା |
| ୧୬୭— | ଶେଷ | ଦୂଷ୍ଟା—ସ୍ତୁଷ୍ଟାସ୍ୱରୂପ | ସ୍ତୁଷ୍ଟା—ଦ୍ରଷ୍ଟାସ୍ୱରୂପ |
| ୧୩୫— | ୪ | କାହାଙ୍କ | ତାହାଙ୍କ |
| ୧୫୧— | ୧୮ | ଦୁ | ଦୁର୍ଦ୍ଦିତ |

# ବିଜ୍ଞାପନ

ନିମ୍ନ ଲିଖିତ ପୁସ୍ତକ ମାନ ଶ୍ରୀଯୁକ୍ତ ଶ୍ରୀବତ୍ସ ପଣ୍ଡାଙ୍କ ପ୍ରଣୀତ, ଅନୁଦିତ ଓ ସଙ୍କଳିତ, ବିକ୍ରୟାର୍ଥ ରକ୍ଷିତ ଅଛି:—

| | |
|---|---|
| ସତ୍ୟାର୍ଥପ୍ରକାଶ ପୂର୍ବାର୍ଦ୍ଧ | ମୂଲ୍ୟ ଟ ୧ ୯ |
| ,, ଉତ୍ତରାର୍ଦ୍ଧ, ୧୧ ଶ ସମୁଲ୍ଲାସ | ,, ଟ ୦ ୳ |
| ଆର୍ଯ୍ୟଧର୍ମ— | ,, ଟ ୦ । |
| ଗୃହାଶ୍ରମ— | ,, ଟ ୦ । |
| ଆରୋଗ୍ୟ ବିଧାନ | ,, ଟ ୦ ।। |
| ପଞ୍ଚ ଦେବତା | ,, ଟ ୦ ୵ |
| ସଂସ୍କାର ସଙ୍ଗୀତାବଳୀ (ଦ୍ୱିତୀୟ ସଂସ୍କରଣ) | ,, ଟ ୦ ୶ |
| ସାଂସ୍କାରିକା { ସାମାଜିକ ଧର୍ମ କର୍ମ ରୀତି ନୀତି ଇତ୍ୟାଦି<br>ବିଷୟକ ବିବିଧ ପ୍ରବନ୍ଧ ସଂଗ୍ରହ } | |
| ପ୍ରଥମ ଓ ଦ୍ୱିତୀୟ ଖଣ୍ଡ, ପ୍ରତ୍ୟେକ | ,, ଟ ୦ ୳ |
| ଜାତି ଧର୍ମ | ,, ଟ ୦ ୶ |
| ଅଛୁତ ଜାତି | ,, ଟ ୦ ୶ |
| ପଞ୍ଚଯୁଗ | ,, ଟ ୦ ୵ |
| ଏବଂ ଅନ୍ୟାନ୍ୟ ପୁସ୍ତକ | |

ଚିଠି ପତ୍ର, ମନି ଅର୍ଡର ଇତ୍ୟାଦି କାହାରି ନାମରେ ନପଠାଇ ମ୍ୟାନେଜର, "ଆର୍ଯ୍ୟ" ଅଫିସ, ଠିକଣାରେ ପଠାଇବାକୁ ହେବ ।

ମାନେଜର, ଆର୍ଯ୍ୟ ଅଫିସ

ଗୋରକ୍ଷାଶ୍ରମ, ପୋ: ଭଞ୍ଜନଗର, ଜି: ଗଞ୍ଜାମ ।

